# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**November- 2015**


| ୭୨ ଭାଗ | ୪ର୍ଥ ସଂଖ୍ୟା | କାର୍ତ୍ତିକ-ମାର୍ଗଶିର | ନଭେମ୍ବର - ୨୦୧୫ |
|---|---|---|---|




---




ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in

ଫୋନ୍ : ୦୬୭୪-୨୫୩୦୨୧୧



**ପ୍ରତିଖଣ୍ଡ : ଟ. ୫.୦୦**

# ସୂଚୀ

ନଭେମ୍ବର – ୨୦୧୫

❖ ❖ ❖

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି


ଲକ୍ଷ୍ମଣ ନାଏକ


ବିର୍ସା ମୁଣ୍ଡା


ଜୟୀ ରାଜଗୁରୁ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ପଣ୍ଡିତ ଜବାହରଲାଲ ନେହେରୁ



ହରେକୃଷ୍ଣ ମହତାବ



ନବକୃଷ୍ଣ ଚୌଧୁରୀ

# ଶ୍ରଦ୍ଧାଞ୍ଜଳି



ସ୍ୱର୍ଗତ ହରିଶ୍ଚନ୍ଦ୍ର ବକ୍ସିପାତ୍ର

# ସମ୍ପାଦକୀୟ



ଓଡିଶାରେ ପାଳିତ ହୁଏ ବାର ମାସରେ ତେର ପର୍ବ । ଏଥିମଧ୍ୟରୁ କାର୍ତ୍ତିକ ମାସର ବୈଶିଷ୍ଟ୍ୟ ନିଆରା । ଓଡିଶାରେ କାର୍ତ୍ତିକ ବ୍ରତ ପାଳନର ପରମ୍ପରା ଅତି ସମୃଦ୍ଧ ଓ ପ୍ରାଚୀନ । ଧର୍ମ ମାସ କଥିତ ଏହି ମାସରେ ଅନୁଷ୍ଠିତ ହେଉଥିବା ପୁଣ୍ୟ କାର୍ଯ୍ୟଗୁଡିକ ମାସକ ଯାଏଁ ପରିବ୍ୟାପ୍ତ । ଆଗକୁ ଆସୁଛି ଆଲୋକ ଓ ଆନନ୍ଦର ପର୍ବ ଦୀପାବଳି । ପିଲାଙ୍କଠାରୁ ବୟସ୍କ ପର୍ଯ୍ୟନ୍ତ ସମସ୍ତଙ୍କ ମଧ୍ୟରେ ଦେଖିବାକୁ ମିଳିଛି ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ।

ଏହି ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ କିନ୍ତୁ ଦେଶର ସାଂପ୍ରତିକ ଅବସ୍ଥା ନେଇ ଆମେ ବିଚଳିତ । ଦେଶରେ ଅସହିଷ୍ଣୁତା ବୃଦ୍ଧି ପାଉଛି ବୋଲି ଚାରିଆଡେ ହଇଚଗୋଳ ଚାଲିଛି । ଯେଉଁ ଜ୍ଞାନୀଗୁଣୀମାନଙ୍କୁ ଭାରତବର୍ଷ ସମ୍ମାନିତ କରିଥିଲା, ସେମାନଙ୍କ ମଧ୍ୟରୁ କେତେକ ତାଙ୍କର ସମ୍ମାନ ଫେରାଇ ଦେଉଛନ୍ତି । ବିଚାରରେ ଅସହମତି ହେବା ଗୋଟିଏ କଥା, କିନ୍ତୁ ଦେଶରେ ଅସ୍ଥିରତା ସୃଷ୍ଟି କରିବା ଆଡକୁ ମୁହାଁଇବା ପରି ପରିସ୍ଥିତି ଚିନ୍ତାଜନକ ଅଟେ ।

ବର୍ଷା ଅଭାବ କାରଣରୁ ସମଗ୍ର ଭାରତବର୍ଷରେ ସମ୍ଭାବ୍ୟ ମରୁଡି ପରିସ୍ଥିତି । ମରୁଡି ପରିସ୍ଥିତିର ମୁକାବିଲା ପାଇଁ ଓଡିଶା ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରିଆସୁଛନ୍ତି । ମରୁଡି ଅଂଚଳରେ ଜଳକର ଛାଡ ଓ ଋଣ ଆଦାୟ ସ୍ଥଗିତ ରଖିବା ପାଇଁ ମୁଖ୍ୟମନ୍ତ୍ରୀ ଆବଶ୍ୟକ ନିର୍ଦ୍ଦେଶ ଦେଇଛନ୍ତି । ଛାତ୍ରଛାତ୍ରୀଙ୍କ ଟ୍ୟୁସନ୍ ଫି ଓ ପରୀକ୍ଷା ଫି ଛାଡ କରାଯାଇଛି । ଏହା ସହିତ, ନଭେମ୍ବର ୧୦ ତାରିଖ ସୁଦ୍ଧା ବିହନ ଓ ଅନ୍ୟାନ୍ୟ କୃଷି ଉପକରଣ କ୍ଷତିଗ୍ରସ୍ତ ଚାଷୀଙ୍କୁ ପ୍ରଦାନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ସମବାୟ ବ୍ୟାଙ୍କଗୁଡିକ ଦ୍ୱାରା ୪,୫୦୦ କୋଟି ଟଙ୍କା ଋଣ ଯୋଗାଣର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । କ୍ଷତିଗ୍ରସ୍ତ ଚାଷୀମାନଙ୍କ ଉପରେ ଖରିଫ୍ ଋଣ ବକେୟା ଥିଲେ ମଧ୍ୟ ଏହି ଋଣ ଯୋଗାଇ ଦିଆଯିବ । ମହାତ୍ମା ଗାନ୍ଧୀ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ ଭାରତ ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ୧୫୦ ଦିନ ସହ ଆହୁରି ୫୦ଦିନର କାମ ରାଜ୍ୟ ସରକାରଙ୍କ ପକ୍ଷରୁ ଯୋଗାଇ ଦିଆଯିବ । ଏହି ୨୦୦ ଦିନ ପାଇଁ ସେମାନଙ୍କୁ ଅତିରିକ୍ତ ୩୦ % ପାରିଶ୍ରମିକ ମରୁଡି ଭତ୍ତା ଭାବେ ପ୍ରଦାନ କରାଯିବ । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡିଶା ସରକାର ସବୁ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଚାଷୀ ଭାଇଭଉଣୀମାନଙ୍କ ସହିତ ରହିଥିଲେ, ରହିଛନ୍ତି ଓ ରହିଥିବେ ମଧ୍ୟ ।

ଆତ୍ମହତ୍ୟା ଏକ ସମ୍ବେଦନଶୀଳ ପ୍ରସଙ୍ଗ । ଏହାକୁ ମାଧ୍ୟମ କରି ଅସ୍ଥିରତା ସୃଷ୍ଟି କରିବା ପାଇଁ କିଛି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଉଦ୍ୟମ ଜାରି ରଖିବା ପରି ମନେହେଉଛି । ଓଡିଶାର କୃଷି ଓ କୃଷି ସହ ସଂଶ୍ଳିଷ୍ଟ ଜମି ମାଲିକ, କୃଷକ, ଭାଗଚାଷୀ ଓ କୃଷି ଶ୍ରମିକଙ୍କ ପରିସ୍ଥିତିରେ ଉନ୍ନତି ଆଣିବା ନିମନ୍ତେ ସରକାର ସଦା ଚେଷ୍ଟିତ ।

ଲୋକମାନଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣିବା ପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଛି । ସମସ୍ତ ନାଗରିକ ବିଶେଷ କରି ଗରିବ ଜନସାଧାରଣଙ୍କ ଉନ୍ନତି ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ରାଜ୍ୟ ସରକାର ସର୍ବଦା ଉଦ୍ୟମଶୀଳ ।

କାର୍ତ୍ତିକ ପୂର୍ଣ୍ଣିମାର ଶୀତୁଆ ପାହାନ୍ତିରେ ଓଡିଶାର ଆବାଳବୃଦ୍ଧବନିତା ନଦୀ ଓ ପୁଷ୍କରିଣୀରେ ପବିତ୍ର ବୁଡ ପକାଇଥାନ୍ତି । ସମୃଦ୍ଧ ଉତ୍କଳୀୟ ନୌବାଣିଜ୍ୟର ଗୌରବମୟ ପରମ୍ପରାର ସ୍ମୃତିଚାରଣ ପୂର୍ବକ ସୋଲ ଓ କଦଳୀ ପଟୁକା ନିର୍ମିତ କ୍ଷୁଦ୍ର ଡଙ୍ଗା ଭସାଇଥାଆନ୍ତି । ଉତ୍କଳୀୟ ସାମୁଦ୍ରିକ ନୌବାଣିଜ୍ୟ ସଂପର୍କରେ ବିଶିଷ୍ଟ ଐତିହାସିକ ତଥା ପରିବ୍ରାଜକ ଫାଇୟାନ୍ ଓ ହୁଏନ୍‌ସାଂଙ୍କ ବିବରଣୀରୁ ଅଧିକ ତଥ୍ୟ ମିଳେ । କାଳିଦାସଙ୍କ ରଚିତ ରଘୁବଂଶମ୍‌ରେ କଳିଙ୍ଗର ରାଜାମାନଙ୍କୁ ମହୋଦଧିପତି ରୂପେ ସମ୍ବୋଧିତ କରାଯାଇଛି ।

ସମୟର ଚଲାପଥରେ ବିସ୍ମୃତ ପୂର୍ବ ଗୌରବର ପୁନରୁଦ୍ଧାର ସକାଶେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱାଧୀନ ସରକାର ଚେଷ୍ଟିତ ଅଛନ୍ତି । ଏଥିସହ ଭାରତକୁ ଗୌରବାନ୍ୱିତ କରୁଥିବା ପ୍ରତ୍ୟେକ କ୍ଷେତ୍ରରେ ଓଡିଶା ନିଜର ଦକ୍ଷତା ପ୍ରତିପାଦନ କରିପାରିଛି । ସ୍ୱଚ୍ଛତା ବଜାୟ ରଖି ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ ସହ ସାମଗ୍ରିକ ବିକାଶ, ରାଜ୍ୟ ସରକାରଙ୍କ ପ୍ରମୁଖ ଲକ୍ଷ୍ୟ । ଏଥିନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ବ୍ୟକ୍ତିତ୍ୱ, ସରଳତା, ନିଷ୍ଠା ଏବଂ ସାଧୁତା ଆମ ପାଇଁ ପ୍ରେରଣାର ଉତ୍ସ ହୋଇପାରିଛି ।

ଲେନିନ୍ ମହାନ୍ତି

ସମ୍ପାଦକ

# ସର୍ଜନମୟ ସ୍ଥାପତ୍ୟ ଓ ପରମ୍ପରାର ମହମହ ବାସ୍ନା

ଡକ୍ଟର ଦେବାଶିଷ ପାତ୍ର

'କଳିଙ୍ଗା ସାହସିକାଃ' । ଏହି ଉକ୍ତିର ସର୍ଜନଶୀଳତା ଆମକୁ ମନେ ପକାଇଦିଏ ଯେ ଆମର ଏକ ପ୍ରଣମ୍ୟ ଅତୀତ ଅଛି, ଯାହାକୁ ନେଇ ଆମେ ସମୃଦ୍ଧ ଓ ଆମର ଇପ୍ସିତ ସମୟ ମଧ୍ୟ ଶୁଣାଉଛି ତା'ରି ଐକ୍ୟତାନ । ଏକ ଆବେଗଭରା ପରମ୍ପରା ଓ କ୍ରିୟାଶୀଳତାର ଉଦ୍‌ଭାସ ସମଗ୍ର ବିଶ୍ୱରେ ତିଆରିଛି ଆମର ଏକ ଚିରନ୍ତନୀ ଛବି, ଯା'ର ନାଁ ଓଡ଼ିଶା । ଯେଉଁଠି କଳା ଓ ସୃଷ୍ଟିଶୀଳତାର ପେଛା ପେଛା ଅନୁଭବ ଜାତି ଜାତିକା ଫୁଲ ହୋଇ ଫୁଟେ । ଏକଦା ଯେଉଁ ସମୁଦ୍ର ଭିଜା ପବନରେ ନିଜ ଅର୍ଥନୀତିର ସମୃଦ୍ଧି ପାଇଁ ଅର୍ଣ୍ଣବ ପୋତ ବାହିନେଇ ବିଶ୍ୱକୁ ସାଂସ୍କୃତିକ ରୂପାୟନର ବାଟ ଦେଖାଇଥିଲା, ସେଇ ବଣିକ ପୁଅର ବ୍ୟାକୁଳତା ଯେ ଏବେ ମରି ନାହିଁ, ତାହା ଆମକୁ ଧରିନେବାକୁ ହେବ, ଯାହା ଜାହ୍ନବୀ ପରି ପ୍ରବହମାନ ଓ ସମୟପରି ଗତିଶୀଳ ।

ବିଶ୍ୱବିଦିତ ଆମ ବାଣିଜ୍ୟ ସଂସ୍କୃତି ଭିତରୁ ଜନ୍ମ ନେଇଥିଲା 'ଆ–କା–ମା–ବୈ' ପରି ସାଂସ୍କୃତିକ ସାମସଂଗୀତ । ଯେଉଁଠି ଥିଲା ଆମ ଶିଳ୍ପ ପରମ୍ପରାକୁ ବିଶ୍ୱଜନୀନ କରିବାର ଉଦାତ୍ତପଣ । ସତରେ ବାଣିଜ୍ୟ ସହ ଯୋଡିହେଇ କଳା ଓ ସଂସ୍କୃତିର ମହ ମହ ବାସ୍ନା ପ୍ରମାଣ କରେ ଯେ ଆମ ଭିତରର ସେଦିନର ବାସ୍ତବତା ମରିନାହିଁ ଯାହାକୁ ଅବଲୋକନ କରିବା ପାଇଁ ଦରଦୀ ଅନୁଭବଟିଏ ଲୋଡା ।

ଇଏ ସେ ଉତ୍କଳ ଭୂଇଁ, କେଉଁ ଏକ ମୁହୂର୍ତ୍ତରେ ଯେଉଁଠି ଗୋଟିଏ ପୋକର ଖୋଷା ଭିତରୁ ଜନ୍ମ ନେଇଥିଲା ବୈଜ୍ଞାନିକ ଉଦ୍‌ବର୍ତ୍ତନ । ସର୍ଜନଶୀଳତାର ଅସରନ୍ତି ଅନୁଭବ ସୁନ୍ଦର ମୁଲାୟମ ସୂତାରେ ଭରି ଦେଇଗଲା ରଙ୍ଗ ଆଉ ବୁଣି ଦେଇଥିଲା ନିଜ ପରମ୍ପରାର ଗାଥାକୁ ନେଇ ସୁନ୍ଦର ବସ୍ତ୍ରଟିଏ । ସେଇ ରେଶମୀ ପୋକ କ'ଣ ଜାଣିଥିବ ତା' ଖୋଷାର ଭାଗ୍ୟ ଯାହାକୁ ଅମୃତମୟତାର ଅନୁଭବରେ ସଜାଇ ଓଡ଼ିଆ ପୁଅ ପରଷି ଦେବ ବିଶ୍ୱ ଦରବାରରେ । ମୟୂରଭଞ୍ଜର ଟସର ଶାଢୀ, ସମ୍ବଲପୁରର ପାଟବସ୍ତ୍ର, ଈଶ୍ୱର ବିଶ୍ୱାସ ଓ ପରମ୍ପରାଯୋଡି ହେଇଥିବା ଖଣ୍ଡୁଆ ପାଟ, ମାଣିଆବନ୍ଧ ଶାଢୀ ଓ ବମ୍‌କେଇ ପାଟ ସାବ୍ୟସ୍ତ କରିଦିଏ ଯେ ଇତିହାସର ପୃଷ୍ଠା କପୋଳକଳ୍ପିତ ନୁହେଁ । ଯେଉଁଠି ଲେଖା ହେଇଛି ହଜାର ହଜାର ବର୍ଷ ଧରି ଓଡ଼ିଶାରୁ ମୁସଲିନ୍ ଓ ତନ୍ତ ବସ୍ତ୍ରର ରପ୍ତାନୀ ପରମ୍ପରା । ସେ କାରିଗର, ସେ ଶିଳ୍ପୀ ଖାଲି ବସ୍ତ୍ର ବୁଣେ ନାହିଁ ସେଥିରେ ରଙ୍ଗ ବୁଣେ, ସ୍ୱପ୍ନ ବୁଣେ ଓ ସ୍ୱାଭିମାନ ବୁଣେ । ଯେଉଁଥିରେ ବଞ୍ଚେ ତା'ର ଜଗତକୁ ବ୍ୟାପୀଯିବାର ଉଦାରପଣ । ତନ୍ତର ଶବ୍ଦ ଭିତରେ ଲୁଗା ଦେହରେ ଆଙ୍କି ହେଇଯାଏ ଉପନିଷଦୀୟ ଚିନ୍ତନ, ବିବିଧ ନୃତ୍ୟର ଅଦ୍ଭୁତ ଅଙ୍ଗକଳା, ମାଣବସାର ମହକ ଓ ସଜ ଜହ୍ନରାତିର ଝୋଟିଚିତା । କାରଣ ସେ ଗଢି ଶିଖିଛି କେବଳ ନିଜ ପାଇଁ ନୁହେଁ ବିଶ୍ୱକୁ ସଞ୍ଚରି ଯିବା ପାଇଁ ।

ଆମ କଳାର ଉତ୍କର୍ଷତା, ଆମ ଗଢିବା ପଣ କେବଳ ସେଇଠି ଅଟକେ ନାହିଁ । କୋମଳ ଅନୁଭବର ଫୁଲ ପଥର ଦେହରେ କବିତା ପରି ଫୁଟେ । ଅନୁପମ ସେ ଭାସ୍କର୍ଯ୍ୟ, ଅଦ୍ଭୁତ ସେ ଶିଳ୍ପୀର ସ୍ୱପ୍ନାବିଷ୍ଟ ମନ ଯିଏ ଗଢି ଦେଇଗଲା କୋଣାର୍କ, ରାଜାରାଣୀ ମନ୍ଦିର ପରି ଅପରୂପ ଐଶ୍ୱର୍ଯ୍ୟର ପବିତ୍ର ପୀଠ । ହୁଏତ ତା' ପୂର୍ବପୁରୁଷ ବିକ୍ରମ ଖୋଲର ପ୍ରସ୍ତର ଦେହରେ ଆଙ୍କିଥିବା ଗୁମ୍ଫାଚିତ୍ର କିମ୍ବା କୋରାପୁଟିଆ ଡଙ୍ଗର ଗାଁରେ ପ୍ରତିଟି କାନ୍ଥରେ ଆଙ୍କିଥିବା ଜ୍ୟାମିତିକ ଚିତ୍ର ବିଶ୍ୱକୁ ଦେଇଗଲା କୋଣାର୍କ ପରି ଏକ ଅନନ୍ୟ ଉପହାର । ସୁନାଦେହୀ କୋଣାର୍କ ଦେହରେ ଅଙ୍କାଥିବା ଶାଳଭଞ୍ଜିକା, ଅଳସକନ୍ୟା, ସୁରସୁନ୍ଦରୀ ଓ ଆଲେଖିକାର ଅଙ୍କନ କେବଳ ବିଶ୍ୱମୟ ହେବାର ସାମର୍ଥ୍ୟ ରଖେନାହିଁ ବରଂ

ତା' ଦେହରେ ଖଞ୍ଜା ହୋଇଥିବା ଧାବମାନ ଅଶ୍ୱ ଓ ରଥର ଚକ ଦେହରେ ଲେଖି ଦେଇଥାଏ ଗୋଟେ ପ୍ରଗତିଶୀଳ ଜାତିର ପାଣ୍ଡୁଲିପି । ସେ ଚକ୍ର ଦେହରେ ଅଛି ସମୟର ନିରବ ଆହ୍ୱାନ, ଯେଉଁଠି ଅନନ୍ତ କାଳକୁ ସଂଚରି ଯିବାର ଅସରନ୍ତି ସମ୍ବେଦନା । ଆମ ଶିଳ୍ପୀର ଅଙ୍ଗୁଳି ସ୍ପର୍ଶରେ ପ୍ରସ୍ତରର ସେହି କଳା କୁଶଳତା ଆଜି ଦରିଆ ସେପାରିରେ ଲୋକପ୍ରିୟତାର ଶୀର୍ଷରେ ।

କେବଳ ପ୍ରସ୍ତର ଦେହରେ ନୁହେଁ କୋଣାର୍କର ସେହି ଧାବିତ ଅଶ୍ୱ ଓ ପ୍ରତୀକମୟ ଚକ୍ରକୁ ଶିଳ୍ପୀ ରୂପ ଦେଇଛି ରୂପାର ତାରକସି କାମରେ, ବାଉଁଶରେ କାଠରେ, ସୋଲରେ, ପିତ୍ତଳରେ ଓ ଶିଙ୍ଗ କାମରେ । ଯେଉଁଠି ବିନା କୃତ୍ରିମତା ଓ ରଙ୍ଗରେ ଶିଳ୍ପୀ ତାହାକୁ କରିଛି ଅତ୍ୟନ୍ତ ଭାବ ପ୍ରବୋଧକ । ସମୟ ସହିତ ପରମ୍ପରା ଓ ଆଧୁନିକତାର ସମ୍ମିଶ୍ରଣରେ ଓଡ଼ିଆ ଶିଳ୍ପୀ ସମଗ୍ର ବିଶ୍ୱରେ ନିଜ କଳା, ସ୍ଥାପତ୍ୟ ଓ ଶିଳ୍ପ ସାମଗ୍ରୀର ବିପଣନ ପାଇଁ ନୂଆରାହା ଖୋଲିଦେଇଛି । ଅନେକ ବିଦେଶୀ ଓ ଦେଶୀୟ ପର୍ଯ୍ୟଟକ ଆମ ମାଟିକୁ କେବଳ ଟାଣି ହେଇ ଆସିଛନ୍ତି ସେଇ ଅପରୂପ କଳାତ୍ମକତାର ସମ୍ଭାର ପାଇଁ । ତେବେ ଓଡ଼ିଶାର ପ୍ରତିଟି ପ୍ରାନ୍ତର ଏହି କ୍ଷେତ୍ରକୁ ସମ୍ଭାବନାମୟ କରି ଦେଇଛନ୍ତି ।

ପାରଳାଖେମୁଣ୍ଡିର କଂସା-ପିତ୍ତଳ ଘରକରଣା ସାମଗ୍ରୀ, ବେଲଗୁଣ୍ଠାର ପିତ୍ତଳ ମାଛ, ମୃତ୍ତିକା ଶିଳ୍ପୀଙ୍କ ଦ୍ୱାରା ନିର୍ମିତ ମାଟି କଣ୍ଢେଇ ପ୍ରମାଣ କରିଦେଇଛି, କଳା ବଞ୍ଚେ ଶିଳ୍ପୀର ସ୍ୱାଭିମାନରେ ଅନ୍ୟର ପ୍ରୋତ୍ସାହନରେ । ତେବେ ସେହିସବୁ ସୃଷ୍ଟି ଓଡ଼ିଶା ବାହାରେ ନିଜସ୍ୱ ଗ୍ରାହକ ସୃଷ୍ଟି କରିବା ସହ ପିପିଲିର ଚାନ୍ଦୁଆ କାମ, ରଘୁରାଜପୁରର ପଟ୍ଟଚିତ୍ର ଓ ମୁଖା ଆଉ କେତେ ପାହୁଣ୍ଡ ଆଗକୁ ଯାଇପାରିଛି ।

ଶିଳ୍ପୀ ସମୟ ସହିତ ହାତ ମିଳାଇ ଅନେକତ୍ର ଲୋକାନୁବୃତ୍ତ ଓ ଲୋକକଳାକୁ ଅନୁସରଣ କରି ପରମ୍ପରା ଓ ଆଧୁନିକତାର ଯୁଗଳବନ୍ଦୀ ସୃଷ୍ଟି କରିପାରିଛି । କଳାହାଣ୍ଡିର କାଷ୍ଠଶିଳ୍ପର ନମୁନା, ଢେଙ୍କାନାଳର ସଦେଇ ବେରେଣୀ ଓ ସପ୍ତଶଯ୍ୟାର ପିତ୍ତଳ ନିର୍ମିତ ହାତୀ ଘୋଡା, ଶିଙ୍ଗ ନିର୍ମିତ ପଶୁ-ପକ୍ଷୀ ଶିଳ୍ପୀର ଆବେଗକୁ ରୂପାୟିତ କରିବା ସହ ପର୍ଯ୍ୟାବରଣ ଓ ଆମକୁ ଯୋଡି ଦେବାର ସାମର୍ଥ୍ୟ ରଖିଛି ।

ତେବେ ଆମରି ଲୋକକଳା, ଲୋକଶିଳ୍ପ ଓ ଲୋକ ପରମ୍ପରାକୁ ବାଣିଜ୍ୟିକ ନ୍ୟାୟରେ ବାନ୍ଧିଦେବା ପଛରେ ରହିଛି ଆମ ସୁରମ୍ୟ ସଂସ୍କୃତି । ଯେ କେବଳ ଯୋଡି ଜାଣେ । ମାଟି, ପ୍ରସ୍ତର ବୃକ୍ଷ ସବୁରି ସହିତ ଶିଳ୍ପୀକୁ ଏବଂ ଶିଳ୍ପ ସହିତ କଳାରେ ଅଭିରୁଚି ରଖିଥିବା ସେଇ ନୀଳ ଆଖିର ବ୍ୟଞ୍ଜନାକୁ । ଯୋଡେ ହୃଦୟକୁ ଦେଶକୁ ଓ ବ୍ୟକ୍ତିକୁ । ତାହାହିଁ ଆମ ସଂସ୍କୃତି, ଜଗନ୍ନାଥର ସଂସ୍କୃତି । ଯେତିକିବି ଶିଳ୍ପକଳା ବଞ୍ଚିଛି ସେହି ସଂସ୍କୃତିର ଉଦାରତା ପାଇଁ ।

ସମ୍ପ୍ରତି ବିଶ୍ୱବାସୀଙ୍କର ଅନୁରାଗପୂର୍ଣ୍ଣ ମଧୁର ଚାହାଣୀ ଆମରି ଶିଳ୍ପ, ସ୍ଥାପତ୍ୟ ଓ କଳାକୁଶଳତା ଯେ ବିଶ୍ୱଜନୀନ ତାହା ପ୍ରମାଣ କରିଛି । ଯେଉଁଠି ବାଣିଜ୍ୟ ମେଳା ଅନୁଷ୍ଠିତ ହେଉଛି, କଳା ସଂସ୍କୃତିର ପ୍ରଚାର ହେଉଛି ସେଇଠି ଓଡ଼ିଆ ଶିଳ୍ପୀର କଥାକୁହା କାଠ-ପାଷାଣର ଶାଳଭଞ୍ଜିକା, ଅଳସକନ୍ୟା ଓ ଶାଢୀ ଧଡିର ପୂର୍ଣ୍ଣକୁମ୍ଭ ଓ ପକ୍ଷୀ ଭସାଣ ଆକାଶର ସୃଷ୍ଟି ଶିଳ୍ପ ବାଦ୍ ପଡିବ କେମିତି । ତେବେ ଏହି ସମୃଦ୍ଧଶୀଳ ଜାତିର କେବଳ ଆମ ବାଣିଜ୍ୟ ପରମ୍ପରାକୁ ଏହା ପ୍ରମାଣିତ କରୁନାହିଁ, ଅର୍ଥନୀତିକୁ ସଜାଡିବାର ସମ୍ଭାବନା ରଖିଛି । ନିଜେ ପାରମ୍ପରିକ କଳାନୁରାଗରେ ଜୀଇଁବା ସହିତ ଏଇ ସମୃଦ୍ଧଶୀଳ ଜାତି ପାଇଁ ବିଶ୍ୱର ବିଭିନ୍ନ କ୍ଷେତ୍ରରୁ ସମ୍ମାନ ସାଉଁଟି ଆଣିଛି । ଆଜି ଏଇ ଶୁଭ ଅବସରରେ ସେଇ ସ୍ଥାପତ୍ୟ ବିଦ୍ୟାର ଅପୂର୍ବ କାରିଗର ଓ ସର୍ଜନ ଶିଳ୍ପୀମାନଙ୍କୁ ଏ ଜାତିର ଅୟୁତ ପ୍ରଣାମ ।

ଓଡ଼ିଆ ଅଧ୍ୟାପକ
ରାଜଧାନୀ ମହାବିଦ୍ୟାଳୟ, ଭୁବନେଶ୍ୱର

❖ ❖ ❖

# ପରମ୍ପରା ଓ ପୁରୋଦୃଷ୍ଟି : ବୋଇତ ବନ୍ଦାଣ

ସୁବ୍ରତ କୁମାର ପୃଷ୍ଟି

ବହୁ ଉତ୍ସାହ ଓ ଉଦ୍ଦୀପନା ଭିତରେ ବୋଇତ ବନ୍ଦାଣ ଉତ୍ସବ ପାଳନ କରାଯାଉଛି ଓଡ଼ିଶାର ପୁରପଲ୍ଲୀରେ। କାର୍ତ୍ତିକ ପୂର୍ଣ୍ଣମୀର ପାହାନ୍ତା ବେଳା ନଦୀ, ନାଳ ଆଦି ଯେଉଁଠି ବି ସାମାନ୍ୟ ଜଳ ରହିଛି, ସେଠି ଭାସି ଉଠୁଛି କଦଳୀ ପଟୁଆ, କାଗଜ, ସୋଲ ନିର୍ମିତ ଛୋଟ ଛୋଟ ବୋଇତ। ଆଉ ଏହି ବୋଇତର ସାମଗ୍ରୀ ହେଉଛି ପାନ, ଗୁଆ, ଫୁଲ ସହିତ ଦୀପଟିଏ କିମ୍ବା ସଳିତା କାଠିଟିଏ। ଆ-କା-ମା-ବୋଇ'ର ଶବ୍ଦରେ ନଦୀକୂଳ ପ୍ରକମ୍ପିତ ହୋଇ ଉଠୁଛି। ଏଥିସହିତ ଦେଖିବାକୁ ମିଳୁଛି ଚଉରାମୂଳେ ବାଲୁକା ସ୍ଥାପନ ଓ ଘର ସାମ୍ନାରେ ମୁରୁଜଦ୍ୱାରା ଓଡ଼ିଆ କଳାନୈପୁଣ୍ୟର ପ୍ରଦର୍ଶନ। ଏ ସଂପର୍କରେ କୌଣସି ଓଡ଼ିଆଙ୍କୁ ପଚାରିଲେ, ଉତ୍ତରରେ ସାଧାରଣ ଲୋକ ଧାର୍ମିକ ଭାବନା ଓ ଶିକ୍ଷିତଟିଏ ଅତୀତର ସ୍ମୃତି ରୋମନ୍ଥନ ବିଷୟରେ କହିପାରେ। ମାତ୍ର ଏହା ପଛରେ ଥିବା ତିକ୍ତ ମଧୁର ଇତିହାସ, ବର୍ତ୍ତମାନର ଅସହାୟତା ଆଉ ଭବିଷ୍ୟତର କାର୍ଯ୍ୟପନ୍ଥା ବିଷୟରେ ପଦେ କହିପାରିବେ ନାହିଁ। ଏଥିପାଇଁ କାରଣ ଯାହା ଥାଉନା କାହିଁକି, ଏହାକୁ ପ୍ରକାଶ କରିବାରେ ଯେ ନିଜର ଅଜ୍ଞତା ରହିଛି, ତାହା କେହି ଅସ୍ୱୀକାର କରିବେ ନାହିଁ।

ବୋଇତ ବନ୍ଦାଣ ଓଡିଆଙ୍କ ଛଡା ଆଉ କେହି ପାଳନ କରନ୍ତି ନାହିଁ। ଅତୀତରେ ପୃଥିବୀର ସବୁ ସଭ୍ୟତା ନୌବାଣିଜ୍ୟ ସହ ଊଣା ଅଧିକେ ଜଡିତ ଥିଲେ ମଧ୍ୟ ବୋଇତକୁ ନେଇ ଏଭଳି ଏକ ପରମ୍ପରା ପୃଥିବୀର ଅନ୍ୟ କେଉଁଠି ଦେଖିବାକୁ ମିଳେନାହିଁ। ଏହା ହିଁ ପ୍ରମାଣିତ କରିଥାଏ କଳିଙ୍ଗ ହେଉଛି ବୋଇତ ଓ ନୌବାଣିଜ୍ୟର ଉଦ୍ଭାବକ ଦେଶ । ଉଦ୍ଭାବକ ଓ ଅନୁଗତ ସଭ୍ୟତାମାନଙ୍କ ଭିତରେ ଏଇଟା ହିଁ ସବୁଠୁ ବେଶି ଆଖିଦୃଶିଆ ତଫାତ, ଠିକ ଯେମିତି ଜଗନ୍ନାଥଙ୍କୁ 'ଜଗତର ନାଥ' ବୋଲି ଯେତେ କୁହାଗଲେ ବି ତାଙ୍କର ପୂଜା କେବଳ ଓଡିଆ ସଭ୍ୟତାରେ ହିଁ ଦେଖିବାକୁ ମିଳିଥାଏ, ଜଗନ୍ନାଥ ସଂସ୍କୃତି ଦ୍ୱାରା ଯଥେଷ୍ଟ ପ୍ରଭାବିତ ହୋଇ ବି ଅନ୍ୟ କୌଣସି ସଭ୍ୟତାରେ ତାଙ୍କୁ ପିଢ଼ିପିଢ଼ି ଧରି ପୂଜା କରାଯିବାର ପରମ୍ପରା ଦେଖିବାକୁ ମିଳେନାହିଁ। ସେହିଭଳି ବୋଇତ ବନ୍ଦାଣବେଳେ ବୋଲା ଯାଉଥିବା 'ଆ-କା-ମା-ବୋଇ'ର ଅର୍ଥ ଅସ୍ପଷ୍ଟ ହୋଇରହିଛି । ଏହାକୁ କେତେକ ବିଦ୍ୱାନ ସଂସ୍କୃତ ଆ-କା-ମା-ଭୈଃ ବା ଦ୍ରାବିଡ ଆକ୍କା-ଆମ୍ମା-ବୋଓଇ ଅନୁସାରେ ଭାଙ୍ଗିବାକୁ ଉଦ୍ୟମ କରି ଓଡିଆ ସଂସ୍କୃତିର ମୌଳିକତାକୁ ଲୋପ କରିଦେଉଛନ୍ତି। ବୋଇତ ବନ୍ଦାଣ ପର୍ବ ଉତ୍ତର କିମ୍ବା ଦକ୍ଷିଣ ଭାରତରେ ପାଳିତ ହୁଏ ନାହିଁ । ତେଣୁ 'ଆକାମାବୋଇ'ର ଅର୍ଥ ସଂସ୍କୃତ ବା ଦ୍ରାବିଡ ବଦଳରେ କଳିଙ୍ଗରୁ ହିଁ ଖୋଜିବାକୁ ପଡିବ।

ବିଭିନ୍ନ ସ୍ରୋତରୁ ମିଳିଥିବା ବିବରଣୀ ଅନୁସାରେ ପ୍ରାଚୀନ କାଳରେ ଭାରତର ୯ଟି ସର୍ବବୃହତ୍ ବନ୍ଦର ମଧ୍ୟରୁ କେବଳ ଓଡ଼ିଶାରେ ୫ଟି ଥିଲା। ଏହି ୫ଟି ବନ୍ଦର ହେଲା-ତାମ୍ରଲିପ୍ତି (ତାମଲୁକ), କୋଶମ୍ଭ (ବାଲେଶ୍ୱର), କୋନ୍ନଗର (କୋଣାର୍କ), ପାଲୁର (ଚିଲିକା), ପିଥୁଣ୍ଡ (କଳିଙ୍ଗପଟନମ୍)। ଏହା ବ୍ୟତୀତ ଅନ୍ୟ ପ୍ରମୁଖ ବନ୍ଦର ହେଲା-ଦୋସରନ୍ (ବୈତରଣୀ ମୁହାଣ), ଆଦାମସ୍ (ସୁବର୍ଣ୍ଣରେଖା ମୁହାଣ), ପକୁରା (ଗଞ୍ଜାମ), ନନ୍ନିଗେନ (ପୁରୀ), ଚେଳିତୋଳ (ତିର୍ତ୍ତୋଲ), କଣ୍ଟକ ସିଲାଇ (ଘଣ୍ଟଶୀଳା), ପିପିଲି (ବାଲେଶ୍ୱର), ଛାନୁଆ (ଚାନ୍ଦବାଲି), ମନନ୍ଦ (ମହାନଦୀ), ସମ୍ବଳକ (ସମ୍ବଲପୁର), ଦୋସରା (ବଲାଙ୍ଗୀର), ସୁକ୍ତିମତୀପୁର (ବଲାଙ୍ଗୀରର ସକମା), ଲଛନପୁର, ସାରଥ, ଧାମରା, ଚିଲିକା, ମାଣିକପାଟଣା ଇତ୍ୟାଦି ଆହୁରି ଅନେକ। ମେଘାସ୍ଥିନିସ୍‌ଙ୍କ ବିବରଣୀ ଅନୁସାରେ କଳିଙ୍ଗ ଉପକୂଳର ଦୈର୍ଘ୍ୟ ଥିଲା ୭୦୦ ମାଇଲ। ପାଲୁର ବନ୍ଦରର ବୋଇତରେ ବସି ଟଲେମି ମାଳୟଦ୍ୱୀପ ଯାଇଥିଲେ ତଥା ଚୀନ୍ ପରିବ୍ରାଜକ ଫାହିୟାନ (୪୧୫ ଖ୍ରୀ.) ଓ ହୁଏନସାଂ (୬୪୫ଖ୍ରୀ.ଅ) ବିପୁଳ ଗ୍ରନ୍ଥ ସହ କଳିଙ୍ଗର ବୃହତ୍ ବୋଇତରେ ବସି ଚୀନ୍ ଫେରିଥିଲେ। ମହାଭାରତ ଅନୁସାରେ କଳିଙ୍ଗର ଚେଦି ରାଜାଗଣ ପୁଞ୍ଜି ଖଟାଇ ବହିର୍ବାଣିଜ୍ୟକୁ ଉତ୍ସାହିତ କରୁଥିଲେ। ବାଣିଜ୍ୟକାରୀଙ୍କୁ 'ସାର୍ଥ' ଓ ଏହାର ମୁଖ୍ୟଙ୍କୁ

'ସାର୍ଥବାହ' କୁହାଯାଉଥିଲା । ଏହି 'ସାର୍ଥବାହ'ରୁ ସାଧବ ହୋଇଛି । 'ଅର୍ଥଶାସ୍ତ୍ର' ଅନୁସାରେ ଏହି ସାଧବଗଣ ପୃଥିବୀ ପ୍ରସିଦ୍ଧ ସୂକ୍ଷ୍ମ ବସ୍ତ୍ର, କୋଶଳର କୋଶା ବସ୍ତ୍ର ଓ କପାବସ୍ତ୍ର, ହାତୀ ଓ ହାତୀଦାନ୍ତ ସାମଗ୍ରୀ, ହୀରାକୁଦରୁ ପ୍ରାପ୍ତ ଧାତୁକୁ ନେଇ ବିଭିନ୍ନ ଧାତୁକର୍ମ, ତାରକସି କାମ, ମାଟିପାତ୍ର, ଲୁଣ, ଚାଉଳ ଆଦି ରପ୍ତାନୀ କରୁଥିଲେ । ପେରିପ୍ଲୁସ ଅଫ୍ ଦି ଆରିଥ୍ରିଆନ ସି ଅନୁସାରେ ରଣପୁର ଓ ତିଗିରିଆରୁ ପ୍ରସ୍ତୁତ ସୂକ୍ଷ୍ମବସ୍ତ୍ର ବାଉଁଶନଳୀ ମଧ୍ୟରେ ମୁଦ ଦେଇ ରପ୍ତାନୀ କରାଯାଉଥିଲା । ସେସମୟରେ କଳିଙ୍ଗ ବୋଇତର ଆୟତନ ଏତେ ବିଶାଳ ଥିଲା ଯେ, ଏଥିରେ ଅନାୟାସରେ ୫୦ ରୁ ୭୦ ହାତୀ ଆମଦାନୀ ତଥା ରପ୍ତାନୀ କରାଯାଇ ପାରୁଥିଲା । ଏହି ନୌବାଣିଜ୍ୟ କଳିଙ୍ଗ ସାଗରର ଗଭୀର ସମୁଦ୍ର ମଧ୍ୟଦେଇ ହେଉଥିଲା । କଳିଙ୍ଗ ବର୍ହିବାଣିଜ୍ୟ ସାମ୍ରାଜ୍ୟକୁ ଦେଖି କଳିଙ୍ଗ ରାଜାଙ୍କୁ ମହୋଦଧିପତି (ରଘୁବଂଶ) ଓ କଳିଙ୍ଗ ସାଗର ମଧ୍ୟରେ ଥିବା ସମସ୍ତ ଦ୍ୱୀପ କଳିଙ୍ଗ ଦେଶ (ଆର୍ଯ୍ୟ ମଞ୍ଜୁଶ୍ରୀ ମୂଳକଳ୍ପ) ବୋଲି କୁହାଯାଉଥିଲା ।

କାର୍ତ୍ତିକରୁ ବୈଶାଖ (ନଭେମ୍ବର– ଅପ୍ରେଲ) ପର୍ଯ୍ୟନ୍ତ ଉତ୍ତର-ପୂର୍ବ ମୌସୁମୀବାୟୁ ପ୍ରବାହିତ ହୁଏ । ଏହା ହେଉଛି ସାଧବଙ୍କ ପାଇଁ ସୁଦୂର ସ୍ଥଳରେ ବାଣିଜ୍ୟ ବ୍ୟବସାୟ କରିବାର ପ୍ରକୃତ ସମୟ । ତେଣୁ କାର୍ତ୍ତିକ ଅମାବାସ୍ୟା ରାତିରେ ପିତୃପୁରୁଷଙ୍କୁ ସ୍ମରଣ କରିବା ପରେ ଆରମ୍ଭ ହୁଏ ବାଣିଜ୍ୟ ବ୍ୟବସାୟର ପ୍ରସ୍ତୁତିପର୍ବ । ଏହା ପରଦିନ ସୂର୍ଯ୍ୟ ଉଦୟ ପୂର୍ବରୁ ଘରର ବୟୋଜ୍ୟେଷ୍ଠ ମହିଳାଙ୍କଦ୍ୱାରା ବୋଇତ ବନ୍ଦାଣ ହେବାପରେ ଆରମ୍ଭ ହୋଇଯାଏ ଜିନିଷପତ୍ର ଲଦା କାର୍ଯ୍ୟ । ଏହା ୧୫ଦିନ ଧରି ଚାଲିବାପରେ କାର୍ତ୍ତିକପୂର୍ଣ୍ଣମୀ ଦିନ ସୂର୍ଯ୍ୟୋଦୟ ପୂର୍ବରୁ ଘରର କୁଳବଧୂଙ୍କଦ୍ୱାରା ବନ୍ଦାପନାପରେ ପରିବାରର ସମସ୍ତ ସଦସ୍ୟଙ୍କ ଉପସ୍ଥିତିରେ ବୋଇତ ନିଜର ଲକ୍ଷ୍ୟପଥକୁ ଯାତ୍ରା କରେ । ବୈଶାଖ ମାସରେ ଖରାଦିନିଆ ସାମୁଦ୍ରିକ ଝଡ ଦେଖାଦେବା ପୂର୍ବରୁ ଏମାନେ ଦୀର୍ଘ ଛ'ମାସ ଧରି ବିଭିନ୍ନ ଅଞ୍ଚଳରେ ବ୍ୟବସାୟ ବାଣିଜ୍ୟ କରି ନିଜ ମାଟିକୁ ଫେରି ଆସନ୍ତି । ସେମାନଙ୍କ କୁଶଳ ପ୍ରତ୍ୟାବର୍ତ୍ତନ ଉପଲକ୍ଷେ ବୈଶାଖ ସଂକ୍ରାନ୍ତି ଦିନ ପଣା ପିଆ ମାଧ୍ୟମରେ ଆନନ୍ଦଉତ୍ସବ ପାଳନ କରାଯାଏ । ଯେଉଁମାନେ ସୁଦୂର ସ୍ଥଳକୁ ଯାଇଥାନ୍ତି, ସେମାନେ ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁର ଅନ୍ତିମ ପର୍ଯ୍ୟାୟ ଅର୍ଥାତ ଆଶ୍ୱିନ ମାସ ବେଳକୁ ଫେରିଥାନ୍ତି । କେଉଁ ଅତୀତରୁ ଆରମ୍ଭ ଏହି ନୌବାଣିଜ୍ୟ ୧୮୬୬ର ନଅଙ୍କ ଦୁର୍ଭିକ୍ଷରେ ସଂପୂର୍ଣ୍ଣ ଲୋପପାଇ କେବଳ ସ୍ମୃତିରେ ବଞ୍ଚିରହିଛି । ବର୍ତ୍ତମାନ ଅମାବାସ୍ୟାରେ ପିତୃପୁରୁଷଙ୍କୁ ସ୍ମରଣ କରାଯାଉଛି, ଅମାବାସ୍ୟା ପରଦିନ ଘରର ଖୁଣ୍ଟମୂଳେ ବୋଇତ ଚିତ୍ର କରି ବୟସ୍କା ମହିଳା ବନ୍ଦାପନା କରୁଛି, କାର୍ତ୍ତିକ ପୂର୍ଣ୍ଣମୀରେ ବୃହତ ବୋଇତ ବଦଳରେ ଛୋଟ ଡଙ୍ଗାଭସା ଯାଉଛି ଏବଂ ବୈଶାଖ ସଂକ୍ରାନ୍ତିରେ ପଣା ପିଆଯାଉଛି, ସାଧବ ଫେରନ୍ତା କାହାଣୀ ଖୁଦୁରୁକୁଣୀ ଓଷା ପାଳନ କରାଯାଉଛି, ମାତ୍ର ସେସମୟର ସାଧବ କିମ୍ବା ତାଙ୍କର ବୋଇତ ଆଉ ନାହିଁ । ନାହିଁ ଆମର ଅର୍ଥନୈତିକ ସମୃଦ୍ଧି ଆଉ ସାଂସ୍କୃତିକ ସମ୍ପର୍କ ।

ଆମ ରାଜ୍ୟରେ କାର୍ତ୍ତିକ ପୂର୍ଣ୍ଣିମାର ବୋଇତ ବନ୍ଦାଣ ଓ ଆକାଶଦୀପ ପର୍ବ ପାଳନ ପରି ସେହିଦିନ ଥାଇଲାଣ୍ଡର 'ଲଇ କ୍ରାଥଙ୍ଗ' (ଓଡିଆ 'ନଈକାର୍ତ୍ତିକ'ର ଥାଇ ଉଚ୍ଚାରଣ) ଉତ୍ସବ ପାଳନ କରାଯାଏ । ସେଠାରେ ଏହାକୁ 'ଆଲୋକ ଉତ୍ସବ' ବା 'ଜଳଦେବୀ ଉତ୍ସବ' କହିଥାନ୍ତି । କଦଳୀ ବାହୁଙ୍ଗା ବା ପଦ୍ମପତ୍ରରେ ତିଆରି ଡଙ୍ଗାକୁ ଫୁଲରେ ସଜାଇ ସୁବେଶିତା ରମଣୀମାନେ ପ୍ରତ୍ୟେକ ସହର ଓ ଗ୍ରାମ ନିକଟସ୍ଥ ନଦୀ, ପୋଖରୀ ବା କେନାଲ କୂଳରେ ବହୁ ଆଡମ୍ବରରେ ଏହି ପର୍ବ ପାଳନ କରିଥାନ୍ତି । ଓଡିଶାରେ ଏହି ପର୍ବ କେବେ ଆରମ୍ଭ ହୋଇଥିଲା, ସେ ବିଷୟରେ କୌଣସି ତଥ୍ୟ ନାହିଁ, ମାତ୍ର ଥାଇ ଇତିହାସ କହେ–୧୩ଶ ଶତାବ୍ଦୀରେ 'ସୁଖଥାଇ'ର ଜଣେ ରାଜବଂଶୀୟ ନାରୀ 'ନୋଫାବତ' ବା 'ଲୋଭାବତୀ' (ବୋଧହୁଏ କଳିଙ୍ଗର କୌଣସି ରାଜକନ୍ୟା କିମ୍ବା ବଣିକ କନ୍ୟା) ପ୍ରଥମେ ଫୁଲରେ ଏକ ଆଲୋକବର୍ତ୍ତିକା କରି ନଦୀରେ ଭସାଇ ଏହି ପର୍ବ ପାଳନ କରିଥିଲେ । ସେହିପରି ଏହି ଉତ୍ସବର ଆଉ ଏକ ମୁଖ୍ୟ ଆକର୍ଷଣ ହେଉଛି 'ଆକାଶଦୀପ'। ଉତ୍ସବ ରାତିରେ ଥାଇ ଆକାଶରେ ଭାସି ବୁଲୁଥିବା ଲକ୍ଷ ଲକ୍ଷ ଆକାଶଦୀପ ଓଡିଶାର ଗାଁ ଗହଳରେ କାର୍ତ୍ତିକ ମାସ ସାରା ରାତିରେ ବାଁଉଶ ଅଗରେ ବନ୍ଧା ଆକାଶଦୀପଠାରୁ ଗଢ଼ଣରେ କିଛିଟା ଭିନ୍ନ, ମାତ୍ର ଉଦ୍ଦେଶ୍ୟ ସମାନ । ଓଡିଆ ଜୀବନଯାତ୍ରା ସହିତ ସମ୍ପୂର୍ଣ୍ଣ ଅପରିଚିତ କେତେକ ଐତିହାସିକ 'ଲଇ କ୍ରାଥଙ୍ଗ' ଉତ୍ସବକୁ ଭାରତୀୟମାନଙ୍କ 'ଦୀପାବଳି' ଉତ୍ସବର ଅନୁକରଣ ବୋଲି କହୁଥିବାବେଳେ ୧୩ଶ ଶତାବ୍ଦୀରୁ ଆଜି ପର୍ଯ୍ୟନ୍ତ ଗୋଟିଏ ଲକ୍ଷ୍ୟ ନେଇ ବର୍ଷର ଗୋଟିଏ ସମାନ ତିଥିର ଦିନରେ, ପାଳିତ ହେଉଥିବା ଏହି ପର୍ବ ଦୁଇଟି ଅଞ୍ଚଳ ମଧ୍ୟରେ ଥିବା ସାଂସ୍କୃତିକ ସମନ୍ୱୟ ବିଷୟରେ କେହି ଅନ୍ୱେଷଣ କରିବାକୁ ଆଗ୍ରହୀ ହୋଇନାହାଁନ୍ତି । ସେହିପରି ସମାନ ଦିନରେ ପାଳିତ ହେଉଥିବା 'ମସ୍କାପନ କେତୁକଡ' (ବାଲି), ୯ମ ଶତାବ୍ଦୀରୁ ପ୍ରଚଳିତ ନୌକା ପ୍ରତିଯୋଗିତା 'ବୋନଓମ ତୋଉକ'(କାମ୍ବୋଡିଆ), 'ଥାଟ ଲୁଆଙ୍ଗ'(ଲାଓସ) ପର୍ବ ଓଡିଶା ସହିତ ନୌବାଣିଜ୍ୟଭିତ୍ତିକ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ସମ୍ପର୍କକୁ ସୂଚାଇଥାଏ ।

ଏହିଭଳି ଖୋଜି ବସିଲେ ଇତିହାସ ପୃଷ୍ଠାରୁ ଓ ସାଂସ୍କୃତିକ ସମନ୍ୱୟରୁ ବହୁ କଥା ବାହାରିବ ଆଉ ମାଟି ଖୋଳିଲେ ବହୁଦେଶ

ସହ ବାଣିଜ୍ୟ କାରବାରର ସ୍ମୃତିଚିହ୍ନ ମିଳିଯିବ। କଳିଙ୍ଗବାସୀଙ୍କଦ୍ୱାରା ସର୍ବପ୍ରଥମେ ଉପନିବେଶ ସ୍ଥାପନ କରାଯାଇଥିଲା ବ୍ରହ୍ମଦେଶ ବା ମିଆଁମାରରେ। ଏଠାରେ ଶୈବ ଓ ବୈଷ୍ଣବ ଉପାସନା ଆମରି ସାଧବ ପୁଅଦ୍ୱାରା ପ୍ରତିଷ୍ଠିତ। କାମ୍ବୋଡିଆର ହରିହର ଉପାସନା, ଭିଏତନାମର ପୁରୁଷୋତ୍ତମ ମନ୍ଦିର ଓ ଭଗବତୀ ମନ୍ଦିର ମଧ୍ୟ ଆମ ସାଧବ ପୁଅଦ୍ୱାରା ପ୍ରତିଷ୍ଠିତ, ଯାହା ଏବେ ଓଡ଼ିଆତ୍ୱକୁ ବହନ କରିଛି। ବର୍ତ୍ତମାନର ବିକଶିତ ସଭ୍ୟତାର ଅଂଶ ବିଶେଷ ଧାନଚାଷ ସର୍ବପ୍ରଥମେ ଓଡ଼ିଶାର କୋରାପୁଟ ଅଞ୍ଚଳରୁ ଆରମ୍ଭ କରାଯାଇଥିଲା ବୋଲି କୃଷି ବିଜ୍ଞାନୀଗଣ ସ୍ୱୀକାର କରିଛନ୍ତି। ୨୫୦୦ବର୍ଷ ତଳେ କଳିଙ୍ଗ ରାଜପୁତ୍ର ସିଂହବାହୁ ନିଜର ୫୦୦ ଅନୁଗାମୀଙ୍କୁ ନେଇ ସିଂହଳରେ ବସତି ସ୍ଥାପନ କରିବା ସହ ସେମାନଙ୍କୁ ଧାନଚାଷ ଶିଖାଇଥିଲେ, ଯାହା ପରବର୍ତ୍ତୀ କାଳରେ ଭାରତର ଦକ୍ଷିଣଭାଗ ଓ ଦକ୍ଷିଣପୂର୍ବ ଏସିଆକୁ ବ୍ୟାପୀ ଯାଇଥିଲା। ଏ ସଂପର୍କିତ ଗବେଷଣାର ବିସ୍ତୃତ ତଥ୍ୟ M.S. Randhawa: A history of agriculture in India, Vol. 1. New Delhi/ Crop Resources in Odisha- Dr. G. C. Sengupta: Souvenir- 64th Indian Science Congress, P-93 ଉଲ୍ଲେଖ ରହିଛି। ଭିଏତନାମ, ବାଲି, ଜାଭା, ସୁମାତ୍ରା ଆଦି ଦ୍ୱୀପପୁଞ୍ଜରୁ ମିଳିଥିବା ଅଭିଲେଖରେ ପ୍ରାଚୀନ ଓଡ଼ିଆ ଲିପି ବ୍ୟବହୃତ ହୋଇଛି। ଓଡ଼ିଶାରେ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରାଯାଉଥିବା ମନ୍ତ୍ର–ଓଁ କ୍ଷମସ୍ୱ ମାଂ ଜଗନ୍ନାଥ ସର୍ବପାପ ନିରାକାରଂ । ସର୍ବକାର୍ଯ୍ୟ ଇଦମ୍ ଦେହି ପ୍ରଣମାମି ସୁରେଶ୍ୱରମକୁ ମଧ୍ୟ ଏପର୍ଯ୍ୟନ୍ତ ବାଲିଦ୍ୱୀପବାସୀ ଶିବ ଉପାସନାରେ ବ୍ୟବହାର କରୁଛନ୍ତି। ଓଡ଼ିଶାର ଗୋଟିପୁଅ ନାଚ ଭଳି ଏକ ଲୋକନୃତ୍ୟ ବାଲିଦ୍ୱୀପରେ ଏବେ ମଧ୍ୟ ପ୍ରଚଳିତ। କଳିଙ୍ଗରାଜା ସଞ୍ଜୟ ଜାଭାଦ୍ୱୀପରେ ୨୦ ହଜାର ଓଡ଼ିଆ ପରିବାରକୁ ନେଇ ବସତି ସ୍ଥାପନ କରିଥିଲେ। ଐତିହାସିକ ଏଲ୍‌ଫିନଷ୍ଟୋନଙ୍କ ମତରେ ଜାଭାର ସଭ୍ୟ ଆଧୁନିକ ଅଧିବାସୀ ହିଁ କଳିଙ୍ଗ ନିବାସୀ। ଓଡ଼ିଶାର ଶୈଳୋଦ୍ଭବ ରାଜା ସୁମାତ୍ରା ଓ ବୋର୍ଣ୍ଣିଓରେ ଶୈଳେନ୍ଦ୍ର ବଂଶ ସ୍ଥାପନ କରିଥିଲେ, ଯାହା ପରବର୍ତ୍ତୀ କାଳରେ ସମଗ୍ର ଦକ୍ଷିଣ–ପୂର୍ବ ଏସିଆକୁ ନେଇ ବିଶାଳ ଶ୍ରୀବିଜୟ ସାମ୍ରାଜ୍ୟ ଗଢି ଉଠିଥିଲା। ଏବେ ମଧ୍ୟ ଏହି ଦ୍ୱୀପର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଭଗବତୀ। କଳିଙ୍ଗ ରାଜବଂଶଜ ନିଶଙ୍କ ମଲ୍ଲ ଓ ସାହସ ମଲ୍ଲ ସିଂହଳର ରାଜା ହେବା ପରେ କଳିଙ୍ଗ ସଂସ୍କୃତିର ବିକାଶ ଚରମ ସୀମାରେ ପହଞ୍ଚିଥିଲା। ସିଂହଳ ରାଜା ହୋଇ ମଧ୍ୟ ଏମାନେ ନିଜ ମୁଦ୍ରାରେ 'ଶ୍ରୀ କଳିଙ୍ଗ କି ଜୟ' ଉଲ୍ଲେଖ କରୁଥିଲେ। ଜାଭା ସ୍ଥିତ ବୋରୋବୁଦୁର ମନ୍ଦିରର ବୋଇତ ଚିତ୍ର, ଭୁବନେଶ୍ୱର ବୋଇତାଳ ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିରରେ ଥିବା ବୋଇତ ଚିତ୍ରରେ ହାତୀ ସହ ମାହୁନ୍ତ, ଆହୁଲାଧାରୀ ନାବିକ ଓ ଶ୍ରୀମନ୍ଦିର ଭୋଗମଣ୍ଡପରେ ଖୋଦିତ ବୋଇତରେ ମୁଖ୍ୟ ଚାଳକଙ୍କ ଚିତ୍ର ଏବଂ କୋଣାର୍କ ମନ୍ଦିରରେ କଳିଙ୍ଗ ସମ୍ରାଟଙ୍କୁ ବିଦେଶୀ ବଣିକର ଜିରାଫ ଉପହାର ଚିତ୍ର ତତ୍‌କାଳୀନ ଓଡ଼ିଆ ସାଧବଙ୍କ ଆନ୍ତଃ ମହାଦେଶୀୟ ନୌବାଣିଜ୍ୟ ସ୍ମୃତିକୁ ବହନ କରି ରଖିଛି। କଳିଙ୍ଗର ସେହିସବୁ ଉପନିବେଶ କ୍ଷେତ୍ରରେ ବସବାସ କରୁଥିବା ଓଡ଼ିଆଗଣ ବର୍ତ୍ତମାନ ଯଦିଓ ନୂଆ ପରିଚୟ ନେଇ ଜୀବନ ନିର୍ବାହ କରୁଛନ୍ତି, ମାତ୍ର ସେମାନଙ୍କ ଅଗୋଚରରେ ପାଳନ କରିଆସୁଛନ୍ତି ଅତୀତ ଉତ୍କଳୀୟ ସଂସ୍କୃତି। ଏହି ସଂସ୍କୃତିକୁ ନେଇ ଯେଉଁ ବ୍ୟକ୍ତିଗଣ ଅନିସନ୍ଧିତ୍ସୁ ହୋଇ ଉଠୁଛନ୍ତି, ସେମାନଙ୍କ ମଧ୍ୟରୁ କେତେକ ନିଜର ଆତ୍ମପରିଚୟ ଖୋଜିଛନ୍ତି ଠିକ୍ ମରିସସ୍‌ର ରାମରୂପ ଜଗନ୍ନାଥଙ୍କ ପରି। ତାଙ୍କ ଘରେ ସାଇତା କେତେକ ପୋଥି ଓ କାଗଜବିଡ଼ାରୁ ନିଜ ଅତୀତର ବଂଶ ପରିଚୟ ଓଡ଼ିଶାର ଯାଜପୁର ଜାଣି ନିଜର ମୂଳନିବାସ ଖୋଜିବାରେ ପ୍ରୟାସୀ ଅଛନ୍ତି ।

ପ୍ରତ୍ୟେକ ଜାତି ଓ ସଭ୍ୟତାର ଉତ୍ଥାନ ଓ ପତନ ରହିଛି ବୋଲି ଇତିହାସ ପୃଷ୍ଠାରୁ ଜାଣିହୁଏ। ଅତୀତରେ ଓଡିଆ ଜାତିର ବିଶ୍ୱବ୍ୟାପୀ ନିଜର ଗୌରବଗରିମାକୁ ଇତିହାସ ଧରି ରଖିଥିବାବେଳେ ତାହା କ୍ୱଚିତ ଜନସମ୍ମୁଖକୁ ଆସିଛି। ଏହାର ଏକମାତ୍ର କାରଣ ଆମର ଅନ୍ୱେଷଣ ମାନସିକତା ନାହିଁ ଯଦିଓ ଆମପାଖରେ ଗଣ୍ଡାଗଣ୍ଡା ଡକ୍ଟର ଉପାଧୀଧାରୀ ବିଦ୍ୱାନମାନେ ଅଛନ୍ତି। ଗୋଟିଏ ବ୍ୟକ୍ତିର ବଂଶ ପରିଚୟ କୌଣସି କୁକାର୍ଯ୍ୟର ବାଧକ ହେବାଭଳି ଗୋଟିଏ ଉନ୍ନତ ଜାତିର ଇତିହାସ ସେହି ଜାତିକୁ ଆହୁରି ଆଗକୁ ଯିବାପାଇଁ ପଥପ୍ରଦର୍ଶକ ସାଜେ। ମାତ୍ର ଓଡିଶା କ୍ଷେତ୍ରରେ ତାହା ଓଲଟା। ନିଜ ଇତିହାସକୁ ସନ୍ଦେହ କରୁଥିବା ବର୍ତ୍ତମାନର ଶିକ୍ଷିତ ଓଡିଆ ଭବିଷ୍ୟତ ପିଢ଼ିଙ୍କୁ ଏ ବିଷୟ ଜଣାଇବାରେ କୁଣ୍ଠିତ ଥିବାବେଳେ ଆମ ପୂର୍ବ ପୁରୁଷଗଣ କିନ୍ତୁ ନିଜର ଗୌରବକୁ ବିଭିନ୍ନ ପରମ୍ପରା ମାଧ୍ୟମରେ ଆମ ପାଇଁ ସାଇତି ରଖିଛନ୍ତି। ଦୁଃଖର କଥା ସେହି ପରମ୍ପରା ନା ଆମକୁ ଦେଇପାରୁଛି ସ୍ୱାଭିମାନ ନା ବଞ୍ଚିବାର ରାହା।

ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା
ଏନ୍–୪/୧୭, ନୂଆପଲ୍ଲୀ, ଭୁବନେଶ୍ୱର– ୭୫୧୦୧୫

# ସମ୍ବଲପୁରୀ ବାନ୍ଧକଳା

**ଗଣେଶ ରାମ ନାହାକ**

ମଣିଷର ଦୁଇଟି ଅତ୍ୟାବଶ୍ୟକ ଜିନିଷ ହେଲା ଖାଦ୍ୟ ଓ ବସ୍ତ୍ର । ଏ ଦୁଇ ଜିନିଷ ବିନା ମଣିଷ ଏହି ଧରା ତଳେ ବଂଚିପାରିବ ନାହିଁ କି ତିଷ୍ଠି ପାରିବ ନାହିଁ । ସୃଷ୍ଟିର ଆରମ୍ଭରୁ ମଣିଷ ଲଜ୍ଜା ନିବାରଣ ସକାଶେ ବସ୍ତ୍ର ପରିଧାନ କରି ଏକ ସଭ୍ୟ ଓ ଉନ୍ନତ ପ୍ରାଣୀ ରୂପେ ଗଣ୍ୟ ହୋଇ ଆସୁଅଛି ।

ପୃଥିବୀର ବିଭିନ୍ନ ଅଂଚଳରେ ସେହି ଅଂଚଳର ଭୌଗୋଳିକ ଅବସ୍ଥିତି ନେଇ ଜନସାଧାରଣ ଲୁଗା ପରିଧାନ କରିଥାଆନ୍ତି । କେତେକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ଜାତି ନିର୍ଦ୍ଦିଷ୍ଟ କିସମର ବସ୍ତ୍ର ପିନ୍ଧିବା ସାଧାରଣତଃ ପରିଦୃଶ୍ୟମାନ ହୋଇଥାଏ । ଏହାଦ୍ୱାରା ସେମାନଙ୍କର ସ୍ୱାତନ୍ତ୍ର୍ୟ ଓ ମାର୍ମିକତା ବେଶ୍ ଉପଲବ୍ଧି କରିହୁଏ । ଏତଦ୍‌ବ୍ୟତୀତ ସେମାନଙ୍କର ନିଜସ୍ୱ ରୁଚି ଓ ଭାବନା ମଧ୍ୟ ଉପଲବ୍ଧ କରିହୁଏ । ଭାରତବର୍ଷରେ ବିଭିନ୍ନ ପ୍ରଦେଶରେ ପୁରୁଷ ଓ ନାରୀ ସେମାନଙ୍କର ପାରଂପରିକ ଲୁଗା ପିନ୍ଧିବା ତ ରହିଛି କିନ୍ତୁ ନିର୍ଦ୍ଦିଷ୍ଟ କେତେକ ସ୍ଥାନର ବୁଣାଲୁଗା ବସ୍ତ୍ରର ଚାହିଦା, ଆକର୍ଷଣ ଓ ବୈଶିଷ୍ଟ୍ୟ ରହିଅଛି । ଏହି ପରିପ୍ରେକ୍ଷୀରେ ଓଡିଶାର ସମ୍ବଲପୁରୀ ବସ୍ତ୍ରର ମାନ ଓ ଗୁଣବତ୍ତା ବିଶ୍ୱ ବଜାରରେ ବେଶ୍ ପ୍ରସିଦ୍ଧି ଲାଭ କରିଛି ।



ପଶ୍ଚିମ ଓଡିଶାର ଏହି ବୟନ ଶିଳ୍ପ ଚାତୁରୀ ବାନ୍ଧକଳା ଭାବରେ ପରିଚିତ । ଏହି ବାନ୍ଧକଳା, ଏହି ଅଂଚଳରେ ଆଜକୁ ବହୁ ବର୍ଷରୁ ରହିଆସିଥିବା ବିଷୟରେ ଐତିହାସିକମାନେ ସୂଚନା ପ୍ରଦାନ କରିଛନ୍ତି । ସେ ଯାହା ହେଉନା କାହିଁକି ଆଜକୁ ସତୁରୀ ଅଶୀ ଦଶକରୁ ଏହି ବାନ୍ଧକଳାର ଡିଜାଇନ ଦ୍ରୁତ ଭାବରେ ଉନ୍ନତରୁ ଉନ୍ନତତର ହୋଇ ଏକ ସର୍ବଜନ ଆଦୃତ ବସ୍ତ୍ର ରୂପରେ ପରିଣତ ହୋଇ ପାରିଛି । ଏହା ପଶ୍ଚିମ ଓଡିଶାର ଅର୍ଥନୈତିକ ବିକାଶ କ୍ଷେତ୍ରରେ ମଧ୍ୟ ସହାୟକ ହୋଇପାରିଛି ।

ବୟନ ଶିଳ୍ପ କଳାକୁ ଆମ ଭାରତବର୍ଷର ବିଭିନ୍ନ ସଂପ୍ରଦାୟ ନିଜର କୌଳିକ ବୃତ୍ତି ଭାବରେ ଗ୍ରହଣ କରି ଆସୁଛନ୍ତି । ଏହାଦ୍ୱାରା ସେମାନେ ସେହି ବୃତ୍ତିରେ ତାଲିମ ନେଇ ନୂତନ ଜ୍ଞାନକୌଶଳ ପ୍ରୟୋଗ କରିବାରେ ସମର୍ଥ ହୋଇପାରୁଛନ୍ତି । କେବଳ ସେତିକି ନୁହେଁ ଏହି ବୟନ କଳାକୁ ଆହୁରି ବିକଶିତ ଆଉ ସମାଦୃତ କରିବା ପାଇଁ ରାଜ୍ୟ ସରକାର ତଥା ଭାରତ ସରକାର ବିଭିନ୍ନ ସମୟରେ ପ୍ରବୀଣ ଶିଳ୍ପୀମାନଙ୍କ ଦ୍ୱାରା ତାଲିମ ପ୍ରଦାନ କରୁଛନ୍ତି ।

ପଶ୍ଚିମ ଓଡିଶାର ସମ୍ବଲପୁର, ବରଗଡ, ସୋନପୁର, ବୌଦ ଆଦି ଜିଲ୍ଲାରେ ସମ୍ବଲପୁରୀ ବାନ୍ଧକଳାର କୁଶଳୀ

କାରିଗରମାନେ ବହୁ ଆକର୍ଷଣୀୟ ଶାଢୀ, ସାଲୱାର, ଗାମୁଛା, ଲୁଙ୍ଗି ଆଦି ବୁଣିବା କାର୍ଯ୍ୟରେ ବେଶ୍ ଦକ୍ଷତା ପ୍ରଦର୍ଶନ କରୁଛନ୍ତି । ବର୍ତ୍ତମାନ ସମ୍ବଲପୁରୀ ବାନ୍ଧଶାଢୀ, ୱାଲ ହାଙ୍ଗିଙ୍ଗ୍ ଆଦି ବସ୍ତ୍ରରେ ଜୟଦେବଙ୍କ ବିରଚିତ ଗୀତଗୋବିନ୍ଦର ମନୋହର ପଦାବଳୀ, ସ୍ୱଭାବ କବିଙ୍କ ତପସ୍ୱିନୀ, ପ୍ରଣୟ ବଲ୍ଲରୀ, କବିବର ରାଧାନାଥଙ୍କ ଚିଲିକା, ଉପେନ୍ଦ୍ର ଭଂଜଙ୍କ ଲାବଣ୍ୟବତୀ ଆଦି ବହୁ କବିଙ୍କ ସାହିତ୍ୟ କୃତିର ମଂଜୁଳ ଚିତ୍ର ବିନ୍ୟାସ କରି ଅପୂର୍ବ କଳା କୌଶଳ ପ୍ରଦର୍ଶନ କରିପାରୁଛନ୍ତି । ଏହିସବୁ ଚିତ୍ର ଓ ଚରିତ୍ରଗୁଡିକ ଖୁବ୍ ଜୀବନ୍ତ ଓ ଆକର୍ଷଣୀୟ ମନେ ହେଉଛି । ଏଥିପାଇଁ ଅଭିଜ୍ଞ ବୁଣାକାରମାନେ ଦେଶ ବିଦେଶରେ ପୁରସ୍କୃତ ମଧ୍ୟ ହେଉଛନ୍ତି । ଏହିସବୁ ସୂକ୍ଷ୍ମ କଳା ପ୍ରଦର୍ଶନ ପାଇଁ କାରିଗରଙ୍କୁ ଯଥେଷ୍ଟ ନିପୁଣତାର ସହ ପରିଶ୍ରମ କରିବାକୁ ପଡିଥାଏ । ଏହି ବାନ୍ଧକଳା କୌଶଳ ହାସଲ ପାଇଁ ଶିଳ୍ପୀର ସୌନ୍ଦର୍ଯ୍ୟବୋଧ ରହିବା ସହ ରୁଚି ତଥା ଆଗ୍ରହ ରହିବା ଏକାନ୍ତ ଆବଶ୍ୟକ ।

ବାନ୍ଧ, ରଙ୍ଗ ଓ ବୟନର ସମାହାର ହେଉଛି ସମ୍ବଲପୁରୀ ଶାଢୀ । ବାନ୍ଧ ଅର୍ଥାତ ଗଣ୍ଠି–ସୂତା ଉପରେ ଗଣ୍ଠି ପକାଇ ଯେଉଁ ଡିଜାଇନ୍ ପ୍ରସ୍ତୁତ କରାଯାଏ, ତାହାକୁ ବାନ୍ଧ କୁହାଯାଏ । ଅର୍ଥାତ୍ ଡିଜାଇନ୍‌ରେ ଶିଳ୍ପୀ ବା ବୁଣାକାର ଲୋକଙ୍କୁ ଆକୃଷ୍ଟ କଲା ପରି ବିଭିନ୍ନ ଚିତ୍ର ପ୍ରସ୍ତୁତ କରି ଗଣ୍ଠି ପକାଇଥାଏ । ଏହାପରେ ଆବଶ୍ୟକ ଅନୁଯାୟୀ ବିଭିନ୍ନ ପ୍ରକାର ରଙ୍ଗ ଦିଆଯାଏ । ଏହିପରି ପର୍ଯ୍ୟାୟକ୍ରମେ ବାନ୍ଧ ଓ ରଙ୍ଗ କାର୍ଯ୍ୟ ଶେଷ ହେଲାପରେ ସମସ୍ତ ଗଣ୍ଠି ଖୋଲାଯାଏ । ଏହାପରେ ଡ୍ରଇଁ ଆକାରରେ ଡିଜାଇନର ନମୁନା ସୂତା ଉପରେ ପ୍ରକାଶ ପାଇଥାଏ । ତା'ପରେ ତନ୍ତଶାଳାକୁ ଉକ୍ତ ବାନ୍ଧକୁ ନେଇ କପଡା ବୁଣାଯାଏ । ବୁଣାକାର୍ଯ୍ୟ ଶେଷ ହେଲା ପରେ ଯେଉଁ ଡିଜାଇନ୍‌ର କରାଯାଇଥାଏ ସେହି କପଡା ଉପରେ ତାହା ପ୍ରକାଶ ପାଇଥାଏ । ଏମିତି ଭାବରେ ଏହି ରୂପରେ ଶାଢୀ ବିଛଣା ଚାଦର, ଲୁଙ୍ଗି, ଗାମୁଛା, ସାର୍ଟକନା ଆଦି ତିଆରି ହୁଏ ଏବଂ ତାହାକୁ ବାନ୍ଧ ରଙ୍ଗ ଓ ବୟନ କଳା ଅର୍ଥାତ୍ ସମ୍ବଲପୁର ଡିଜାଇନ କୁହାଯାଏ ।

ମୁଖ୍ୟତଃ ବାନ୍ଧ ଓ ବୟନ ଡିଜାଇନ ପ୍ରସ୍ତୁତ କରିବା ପାଇଁ ଚାରି ପ୍ରକାର କାରିଗରର ଆବଶ୍ୟକ ପଡିଥାଏ । ପ୍ରଥମ ପ୍ରଣାଳୀ ପ୍ରସ୍ତୁତକାରୀ (Designer), ଦ୍ୱିତୀୟ ବାନ୍ଧ ପ୍ରସ୍ତୁତକାରୀ (Tier), ତୃତୀୟ ରଙ୍ଗ ପ୍ରସ୍ତୁତକାରୀ (Dyer) ଓ ଚତୁର୍ଥ ହେଲା ବୁଣାକାର (Weaver) ।

**ସମ୍ବଲପୁରୀ ବୟନ କଳାର ରଙ୍ଗ**

କୌଣସି କପଡାର ରଙ୍ଗ ହେଉଛି ଏକ ମୁଖ୍ୟ ବିଷୟ । କପଡାର ରଙ୍ଗ ବସ୍ତ୍ରର ଗୁଣବତ୍ତାର ପରିଚୟ ଦିଏ । ସେଥିପାଇଁ କପଡାର ରଙ୍ଗର ଗୁଣବତ୍ତା ଓ ଲେପନ ପ୍ରତି ଗୁରୁତ୍ୱ ଦେବା ଏକ ମୁଖ୍ୟ ବିଷୟ । ରଙ୍ଗର ଗୁଣବତ୍ତା ରହିଲେ ବସ୍ତ୍ରଟି ଆଦୃତ ହୁଏ ଏବଂ ବଜାରରେ ତାର ଚାହିଦା ବୃଦ୍ଧି ପାଇଥାଏ । ଏହି ପରିପ୍ରେକ୍ଷୀରେ ସମ୍ବଲପୁରୀ ବସ୍ତ୍ରର ରଙ୍ଗ ପକ୍କା ଏବଂ ଏହା ଯେତେ ପୁରୁଣା ହେଉଥିବ ରଙ୍ଗର ତେଜ ହ୍ରାସ ନ ପାଇ ଆକର୍ଷଣୀୟ ଦେଖାଯାଉଥାଏ । ଏହା ହେଉଛି ସମ୍ବଲପୁରୀ ବସ୍ତ୍ରର ବିଶେଷତ୍ୱ ।

ପୂର୍ବରୁ ସମ୍ବଲପୁରୀ ବାନ୍ଧ ପ୍ରକୃତିରୁ ମିଳୁଥିବା ବିଭିନ୍ନ ଫଳ, ମୂଳ, ପତ୍ର, ଚେର ଆଦିରୁ ରଙ୍ଗ ତିଆରି କରି ବାନ୍ଧରେ ଲେପନ କରାଯାଉଥିଲା । ବଶେଷତଃ ଆଁଛି ଗଛର ଛାଲିରୁ ମେରୁନ୍ ଓ ରେଡବି, ଝପଡା ଫଳ ଓ ହରିଡା, ବାହାଡା ଫଳ ରସରୁ କଳା, ନୀଳରଙ୍ଗ, ଫୁଲ ମଂଜିରୁ ଲାଲ୍ ରଙ୍ଗ, ବେଲଫଳ ରସରୁ ମଧ୍ୟ ବିଭିନ୍ନ ପ୍ରାକୃତିକ ଉପାୟରେ ରଙ୍ଗ ବାହାର କରି ଦିଆଯାଉଥିଲା । ଏବେ କିନ୍ତୁ ସେହି ପ୍ରାକୃତିକ ବସ୍ତୁର ରଙ୍ଗ ସହ ବଜାରରେ ମିଳୁଥିବା ରଙ୍ଗକୁ ମିଶାଇ ଆହୁରି ମାର୍ଜିତ ଓ ଘନିଷ୍ଠ କରି ବାନ୍ଧରେ ରଙ୍ଗ କରୁଛନ୍ତି । ଏହିସବୁ ରଙ୍ଗ ପ୍ରସ୍ତୁତ କରିବାକୁ ଯଥେଷ୍ଟ ସାବଧାନତାର ଆବଶ୍ୟକ ପଡିଥାଏ । ନତୁବା ରଙ୍ଗର ଉଚିତ ମୂଲ୍ୟ ଆସେନାହିଁ । ଏଥିପାଇଁ ସ୍ୱତନ୍ତ୍ର ମାଟିପାତ୍ର କିମ୍ବା ଆଲୁମିନିୟମ ପାତ୍ର ଦରକାର ହୋଇଥାଏ । କେଉଁ ବାନ୍ଧରେ କେତେ ରଙ୍ଗ ଆବଶ୍ୟକ, କୁଶଳୀ କାରିଗର ହିଁ ତାହା ଜାଣିଥାଏ ।

**ବୁଣାକାର (Weaver)**

ସୂକ୍ଷ୍ମ ଓ ସୁନ୍ଦର ବସ୍ତ୍ର ତିଆରି ପାଇଁ ନିପୁଣ ବୁଣାକାର ଆବଶ୍ୟକ । ଅନ୍ୟଥା ବସ୍ତ୍ରର ସୂକ୍ଷ୍ମ କାରୁକାର୍ଯ୍ୟ ହୋଇପାରିବ ନାହିଁ । କପଡା ବୁଣିବା ପାଇଁ ହସ୍ତ ନିର୍ମିତ ତନ୍ତ ଆବଶ୍ୟକ ହୋଇଥାଏ । ସମ୍ବଲପୁରୀ ବାନ୍ଧକଳା ନିରୁତା ତନ୍ତରେ ବୁଣାଯାଏ । ବୁଣିଲା ସମୟରେ ବାନ୍ଧ ଡିଜାଇନର ନକ୍ସାକୁ ଧ୍ୟାନ ଦେଇ ସାବଧାନ ସହକାରେ ବୁଣାକାର ବୁଣିଥାଏ । ବାନ୍ଧ ସୂତାର ଦୁଇପଟେ ହାତରେ ଧରି ବାନ୍ଧର ଡିଜାଇନ ବସାଇବାକୁ ପଡିଥାଏ । ଗୋଟିଏ ଭଲ ଶାଢୀ ପ୍ରସ୍ତୁତ କରିବା ପାଇଁ ଏକ ସପ୍ତାହ ଲାଗିଯାଏ । ସାଧାରଣ ଶାଢୀଟିଏ ପ୍ରସ୍ତୁତ କରିବାକୁ ୪ ଦିନ ସମୟ ଲାଗିଥାଏ ।

ଲୁଗାବୁଣା କାର୍ଯ୍ୟରେ ପରିବାରର ସମସ୍ତ ସଦସ୍ୟ ସାହାଯ୍ୟ ସହଯୋଗ କରିଥାନ୍ତି । ଏହି କାର୍ଯ୍ୟରେ ଡାଇର ସମସ୍ତେ ଦକ୍ଷ ଓ

ନିପୁଣ। ଏମାନେ ସମସ୍ତେ ବାନ୍ଧକଳା ଓ ବୟନ କାର୍ଯ୍ୟରେ ଅଭ୍ୟସ୍ତ। ପଶ୍ଚିମ ଓଡିଶାର ବାନ୍ଧରଙ୍ଗ ଓ ବୟନଶିଳ୍ପ ପାଇଁ ମୁଖ୍ୟତଃ ଭୁଲିଆ ସଂପ୍ରଦାୟ ପ୍ରସିଦ୍ଧ ଲାଭ କରିଛନ୍ତି। ଏମାନଙ୍କର ଏହା କୌଳିକ ବୃତ୍ତି। ଏତଦ୍‌ବ୍ୟତୀତ କୁଷ୍ଟା ଓ କୁଲି ସଂପ୍ରଦାୟ ମଧ୍ୟ କପଡା ବୁଣିବା କାର୍ଯ୍ୟ କରିଥାଆନ୍ତି। କୁଷ୍ଟା ଜାତିର ବୁଣାକାରମାନେ ମଠାଶାଢୀ ବୁଣିବାରେ ଧୁରନ୍ଧର। ଏମାନେ ପାଟ ଓ ମଠା ଶାଢୀ ବୁଣିବା ସମୟରେ ହସ୍ତ ଚାଳନା କରି କୁମ୍ଭ ଡିଜାଇନ ପ୍ରସ୍ତୁତ କରିଥାନ୍ତି । ଏହାବ୍ୟତୀତ ଶାଢୀର ଧଡି ଓ ମୁହଁରେ ବିଭିନ୍ନ ପ୍ରକାର ମାଛ, ପୁଷ୍ପ, କଇଁଛ ଆଦି ବିଭିନ୍ନ ଚିତ୍ର ଦେଇ ଦଶଫୁଲିଆ ଶାଢୀ ପ୍ରସ୍ତୁତ କରନ୍ତି। ଏମାନେ କୋଷା ବା ଟସରକୁ ବିଭିନ୍ନ ପ୍ରଣାଳୀରେ ଗରମ ପାଣିରେ ସିଝାଇ ତହିଁରୁ ସୂତା ବାହାର କରି ଶାଢୀ ବୁଣନ୍ତି। ଏହି କୁଷ୍ଟା ଜାତି ମଠା ବସ୍ତ୍ର ତିଆରି କରିବାରେ ଦକ୍ଷ। ଅଧୁନା ବରଗଡ ଜିଲ୍ଲାର ବରପାଲିର ପାଟବସ୍ତ୍ର ଏକଦା ଖୁବ୍ ପ୍ରସିଦ୍ଧି ଲାଭ କରିଥିବା କୁହାଯାଏ। କୁଲି ଜାତିର ବୁଣାକାରମାନେ କେବଳ ସାଧାରଣ ପ୍ରକାର ପ୍ଲେନ ଡିଜାଇନର ବସ୍ତ୍ର ଚୟନ କରିଥାଆନ୍ତି। ଏବେ ଅବଶ୍ୟ ସେମାନେ ବହୁପ୍ରକାର କପଡା ବୁଣାବୁଣି କରୁଛନ୍ତି। ସେ ଯାହା ହେଉନା କାହିଁକି ଏହି ଭୁଲିଆ, କୁଷ୍ଟା ଓ କୁଲି ସଂପ୍ରଦାୟର ବିଭିନ୍ନ ଡିଜାଇନ୍‌ର ହସ୍ତବୁଣା ଲୁଗା ସମଗ୍ର ବିଶ୍ୱ ବଜାରରେ ଆଦୃତ ଲାଭ କରିଛି।

ସମ୍ବଲପୁରୀ ଶାଢୀର ଧଡ଼ି ଓ ଆଂଚଳ ସୌନ୍ଦର୍ଯ୍ୟ ଓ ଅନନ୍ୟ। ଏହା ସ୍ୱତନ୍ତ୍ର ଭାବରେ କେବଳ ପଶ୍ଚିମ ଓଡିଶାର ବୁଣାକାରମାନଙ୍କର କଳା କୁଶଳର ପାରଦର୍ଶିତା କହିଲେ ଅତ୍ୟୁକ୍ତି ହେବନାହିଁ। ଏଥିପାଇଁ ବୁଣାକାରମାନଙ୍କୁ ବେଶ୍ ପରିଶ୍ରମ କରିବାକୁ ପଡିଥାଏ। ସେଥି ସକାଶେ ଆଜି ବିଶ୍ୱ ବଜାରରେ ଗୋଟିଏ ଗୋଟିଏ ଶାଢୀର ମୂଲ୍ୟ ଲକ୍ଷାଧିକ ଟଙ୍କା । ଯେଉଁ ଶାଢୀଗୁଡିକ ଚାଳିଶ ଦଶକ ପୂର୍ବରୁ ଆଦୃତ ଥିଲା ସେଗୁଡିକ ହେଲା–ମନ୍ଦାର ଫୁଲିଆ, କପଟା, ବଉଳପାଟ, ଜୁଇଫୁଲିଆ, ବାଧିକପଟା, ଦଶଫୁଲିଆ, କନା ପତନୀ, ଆସମାନ ତାରା, ସକଟାପର, ବିଚିତ୍ରାପୁର, ସାଟିପର ଆଦି। ବର୍ତ୍ତମାନ ଯେଉଁ ଶାଢୀଗୁଡିକର ଚାହିଦା ବେଶୀ ସେଗୁଡିକ ହେଲା–ପୁଷ୍ପାବତୀ, ରତ୍ନବତୀ, ମୃଗନୟନୀ, ଗଜଗମନୀ, ପଦ୍ମାବତୀ, ଚଂପକମାଳିନୀ, କଳିଙ୍ଗରତ୍ନ, କଳିଙ୍ଗସୁନ୍ଦରୀ, ଲାବଣ୍ୟବତୀ, ଇନ୍ଦୁମତୀ, ମୀନନୟନୀ, ପଞ୍ଚଜନ୍ୟ, ମାଳିନୀତୋୟା, ଭାରତୀ କୁସୁମ, କଳାନିଧି, ପୁଷ୍ପ ମାଳିଆ, ଶକୁନ୍ତଳା, ପୁଷ୍ପବତୀ, ରୁଦ୍ରାକ୍ଷ, ଉତ୍କଳରତ୍ନ, ଉତ୍କଳପ୍ରଭା, ଉତ୍କଳ ଲକ୍ଷ୍ମୀ ଆଦି ।

ପଶ୍ଚିମ ଓଡିଶାର ବୟନ ଶିଳ୍ପ ଆଜି ସମୃଦ୍ଧ। ଏହି କମନୀୟ ବୟନ କଳାଟି କେବଳ ଏହି ଅଂଚଳରେ ଉପଲବ୍ଧ। ସୂତା ହେଉ, ମଠା ହେଉ କିମ୍ବା ଷ୍ଟେପଲ ସୂତା ହେଉ ଏହି ବୟନ କଳା ବିଭାବଟିକୁ ଆହୁରି ମହିମା ମଣ୍ଡିତ ଓ ଶ୍ରୀମଣ୍ଡିତ କରିବା ସକାଶେ ଆଜକୁ ପାଞ୍ଚ ଛଅ ଦଶକ ଧରି ପରୀକ୍ଷାନିରୀକ୍ଷା ଚାଲିଛି। ଏଥିରେ ଶିଳ୍ପୀମାନେ ମଧ୍ୟ ବେଶ୍ ସଫଳତା ଲାଭ କରିଛନ୍ତି। ଏଥିପାଇଁ ସେମାନଙ୍କୁ ଆର୍ଥିକ, ମାନସିକ ଓ ଶାରୀରିକ ପରିଶ୍ରମ କରିବାକୁ ପଡୁଥିଲେ ମଧ୍ୟ ସେ ହସ୍ତତନ୍ତ ଶିଳ୍ପକୁ ବେଶ୍ ସକ୍ରିୟ ଓ ଉନ୍ନତ କରିବାକୁ ଆଗ୍ରହୀ ଓ ତତ୍ପର ଥିବାର ମନେହୁଏ। ବଂଶାନୁକ୍ରମେ ଓ ପୁରୁଷାନୁକ୍ରମେ ଏହି ଶିଳ୍ପରେ ସେମାନେ ସାଧନାରତ।

ସମଗ୍ର ଦେଶ ତଥା ବିଦେଶରେ ଆଜି ଯେଉଁ ସମ୍ବଲପୁରୀ ବୟନ କଳାକୁ ରୂପ କଳ୍ପନା ଦେଇ କୃତକାର୍ଯ୍ୟ ତଥା ସ୍ମରଣୀୟ ହୋଇଛନ୍ତି ସେହି ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ପଦ୍ମଶ୍ରୀ ସ୍ୱର୍ଗତଃ କୃତାର୍ଥ ଆଚାର୍ଯ୍ୟ, ସ୍ୱର୍ଗତଃ ରାଧେଶ୍ୟାମ ମେହେର, ସ୍ୱର୍ଗତଃ ମୋହନ ମେହେର, ପଦ୍ମଶ୍ରୀ ଯଦୁନାଥ ସ୍ୱପକାର, ପଦ୍ମଶ୍ରୀ କୁଂଜ ବିହାରୀ ମେହେର, ଶିଳ୍ପଗୁରୁ ଚତୁର୍ଭୁଜ ମେହେର, ସୁରେନ୍ଦ୍ର ମେହେର ଏବଂ ଦୟାଲୁ ମେହେର। ଏମାନେ ସମସ୍ତେ ବୟନ କଳାର ପ୍ରଚାର ପ୍ରସାର କରିବା ସଙ୍ଗେ ସଙ୍ଗେ ଅଧିକ ପ୍ରାଣବନ୍ତ ଓ ପ୍ରାଚୁର୍ଯ୍ୟମୟ କରିବା ସହ ପ୍ରଗତିଶୀଳ କରିବାରେ ସକ୍ଷମ ହୋଇଛନ୍ତି।

ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ ଥିଲେ ଜଣେ ଗାନ୍ଧୀବାଦୀ ବ୍ୟକ୍ତି। ଗାନ୍ଧୀଙ୍କ କୁଟିଖିଆ କାଟି ପିନ୍ଧ ନୀତି ଦ୍ୱାରା ସେ ବେଶ୍ ଅନୁପ୍ରାଣିତ ହୋଇଥିଲେ। ତେଣୁ ସେ ପଶ୍ଚିମ ଓଡିଶାର ବୁଣାକାରମାନଙ୍କୁ ସ୍ୱାଧୀନତାର ବହୁ ବର୍ଷ ପୂର୍ବରୁ ଏକତ୍ରିତ କରି ସମବାୟଭିତ୍ତିରେ ଏହି ଶିଳ୍ପକୁ ଗଢିବାରେ ଅଗ୍ରଣୀ ଭୂମିକା ନେଇଥିଲେ। ଏହା ବ୍ୟତୀତ ସମ୍ବଲପୁରୀ ବାନ୍ଧକଳାକୁ ନୂତନ ରୂପ ଓ ରଙ୍ଗରେ ସେ ବିନ୍ୟାସ କରିଥିଲେ। ଏହି ବାନ୍ଧକଳାର ପୁନରୁଦ୍ଧାର ଓ ଦିଗ୍‌ଦର୍ଶକ ରୂପେ ସେ ଅବଶ୍ୟ ସ୍ମରଣୀୟ।

ସମ୍ବଲପୁରୀ ବାନ୍ଧକଳା ଆନ୍ତର୍ଜାତୀୟ କ୍ଷେତ୍ରରେ ଇକତ (Ikat) ଶିଳ୍ପ କଳା ନାମରେ ଖ୍ୟାତିଲାଭ କରିଛି। ଏହି Ikat ଶବ୍ଦଟି ଇଣ୍ଡୋନେସୀୟ ଶବ୍ଦ । ଏହା Mengikat ଶବ୍ଦରୁ ଉଦ୍‌ଭବ। ଏହାର ଅର୍ଥ ହେଉଛି, ସୂତା ଉପରେ ଗଣ୍ଠି ପକାଇ ଯେଉଁ ଡିଜାଇନ ପ୍ରସ୍ତୁତ କରି ରଙ୍ଗ କରାଯାଏ ଏବଂ ପରେ ବୁଣାଯାଏ । ଭାରତବର୍ଷର ଗୁଜୁରାଟ, ମହାରାଷ୍ଟ୍ର, ଆନ୍ଧ୍ରପ୍ରଦେଶ, ଅରୁଣାଚଳ ପ୍ରଦେଶ ଏବଂ ଓଡିଶାର ପୂର୍ବାଞ୍ଚଳରେ ଏହି ବୟନ ଶିଳ୍ପକଳାର ପ୍ରଚଳନ ଅଛି। କିନ୍ତୁ ପଶ୍ଚିମ ଓଡିଶାର ସମ୍ବଲପୁର, ବରଗଡ,

ସୋନପୁର ଆଦି ସ୍ଥାନମାନଙ୍କରେ ପ୍ରସ୍ତୁତ ସମ୍ବଲପୁରୀ ବାନ୍ଧକଳା ବିଶ୍ୱ ବଜାରରେ ଇକତର ମାନ୍ୟତା ପାଇଅଛି। ଏହା ବେଶ୍ ଗୌରବର କଥା। କିନ୍ତୁ ଏବେ ଦେଖାଯାଉଛି ସମ୍ବଲପୁରୀ ବାନ୍ଧକଳାର ଅବିକଳ ନକଲ କରି କେତେକ ଅନୁଷ୍ଠାନ ଅଥବା ବ୍ୟକ୍ତିବିଶେଷ ବଜାରକୁ ଛାଡୁଛନ୍ତି। ଏହା ଫଳରେ ଅସଲ ବୁଣାକାର କ୍ଷତିରେ ପଡିବା ସହ ଏହି ବୟନ କଳାର ମୂଳ ଗୁଣବତ୍ତା ମଧ୍ୟ ନକଲି ଶାଢୀରେ ଦେଖିବାକୁ ମିଳେନାହିଁ। ଫଳରେ ଲୋକେ ଠକାମୀରେ ପଡିବା ସହ ଭବିଷ୍ୟତରେ ପଶ୍ଚିମ ଓଡିଶାର ବୟନ କଳା ବିଶ୍ୱ ବଜାରରେ ମ୍ଳାନ ହେବାର ସମ୍ଭାବନା ରହିଛି। ଏଥିପାଇଁ ଆମକୁ ସଚେତନ ଓ ସାବଧାନ ହେବାକୁ ପଡିବ।

ବୟନ ଶିଳ୍ପ ଏକ ଲାଭଜନକ ବ୍ୟବସାୟ। ବର୍ଷର ସବୁ ସମୟରେ ଏହା କର୍ମନିଯୁକ୍ତି ଯୋଗାଇଥାଏ। ଏହି ବୃତ୍ତିରେ ସମୟ ସୁବିଧା ଦେଖି ପରିବାରର ପ୍ରତ୍ୟେକ ସଦସ୍ୟ ଅଂଶ ଗ୍ରହଣ କରି ରୋଜଗାରକ୍ଷମ ହୋଇ ପାରିଥାଆନ୍ତି। ଏହି ବୟନ ଶିଳ୍ପ ବହୁ ଦୃଷ୍ଟିରୁ ସମ୍ବଲପୁରୀ ବସ୍ତ୍ରାଳୟ ଓ ବୟନିକା ନାମକ ଦୁଇଟି ସମବାୟଭିତ୍ତିକ ଅନୁଷ୍ଠାନ ଗଢାଯାଇଛି।

ରାଜ୍ୟର ବିଭିନ୍ନ ସ୍ଥାନରେ ଅନେକଗୁଡିଏ ସୂତା କଳ ସ୍ଥାପିତ ହୋଇଥିଲା। କିନ୍ତୁ ପରିଚାଳନାଗତ ତ୍ରୁଟି ଯୋଗୁଁ ସେସବୁ ପ୍ରାୟ ବନ୍ଦ ହୋଇଗଲାଣି। ବୟନ ଶିଳ୍ପ ପାଇଁ ସୂତା ହିଁ ମୁଖ୍ୟ କଂଚାମାଲ । ଏହାରି ଅଭାବରେ ଏହି ଶିଳ୍ପ ଉଧେଇ ପାରିବ ନାହିଁ। ଆମ ଓଡିଶାର ଅଣଜଳସେଚିତ ଅଂଚଳରେ ପ୍ରଚୁର କପା ଚାଷ ହେଉଥିବା ସତ୍ତ୍ୱେ ଆମକୁ କର୍ଣ୍ଣାଟକ, ତାମିଲନାଡୁ, କେରଳ ଆଦି ରାଜ୍ୟର ସ୍ପିନିଂ ମିଲ୍‌ର ସୂତା ଉପରେ ନିର୍ଭର କରିବାକୁ ପଡୁଛି। ଏଣୁ ସ୍ପିନିଂ ମିଲ୍‌ଗୁଡିକ ଚାଲିଲେ ଏହି ଶିଳ୍ପ ତ୍ୱରାନ୍ୱିତ ହେବା ସହ ଲାଭବାନ୍ ହେବ। ବାହର ରାଜ୍ୟରୁ ସୂତା ଆସୁଥିବାରୁ ବୁଣାକାର କେବେ କେବେ ନକଲି ସୂତା କ୍ରୟ କରି କ୍ଷତିରେ ପଡୁଥିବାର ଦେଖାଯାଏ। ସମ୍ବଲପୁରୀ ବୟନ କଳାର କୁଶଳୀ କାରିଗର ପ୍ରସ୍ତୁତ କରୁଥିବା ଶାଢୀର ମୂଲ୍ୟ ଅଧିକ। କିନ୍ତୁ ସେହି ପ୍ରକାରର ମିଲ୍ ଶାଢୀର ଦାମ୍ କମ୍ ପଡୁଥିବାରୁ ଗ୍ରାହକ ସେ ଆଡେ ମୁହାଉଁଛନ୍ତି। ଏଣୁ ବୁଣାକାର କ୍ଷତିରେ ପଡୁଛି। ଏଥିପାଇଁ ନକଲି ସମ୍ବଲପୁରୀ ଶାଢୀର ଡିଜାଇନ ବଜାରକୁ ଆସିଲେ ତାହାକୁ ନିଷିଦ୍ଧ କରିବା ଉଚିତ୍। ଏହି ନକଲି ଶାଢୀ ଯୋଗୁଁ ସମ୍ବଲପୁରୀ ବାନ୍ଧକଳା ଅନ୍ତର୍ଜାତୀୟ କ୍ଷେତ୍ରରେ ବଦନାମ ହେବାର ସମ୍ଭାବନା ସହିତ ଏହି ବାନ୍ଧକଳା ପ୍ରତି ଲୋକଙ୍କର ଆସ୍ଥା ତୁଟିଯିବ। ଏଣୁ ଆମ ସମସ୍ତଙ୍କୁ ଏଥିପାଇଁ ସଚେତନ ହେବାକୁ ପଡିବ।

ସମ୍ବଲପୁରୀ ବାନ୍ଧକଳା ଆମ ଜାତି ତଥା ଦେଶର ଗୌରବ। ଏହା ଆମ ସଂସ୍କୃତି ଓ ଐତିହ୍ୟର ପରିଚାୟକ। ଏହାଦ୍ୱାରା ଆମର ଅର୍ଥନୈତିକ ଜୀବନ ମଧ୍ୟ ସମୃଦ୍ଧ ହେଉଛି। ଏହି ବୟନ ଶିଳ୍ପରେ ବହୁଲୋକ କର୍ମନିଯୁକ୍ତି ପାଉଛନ୍ତି। ଏହି ଶିଳ୍ପଦ୍ୱାରା ପ୍ରତ୍ୟକ୍ଷ ଭାବରେ ୬.୫ ନିୟୁତ ଲୋକ ଉପକୃତ ହେଉଛନ୍ତି। ଏହା ବ୍ୟତୀତ ବହୁ ବୈଦେଶିକ ମୁଦ୍ରା ମଧ୍ୟ ଏହାଦ୍ୱାରା ଉପାର୍ଜନ ହୋଇପାରୁଛି। ବସ୍ତ୍ର ରପ୍ତାନୀ କ୍ଷେତ୍ରରେ ହସ୍ତତନ୍ତର ଚାହିଦା ବେଶୀ। ଦେଶର ମୋଟ ବୟନ ଶିଳ୍ପ ରପ୍ତାନୀର ହସ୍ତତନ୍ତ ହେଉଛି ୧୫ ପ୍ରତିଶତ।

ବାସ୍ତବରେ ସମ୍ବଲପୁରୀ ବାନ୍ଧକଳା ବିଶ୍ୱର ଏକ ପ୍ରମୁଖ ବୟନ କଳା। ଏଥି ସକାଶେ ଏହାର ବିକାଶ ସଂରକ୍ଷଣ ଓ ପ୍ରଗତି ପାଇଁ ଆମ ସମସ୍ତଙ୍କ ପ୍ରୟାସ ଓ ପ୍ରଯତ୍ନର ଆବଶ୍ୟକତା ରହିଛି। ବୁଣାକାର ସମବାୟ ସମିତିକୁ ସକ୍ରିୟ କରି ପ୍ରତ୍ୟେକ କାରିଗରକୁ ଏଥିରେ ଅନ୍ତର୍ଭୁକ୍ତ କଲେ ସେମାନେ ଅଧିକ ଉତ୍ସାହିତ ହୋଇ ଅଧିକ ଉତ୍ପାଦନକ୍ଷମ ହେବେ। ଏହା ବ୍ୟତୀତ ବୟନ ଶିଳ୍ପର ବିପଣନକୁ ସହଜ ଓ ସରଳୀକରଣ କରିବାକୁ ହେବ। ଆହୁରି ମଧ୍ୟ ଏହି ଶିଳ୍ପ ଏକ କୁଟୀର ଶିଳ୍ପ, ଯାହାକି ଗ୍ରାମ୍ୟ ଜୀବନକୁ ଅଧିକ ପ୍ରାଣବନ୍ତ, ସରସ ଓ କର୍ମଯୋଗୀ କରିପାରିବ।

ଏହି ସମ୍ବଲପୁରୀ ବାନ୍ଧକଳା ଯୋଗୁଁ ପଶ୍ଚିମ ଓଡିଶା ଆଜି ବେଶ୍ ସୁନାମ ଓ ପ୍ରସିଦ୍ଧି ଲାଭ କରିଛି। ତେଣୁ ଏହାର ଶ୍ରୀବୃଦ୍ଧି ପାଇଁ ଆମ ସମସ୍ତଙ୍କ ପ୍ରୟାସର ଆବଶ୍ୟକତା ରହିଛି।

ଦାନୀପାଲି, ବୁଢାରଜା
ସମ୍ବଲପୁର-୭୬୮୦୦୪

❖ ❖ ❖

## ମହିୟସୀ ନାରୀ

# ମନୋରମା ମହାପାତ୍ର

## (ପତ୍ରିକାର ସମ୍ପାଦକଙ୍କ ଦ୍ୱାରା ଅନ୍ତରଙ୍ଗ ସାକ୍ଷାତକାର ଆଧାରିତ ଆଲେଖ୍ୟ)

ଡକ୍ଟର ଲେନିନ୍ ମହାନ୍ତି



ଶ୍ରୀମତୀ ମନୋରମା ମହାପାତ୍ର– ଓଡ଼ିଶାର ପୁରପଲ୍ଲୀଠାରୁ ଆରମ୍ଭ କରି ଦେଶବିଦେଶରେ ଖୁବ୍ ପରିଚିତ ନାଁ । ଏକାଧାରରେ ଜଣେ କବୟିତ୍ରୀ, ଲେଖିକା, ଅବସରପ୍ରାପ୍ତ ଅର୍ଥନୀତି ପ୍ରାଧ୍ୟାପିକା, ସ୍ତମ୍ଭକାର, ସାମ୍ବାଦିକା, ସର୍ବୋପରି ଓଡ଼ିଶାର ଏକ ଆଦର୍ଶ ସ୍ଥାନୀୟ ବ୍ୟକ୍ତିତ୍ୱ । ବିଭିନ୍ନ ଭାଷାରେ ପାରଙ୍ଗମ ଏହି ମନସ୍ୱିନୀ ଲେଖିକା ନିଜର ନିରଳସ ସାହିତ୍ୟ ସେବା ସହ ସମାଜ ସେବାରେ ନିୟୋଜିତ ହୋଇଥିବାରୁ ତାଙ୍କ ସାହିତ୍ୟରେ ସାଧାରଣ ମଣିଷର ସମସ୍ୟା, ଯନ୍ତ୍ରଣା, ସଂସ୍କାରଧର୍ମୀ, ବିପ୍ଲବାତ୍ମକ ଚେତନା ପ୍ରତିଭାତ । ମୁଖ୍ୟତଃ ସେ ଜଣେ ପ୍ରତିଶ୍ରୁତିବଦ୍ଧ, ମାନବବାଦୀ, ସଂସ୍କାରଧର୍ମୀ ସମ୍ବେଦନଶୀଳ କବି । ମଣିଷ ସମାଜର ଦୁଃଖ ହରଣ ନିମନ୍ତେ ସତତ ପ୍ରୟାସୀ ଏହି ଦରଦୀ କବିଙ୍କର ଲେଖନୀ ସମାଜକୁ କୁସଂସ୍କାର ମୁକ୍ତ କରି ସଂହତି ଓ ସମତା ଆଣିବା ଦିଗରେ ସଚେତନ । ସମାଜର ବୈଷମ୍ୟ ତଥା ଅନ୍ଧବିଶ୍ୱାସ ଦୂର କରିବାରେ ସଦାସଚେଷ୍ଟ ବିପ୍ଳବୀ କବି ମନୋରମାଙ୍କର ବ୍ୟକ୍ତିତ୍ୱ ଏବଂ କୃତିତ୍ୱ ନିଶ୍ଚିତ ପକ୍ଷେ ଏ ସମାଜ ପାଇଁ ଏକ ବିରଳ ଉଦାହରଣ । ସମସ୍ତ ଘାତ ପ୍ରତିଘାତ, ପ୍ରତିକୂଳ ପରିସ୍ଥିତି ଓ ପରିବେଶକୁ ଏଡ଼ାଇ ଆଗକୁ ବଢ଼ି ନିଜର ତଥା ସମାଜର କଲ୍ୟାଣ ପ୍ରତିପାଦନ କରିବା ମାନବ ସମାଜର ଏକାନ୍ତ ବାଞ୍ଛନୀୟ । ଏଭଳି ଏକ ବ୍ୟକ୍ତିତ୍ୱର ନିରଳସ ଜୀବନଯାତ୍ରା ଓ ଉଚ୍ଚକୋଟୀର ଚିନ୍ତାଧାରା ସମ୍ପର୍କରେ ଜାଣିବା ବର୍ତ୍ତମାନ ଓ ଆଗାମୀ ପିଢ଼ି ନିମନ୍ତେ ଗର୍ବ ଓ ଗୌରବର ବିଷୟ ।

ଏହି ମହିୟସୀ ମହିଳାଙ୍କର ଜନ୍ମ ହୁଏ ୧୯୩୪ ମସିହା ଜୁନ୍ ୧୦ ତାରିଖର ଏକ ଅମୃତ ବେଳାରେ, କଟକ ଜିଲ୍ଲାର ଆଠଗଡ, ରାଧାନାଥପୁର ଶାସନରେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ ଓ ଧର୍ମପ୍ରାଣା ସାବିତ୍ରୀ ଦେବୀଙ୍କର ସେ ଥିଲେ ଚତୁର୍ଥ ସନ୍ତାନ । ସ୍ୱର୍ଗତ ପଦାରବିନ୍ଦ ମହାପାତ୍ରଙ୍କର ଧର୍ମପତ୍ନୀ । 'ଝିଅ ଜନମ ପର ଘରକୁ' ନ୍ୟାୟରେ ବୋଧେ ସେ ସହୋଦରମାନଙ୍କ ନିକଟରେ ଅଲୋଡ଼ି ନାମରେ ପରିଚିତା ଥିଲେ । ତାଙ୍କର ଅନ୍ୟ ଏକ ଡାକ ନାମ ଥିଲା 'ସୁଲୁ', ଯାହାର ଅର୍ଥ 'ଅତି ଉଦାସ' । ମାତ୍ର ସମୟକ୍ରମେ ଏହି 'ଅଲୋଡ଼ି–ସୁଲୁ' ନିଜର ଶୁଭନାମ 'ମନୋରମା'ର ଯଥାର୍ଥତା ପ୍ରତିପାଦନ କରିଥିଲେ । ମନୋରମା ଅର୍ଥାତ୍ ଅତି ଚିତ୍ତାକର୍ଷକ, ମନମୋହିନୀ ଓ ଆଦରଣୀୟା ।

ପ୍ରାଥମିକ ଶିକ୍ଷା ଶେଷ ପରେ ରେଭେନ୍ସା ଗାର୍ଲ୍ସ ହାଇସ୍କୁଲରୁ ମ୍ୟାଟ୍ରିକ୍ ପାଶ୍ କରିବା ସହ ମାଷ୍ଟ୍ରାଣୀ ହେବାର ସ୍ୱପ୍ନ ଦେଖିଥିବା

ମନୋରମା ମହାପାତ୍ର ଉଚ୍ଚ ଶିକ୍ଷା ନିମନ୍ତେ ତର୍କଶାସ୍ତ୍ର, ଅର୍ଥଶାସ୍ତ୍ର ଓ ସଂସ୍କୃତ ଆଦି ବିଷୟମାନ ରଖି ନାମ ଲେଖାଇଥିଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିଲେ ।

ଅର୍ଥନୀତିରେ ସ୍ନାତକୋତ୍ତର ସହ ୧୯୭୦ ମସିହାରେ ଓଡ଼ିଶା ଶିକ୍ଷା ବିଭାଗରେ ଯୋଗ ଦେଇ ଅର୍ଥନୀତି ପ୍ରାଧ୍ୟାପିକା ଭାବରେ ଦୀର୍ଘ ୧୫ବର୍ଷ କାଳ ଶିକ୍ଷାଦାନ କଲେ । ମାତ୍ର ସମାଜ ସେବାରେ ନିଜକୁ ପୂର୍ଣ୍ଣ ନିୟୋଜିତ କରିବା ଲକ୍ଷ୍ୟରେ ସେ ୧୯୮୫ ମସିହାରେ ସରକାରୀ ଚାକିରିରୁ ଅବସର ନେଇ ସାମ୍ବାଦିକତା ଓ ସାହିତ୍ୟ ସେବାରେ ନିଜକୁ ନିୟୋଜିତ କରିଥିଲେ ।

ଓଡ଼ିଆ, ସଂସ୍କୃତ, ହିନ୍ଦୀ, ଇଂରାଜୀ, ବଙ୍ଗଳା ଭାଷାରେ ପାରଙ୍ଗମ ଶ୍ରୀମତୀ ମହାପାତ୍ର ଦୀର୍ଘ ୬୦ ବର୍ଷରୁ ଊର୍ଦ୍ଧ୍ୱ କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ, ଶିଶୁ ସାହିତ୍ୟ, ଅନୁବାଦ ଆଦି ପ୍ରତିଟି ବିଭାଗରେ ନିଜର ପ୍ରତିଭାର ପରିଚୟ ଦେଇଛନ୍ତି । ବହୁ ଉପାଦେୟ ଲେଖା ଇଂରାଜୀ, ସଂସ୍କୃତ, ହିନ୍ଦୀ ତଥା ବିଭିନ୍ନ ଭାରତୀୟ ଭାଷାରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇ ପାଠକମାନଙ୍କ ଅପୂର୍ବ ସ୍ୱୀକୃତି ଲାଭ କରିଛି । ବଳିଷ୍ଠ ସ୍ତମ୍ଭକାର ଭାବେ 'ଝିଟିପିଟି କହେ' ସ୍ତମ୍ଭରେ ଶତାବ୍ଦୀ ନାମରେ ସେ ଦୈନିକ 'ସମାଜ' ପୃଷ୍ଠାରେ ବହୁବର୍ଷ ଧରି ଲେଖି ଆସୁଥିଲେ । ଶ୍ରୀମତୀ ମନୋରମାଙ୍କର ଦେଶାତ୍ମବୋଧକ କବିତା ବହି 'ଭାରତ ମାତା' କବିତା ଏବେ ଅଷ୍ଟମ ଶ୍ରେଣୀ ନିମିତ୍ତ ପ୍ରଚଳନ ହୋଇଛି ।

ଶ୍ରୀମତୀ ମନୋରମା ମହାପାତ୍ରଙ୍କର କବିତା ସାମ୍ରାଜ୍ୟକୁ ପ୍ରଥମ ଭେଟି 'ଜୁଆର ଯେଉଁଠି ଉଠେ', ଯେଉଁଥିରେ କି ନାରୀ ଜୀବନର ଗଭୀର ଅନାବିଳ ଭାବ, ଦୁଃଖ, ସୁଖର ପ୍ରକୃତ ଚିତ୍ର ଭାସିଉଠେ । ସେହିପରି 'ବୈଦେହୀ ବିସର୍ଜିତା' ଓ 'ରୂପମ୍ ରୂପମ୍ ପ୍ରତିରୂପମ୍' ପ୍ରକାଶିତ ହୋଇ ଖୁବ୍ ପ୍ରସିଦ୍ଧି ଲାଭ କରିଅଛି । ଅନ୍ୟାନ୍ୟ କୃତିତ୍ୱ ମଧ୍ୟରେ 'ସମୟ ପୁରୁଷ' (୨୦୦୮), ସ୍ମୃତି ଚନ୍ଦନ, ମଧୁବାତା ଋତାୟତେ (୧୯୯୦), ବନ୍ଦ ଘର୍‌କେ କିବାଡ୍ (ହିନ୍ଦୀ) ଇତ୍ୟାଦି ପାଠକ ମହଲରେ ବେଶ୍ ଆଦୃତି ଲାଭ କରିଛି ।

**ନାରୀ ନିର୍ଯାତନା ସମ୍ପର୍କରେ** ସ୍ପଷ୍ଟ ମତ ରଖି ସେ କହନ୍ତି ଯେ, ନିର୍ଯାତନାର ନବୀକରଣ ହୋଇଅଛି । କଟୁ ବାକ୍ୟ ମାଧ୍ୟମରେ ନିର୍ଯାତନା, ଯାହାର କିଛି ପ୍ରମାଣ ନଥାଏ । ଆଜିର ଅତ୍ୟାଧୁନିକ ଚଳଣି ସମ୍ପର୍କରେ ମତାମତ ଦେଇ କୁହନ୍ତି–

'ମୋର ବିଶ୍ୱାସ ଯେ, ଆଧୁନିକ ଯୁଗର ଝିଅମାନଙ୍କୁ ଯେତିକି ସୁବିଧା ସୁଯୋଗ ଦିଆଯାଉଛି, ନିରାପତ୍ତା ମଧ୍ୟ ଦେବା ଉଚିତ୍ ।'

**ଆଧୁନିକତା ସମ୍ପର୍କରେ** ତାଙ୍କର ମତ ହେଲା, ଆଧୁନିକତା ଯୁଗ ଭିତରେ ନାହିଁ କି ସମୟରେ ନାହିଁ, ଏହା ଏକ ମାନସିକତା । ଆଧୁନିକ ଯୁଗର ଝିଅମାନେ ଅତୀତକୁ ଚାହୁଁ ନାହାନ୍ତି । ମାତ୍ର ଅତୀତକୁ ଛାଡ଼ି ବର୍ତ୍ତମାନର ସ୍ଥିତି ଅସମ୍ଭବ । ତାଙ୍କର ଧାରଣା ଯେ ପ୍ରାଚୀନ ସଭ୍ୟତା, ସଂସ୍କୃତିକୁ ଆଣି ଜ୍ଞାନ ସହିତ ମିଶାଇ ଆହୁରି ମାର୍ଜିତ କରିବା ଉଚିତ୍ ଏବଂ ଏହି ପଥରେ ସବୁ ସମ୍ପର୍କର ସହଯୋଗ ଲୋଡ଼ା । ପିତା–ମାତା, ଶାଶୁ–ଶ୍ୱଶୁର, ଭାଇ–ଭଉଣୀ, ସ୍ୱାମୀ–ନଣନ୍ଦ, ଏସବୁ ସମ୍ପର୍କକୁ ହେୟ କରି ଆଗକୁ ବଢ଼ିହୁଏ ସତ, ମାତ୍ର ମାନସିକ ସ୍ତରରେ ସଫଳତା ଅସମ୍ଭବ ।

**ନାରୀ ସମ୍ପର୍କରେ** କହନ୍ତି, 'ବିନାଶ୍ରୟେ ନବର୍ତ୍ତନ୍ତି, କବିତା–ବନିତା–ଲତା'– ଏହା ବର୍ତ୍ତମାନର ନାରୀମାନଙ୍କ ପାଇଁ ଯୁକ୍ତିଯୁକ୍ତ ନୁହେଁ । ନାରୀ ଏବେ ପରାଶ୍ରିତା ନୁହେଁ । ସେ ସ୍ୱୟଂସିଦ୍ଧା । ଏବେର ଝିଅଙ୍କ ଆତ୍ମବିଶ୍ୱାସ ଅଧିକ । କୁସଂସ୍କାରକୁ ଏଡ଼େଇ ଆଗକୁ ପାଦ ଥାପିଛି ଆଜିର ନାରୀ । ସେଥିପାଇଁ ତା'ର ପୂର୍ବପିଢ଼ି ରକ୍ତାକ୍ତ ହୋଇଛି । ତାଙ୍କରି ରକ୍ତରେ ଭିଜି ଆଜିର ନାରୀ ନିର୍ଭୀକ, ଉନ୍ନତମନା । ପୂର୍ବପିଢ଼ିର ବଳିଦାନ ହିଁ ଆଗକୁ ଯିବାରେ ବାଟ ଦେଖାଇଅଛି ଆଜିର ନାରୀମାନଙ୍କୁ ।

ଆଜିର ନାରୀ କର୍ମଠ, ଆତ୍ମନିର୍ଭରଶୀଳା ଓ ସାହସୀ । ତେବେ ହୀନମନ୍ୟତା, କୁସଂସ୍କାର ଇତ୍ୟାଦି ଛାଡ଼ି ସେମାନେ ଏ ଶତାବ୍ଦୀରେ ଶ୍ରେଷ୍ଠତ୍ୱ ହାସଲ କରିପାରିବେ । ମୂଲ୍ୟବୋଧକୁ ଛାଡ଼ି ନାରୀର ସ୍ଥିତିନାହିଁ । ନାରୀ ଯୁଗେ ଯୁଗେ ସ୍ନେହ, ତ୍ୟାଗ, ପ୍ରେମ ପାଇଁ ସମାଜରେ ପରିଚିତା । ଏସବୁ ବ୍ୟତିରେକେ ନାରୀର ସ୍ଥିତି ଅସମ୍ଭବ ।

**ନାରୀମାନଙ୍କ ନିମିତ୍ତ ସନ୍ଦେଶ** ଦେଇ ସେ କହନ୍ତି ଯେ, ଆଙ୍ଗିକ ପରିବର୍ତ୍ତନ ସମ୍ଭବ ଏବଂ ବାଞ୍ଛନୀୟ । କିନ୍ତୁ ନାରୀ ସୁଲଭ ଗୁଣ ଛାଡ଼ିବା ନିତାନ୍ତ ଲଜ୍ଜାଜନକ । ନିଜର ସୌନ୍ଦର୍ଯ୍ୟର ଏବଂ କାମନାର ବିନିଯୋଗରେ ଆଗକୁ ବଢ଼ିବା ନାରୀର ଧର୍ମ ନୁହେଁ । ବ୍ୟକ୍ତି ସତ୍ତା ରହିବା ଦରକାର । ଆଉ କାହାରି ସାହାଯ୍ୟ ଦରକାର ନାହିଁ... ପାଦସ୍ପର୍ଶ ଦରକାର ନାହିଁ ।

**ସ୍ତ୍ରୀ–ସ୍ୱାମୀ ଓ ନାରୀ–ପୁରୁଷ ସମ୍ପର୍କରେ** କହନ୍ତି, ଶରୀରରେ, ମନରେ, ଭାବରେ, ଚରିତ୍ରରେ ନାରୀ ନେଇ ପୃଥକ

ଅଟନ୍ତି । ଏମାନେ କେହି କାହା ଅପେକ୍ଷା ଶ୍ରେଷ୍ଠ ବା ହୀନ ନୁହଁନ୍ତି । ସମସ୍ତ ନିର୍ଭର କରେ– କିଏ କିପରି ଭାବରେ ତାହାର ନିଜସ୍ୱ ବୈଶିଷ୍ଟ୍ୟକୁ ଅକ୍ଷୁଣ୍ଣ ରଖେ ।

ନାରୀ–ପୁରୁଷ ଉଭୟେ ଉଭୟଙ୍କୁ ସମ୍ମାନ କରିବା ଉଚିତ୍ । ପୁରୁଷ, ନାରୀକୁ ଅବଜ୍ଞା କରି କବି ହୋଇପାରେ କିନ୍ତୁ ନାରୀ ଏସବୁ ପାରେନା । ନାରୀ ନିଜ ନାମରେ ହିଁ ବିଶାଳ । ନାରୀ ଆତ୍ମା, ବିଚାରବୋଧ ତାକୁ କଦାପି ସ୍ୱାମୀର ଉର୍ଦ୍ଧ୍ୱରେ ନେବାକୁ ଚାହେଁନା ଏବଂ ସ୍ୱାମୀର ସ୍ନେହ, ପ୍ରେରଣା, ଆଶ୍ୱାସନା ଭରା କଥା ହିଁ ନାରୀର ସମ୍ବଳ । ସ୍ୱାମୀ ପ୍ରକୃତପକ୍ଷେ ଜଣେ ବିଶ୍ୱସନୀୟ, ପ୍ରେରଣାମୟ ବନ୍ଧୁ । ଏପରି କୁହାଯାଇପାରେ, ଆଜିର ଏହି ଦୁନିଆରେ ଜଣକୁ ସୁଖୀ କରିବା ଯଦି ଅନ୍ୟର ସୁଖର କାରଣ ହୁଏ, ସେତେବେଳେ ହିଁ ବାସ୍ତବିକ ସୁଖ ବ୍ୟାପ୍ତି ହେବା ସମ୍ଭବ ।

ପୁରୁଷ, ସକ୍ରିୟ, ବୁଦ୍ଧିଶୀଳ, ସେ ଭର୍ତ୍ତା କର୍ତ୍ତା ଆଉ ନାରୀର ଶକ୍ତି ମଧୁର ଆଦେଶରେ, ବ୍ୟବସ୍ଥାରେ ଏବଂ ନିର୍ଦ୍ଧାରଣରେ ।

**ଲେଖକ–ଲେଖା–ସାହିତ୍ୟ–ସମାଜର ଅବସ୍ଥା ସମ୍ପର୍କରେ** ମତ ରଖି କହନ୍ତି, ଆଜିର ଯୁଗରେ ବିଜ୍ଞାନର ଅଗ୍ରଗତି ଘଟିଛି । ଜ୍ଞାନ ଆହରଣର ସୁବିଧା ବଢ଼ିଛି । ତଥାପି ସାହିତ୍ୟରେ ସେ ବେଦନାବୋଧର ଅଭାବ ରହିଯାଇଛି । ଯିଏ ଲେଖେ ସେମାନେ ସମସ୍ତେ କବି ନୁହନ୍ତି । ଆଉ ଯିଏ ଲେଖୁନି ସିଏ କବି ନୁହେଁ ବୋଲି କୁହାଯାଇନପାରେ । ମାତ୍ର କବିତା ଅନ୍ତରକୁ ସ୍ପର୍ଶ କରିବା ଉଚିତ୍ । ନହେଲେ ସେ କବିତା ନୁହେଁ ।

**ବୁଦ୍ଧିଜୀବୀ ସମ୍ପର୍କରେ ମତ ରଖନ୍ତି ଯେ,** ବୁଦ୍ଧିଜୀବୀର ପ୍ରକୃତ ଅର୍ଥ ଏବେ ସ୍ପଷ୍ଟ ବାରି ହୋଇପଡେ, ଆଜିର ଏହି ସମାଜରେ । ଯେଉଁଠି ଏହାର ଆକ୍ଷରିକ ଅର୍ଥ ବୁଦ୍ଧି ବିକାଶ ନୁହେଁ ବରଂ ବୁଦ୍ଧିକୁ ବିକି ଜୀବିକା ଅର୍ଜନ କରିବା ।

ବିବିଧ ପ୍ରତିଭାର ଅଧିକାରିଣୀ ଶ୍ରୀମତୀ ମନୋରମାଙ୍କର ଜୀବନଯାତ୍ରା ଅତି ଚିତ୍ତାକର୍ଷକ ଓ ପ୍ରେରଣାପ୍ରଦ । ଏଭଳି ଏକ ବ୍ୟକ୍ତିତ୍ୱର ଜୀବନୀ ଅନୁକରଣ ଆଜିର ନାରୀ ସମାଜର ଏକାନ୍ତ କାମ୍ୟ ।

ସାହିତ୍ୟ କ୍ଷେତ୍ରରେ ନିଜର ବଳିଷ୍ଠ ଅବଦାନ ନିମିତ୍ତ ସେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ଅନେକ ଥର ପୁରସ୍କୃତ ହୋଇଛନ୍ତି । ସେଗୁଡିକ ମଧ୍ୟରେ– ଫକୀରମୋହନ ସେନାପତି ପୁରସ୍କାର– ରୂପାନ୍ତର, ବିଷୁବ ପୁରସ୍କାର– ପ୍ରଜାତନ୍ତ୍ର ପ୍ରଚାର ସମିତି (ଗଦ୍ୟ) ୧୯୫୬ । ୧୯୫୯ରେ କ୍ଷୁଦ୍ରଗଳ୍ପ ନିମନ୍ତେ ଓ ୧୯୬୬ରେ ଝଙ୍କାର ପୁରସ୍କାର (ପଦ୍ୟ), ୧୯୮୪ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ସେହି ୧୯୮୪ରେ ପାଠକ ସଂସଦ ପୁରସ୍କାର, ଗୋ କର୍ଣ୍ଣିକା ପୁରସ୍କାର, ୧୯୮୮ରେ ସୋଭିଏତ୍ ଲ୍ୟାଣ୍ଡ ନେହରୁ ପୁରସ୍କାର ସହ ସମସାମୟିକ ରୁଷୀୟ କବିତାର ଅନୁବାଦ ତାଙ୍କ ବହୁମୁଖୀ ପ୍ରତିଭାର ସ୍ୱାକ୍ଷର ବହନ କରେ । ଦୀର୍ଘ ୫୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ, ଶିଶୁ ସାହିତ୍ୟ, ଏକାଂକିକା, ଅନୁବାଦ ସହ ପ୍ରାୟ ପ୍ରତିଟି ବିଭାଗରେ ନିଜର ପ୍ରତିଭାର ସ୍ୱାକ୍ଷର ଛାଡ଼ି ଅଛନ୍ତି ।

ଜୀବନକାଳ ମଧ୍ୟରେ ତାଙ୍କର **ବିଦେଶଗସ୍ତ ସମ୍ପର୍କରେ** କହନ୍ତି ଯେ, ସେ ଏକ ସାମ୍ବାଦିକା ହିସାବରେ ତତ୍କାଳୀନ ପ୍ରଧାନମନ୍ତ୍ରୀଙ୍କ ସହିତ ୟୁ.ଏସ୍.ଏ., ମରିସସ୍, ଥାଇଲାଣ୍ଡ ଓ ବାଂଲାଦେଶ ଇତ୍ୟାଦି ଗସ୍ତ କରି ଅଛନ୍ତି ।

ସେ ମଧ୍ୟ ସର୍ବ ଭାରତୀୟ ଲେଖିକା ସଂଘର ଜଣେ ସଭ୍ୟା, ଲୋକ ସେବକ ମଣ୍ଡଳର ଆଜୀବନ ସଦସ୍ୟା, ଓଡ଼ିଶାର ଦୈନିକ ସମ୍ବାଦପତ୍ର 'ସମାଜ'ର ସମ୍ପାଦିକା, ଓଡ଼ିଶାନାରୀ ସେବା ସଂଘର ଉପ ସଭାପତି, ଓଡ଼ିଶା ସ୍କାଉଟ୍ ଆଣ୍ଡ ଗାଇଡ୍‌ର ଉପ ସଭାପତି ଓ ସ୍ୱେଚ୍ଛାକୃତ ରକ୍ତଦାତା ସଙ୍ଗଠନର ସଭାପତି ରୂପେ ତାଙ୍କର ଅସୀମ କାର୍ଯ୍ୟଧାରାରେ ଏ ଜାତି ଓ ଜନତାଙ୍କୁ ଅଭିମନ୍ତ୍ରିତ କରିପାରିଛନ୍ତି ।

ଆଜିର ନାରୀ ସଶକ୍ତିକରଣ ଯୁଗରେ ଏହି ମହିୟସୀ ନାରୀ ମନୋରମା ମହାପାତ୍ରଙ୍କ ଜୀବନୀକୁ ଅନୁଧ୍ୟାନ କରି ତାଙ୍କ ଆଦର୍ଶରେ ବର୍ତ୍ତମାନର ଓ ଉତ୍ତରପିଢ଼ି ଅନୁପ୍ରାଣିତ ହେଲେ ଆମ ସମାଜରେ ଶାନ୍ତି, ସଂହତି ଓ ପ୍ରଗତି ସମ୍ଭବ ହୋଇପାରିବ । ନାରୀ ସମ୍ମାନରେ ଏ ମାଟି ଦେବତାର ବିଚରଣ କ୍ଷେତ୍ର ପାଲଟିଯିବ ।

ସମ୍ପାଦକ
ଉତ୍କଳ ପ୍ରସଙ୍ଗ

❖ ❖ ❖

# ଚଳିତ ବର୍ଷର ମରୁଡି ପରିସ୍ଥିତିର ମୁକାବିଲା ନିମନ୍ତେ ରାଜ୍ୟ ସରକାରଙ୍କର ସ୍ୱତନ୍ତ୍ର ସହାୟତା

## ମରୁଡ଼ି ଅଞ୍ଚଳରେ ଜଳକର ଛାଡ଼ ଓ ଋଣ ଆଦାୟ ସ୍ଥଗିତ ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ

- ନଭେମ୍ବର ୧୦ ତାରିଖ ସୁଦ୍ଧା ବିହନ ଓ ଅନ୍ୟାନ୍ୟ କୃଷି ଉପକରଣ କ୍ଷତିଗ୍ରସ୍ତ ଚାଷୀଙ୍କୁ ଯୋଗାଇଦେବାକୁ ନିର୍ଦ୍ଦେଶ ।

- କ୍ଷତିଗ୍ରସ୍ତ ଅଞ୍ଚଳରେ କୃଷକ କ୍ଲବ ଗଠନ ଓ ପଞ୍ଚାୟତ ସ୍ତରରେ ସଚେତନତା ଓ ପରାମର୍ଶ ଶିବିର ଆୟୋଜନ ସହିତ ଜିଲ୍ଲା, ବ୍ଲକ୍ ଏବଂ ତହସିଲ୍ ସ୍ତରରେ ୨୪ ଘଣ୍ଟିଆ ନିୟନ୍ତ୍ରଣ କକ୍ଷ ଓ ହେଲ୍ପଡେସ୍କ ।

- ମରୁଡ଼ି ଦ୍ୱାରା ୩୩% ଓ ତଦୂର୍ଦ୍ଧ୍ୱ ଫସଲ କ୍ଷତି ହୋଇଥିଲେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ କୃଷି ଭିତ୍ତିକ ସହାୟତା ବାବଦରେ ଅଣ ଜଳସେଚିତ ଜମି ପାଇଁ ହେକ୍ଟର ପିଛା ୬,୮୦୦ ଟଙ୍କା ଏବଂ ଜଳସେଚିତ ଜମି ପାଇଁ ୧୩,୫୦୦ ଟଙ୍କା ଅନୁଦାନ ଆକାରରେ ଯୋଗାଇ ଦିଆଯିବ । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ଚାଷୀମାନଙ୍କୁ ମଧ୍ୟ ଦୁଇ ହେକ୍ଟର ଚାଷଜମି ପର୍ଯ୍ୟନ୍ତ ସମାନ ହାରରେ ଏହି ଅନୁଦାନ ଯୋଗାଇ ଦିଆଯିବ । ଦୀର୍ଘମିଆଦୀ ଫସଲ କ୍ଷତି ନିମନ୍ତେ କ୍ଷତିଗ୍ରସ୍ତ ଚାଷୀମାନଙ୍କୁ ହେକ୍ଟର ପିଛା ୧୮,୦୦୦ ଟଙ୍କାର ଅନୁଦାନ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଅଛି । ଏହି ସମସ୍ତ ଅନୁଦାନ କେବଳ ପ୍ରକୃତ ଚାଷୀମାନଙ୍କୁ ଦିଆଯିବ ।

- ଖରିଫ ଫସଲ କ୍ଷତିଗ୍ରସ୍ତ ହେଉଥିବା ଅଞ୍ଚଳରେ କୃଷକମାନଙ୍କୁ ଚଳିତ ରବି ଋତୁରେ ବିଭିନ୍ନ ଫସଲ ନିମନ୍ତେ ନୂତନ ଋଣ ଯୋଗାଇ ଦିଆଯିବାର ବ୍ୟବସ୍ଥା କରାଯାଇଛି । ଏଥିନିମନ୍ତେ ସମବାୟ ବ୍ୟାଙ୍କଗୁଡିକ ଦ୍ୱାରା ୪,୫୦୦ କୋଟି ଟଙ୍କା ଋଣ ଯୋଗାଣର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । କ୍ଷତିଗ୍ରସ୍ତ ଅଞ୍ଚଳର ଚାଷୀମାନଙ୍କ ଉପରେ ଖରିଫ ଋଣ ବକେୟା ଥିଲେ ମଧ୍ୟ ଏହି ଋଣ ଯୋଗାଇ ଦିଆଯିବ ।

- ଚାଷୀମାନଙ୍କୁ ଶୋଷଣ କରୁଥିବା ମହାଜନ ଓ ଅନ୍ୟାନ୍ୟ ଅବାଞ୍ଛିତ ବ୍ୟକ୍ତିମାନଙ୍କ କାର୍ଯ୍ୟକଳାପ ଉପରେ ଜିଲ୍ଲାପାଳମାନେ ତୀକ୍ଷ୍ଣ ଦୃଷ୍ଟି ରଖିବା ସହିତ ଆବଶ୍ୟକସ୍ଥଳେ ଆଇନ ଅନୁଯାୟୀ କଠୋର କାର୍ଯ୍ୟାନୁଷ୍ଠାନ ପାଇଁ ନିର୍ଦ୍ଦେଶ ।

- ୫୦ ପ୍ରତିଶତରୁ ଅଧିକ ଫସଲ କ୍ଷତିଗ୍ରସ୍ତ ହୋଇଥିବା ଅଞ୍ଚଳରେ ଚାଷୀମାନଙ୍କ ସ୍ୱଳ୍ପକାଳୀନ ଫସଲ ଋଣକୁ ମଧ୍ୟମକାଳୀନ ଋଣରେ ପରିବର୍ତ୍ତନ କରି ଦିଆଯିବ ଏବଂ ଏହି ଋଣ ଉପରେ ସୁଧର ହାର ୫ ପ୍ରତିଶତରେ ଅପରିବର୍ତ୍ତିତ ରହିବ । ଏଥିନିମନ୍ତେ ସରକାର ୨୨୭ କୋଟି ୩୮ ଲକ୍ଷ ଟଙ୍କାର ସୁଧ ଅନୁଦାନ ସମବାୟ ବ୍ୟାଙ୍କଗୁଡିକୁ ତିନି ବର୍ଷ ମଧ୍ୟରେ ଯୋଗାଇ ଦେବେ ।

- ମରୁଡ଼ି ଦ୍ୱାରା କ୍ଷତିଗ୍ରସ୍ତ ଅଞ୍ଚଳରେ ସ୍କୁଲ ଓ କଲେଜର ଛାତ୍ର-ଛାତ୍ରୀଙ୍କର ଟିଉସନ୍ ଫିସ୍ ଓ ପରୀକ୍ଷା ଫିସ୍ ଛାଡ଼ ।

- କ୍ଷତିଗ୍ରସ୍ତ ଅଞ୍ଚଳରେ ଓଡ଼ିଶା କୃଷି ଶିଳ୍ପ ନିଗମ ମାଧ୍ୟମରେ ୫୦ ପ୍ରତିଶତ ରିହାତିରେ ୪୦,୦୦୦ ପମ୍ପସେଟ୍ ଯୋଗାଇ ଦିଆଯିବ । ଏହି ରିହାତିର ସର୍ବୋଚ୍ଚ ସୀମା ୧୫,୦୦୦ ଟଙ୍କା ମଧ୍ୟରେ ସୀମିତ ରହିବ ଓ ଅଣ ଜଳସେଚିତ ଅଞ୍ଚଳକୁ ଏଥି ନିମନ୍ତେ ପ୍ରାଧାନ୍ୟ ଦିଆଯିବ । କୃଷିସେବା କେନ୍ଦ୍ରରୁ ମଧ୍ୟ ଚାଷୀମାନଙ୍କୁ ଭଡ଼ାରେ ପମ୍ପ ସେଟ୍ ଯୋଗାଇ ଦିଆଯିବ ।

- ଅଚଳ ହୋଇ ପଡିଥିବା ସମସ୍ତ ଉଠା ଜଳସେଚନ ପଏଣ୍ଟଗୁଡିକୁ ମରାମତି କରାଇ କାର୍ଯ୍ୟକ୍ଷମ କରାଯାଉଛି ଏବଂ ଶକ୍ତି ବିଭାଗ ଏହି ପଏଣ୍ଟଗୁଡିକରେ ତତ୍‌କ୍ଷଣାତ୍ ବିଦ୍ୟୁତ ସଂଯୋଗ କରୁଛନ୍ତି ।

- ରବି ଋତୁରେ ଚାଷ କରିବା ନିମନ୍ତେ ମରୁଡ଼ିଗ୍ରସ୍ତ ଅଞ୍ଚଳର ଚାଷୀମାନଙ୍କୁ ୪ ଲକ୍ଷ ଡାଲି ଜାତୀୟ ବିହନ ମିନି କିଟ୍ ଓ ୧ ଲକ୍ଷ ତୈଳବୀଜ ମିନି କିଟ୍ ଯୋଗାଇ ଦିଆଯିବ ।

- ୧୩,୦୦୦ ଅଗଭୀର ନଳକୂପରେ ବିଦ୍ୟୁତ ସଂଯୋଗ କରି ମରୁଡ଼ି ଦ୍ୱାରା କ୍ଷତିଗ୍ରସ୍ତ ହୋଇଥିବା ଅଞ୍ଚଳରେ ଜଳସେଚନର ବ୍ୟବସ୍ଥା କରାଯାଉଅଛି ।

- ମରୁଡ଼ିଗ୍ରସ୍ତ ଅଞ୍ଚଳରେ ପଞ୍ଚାୟତିରାଜ ବିଭାଗ ଦ୍ୱାରା ଜଳ ଅମଳ ପ୍ରକଳ୍ପ, ଜଳସେଚନ ପାଇଁ ବ୍ୟବହୃତ ନାଳଗୁଡିକର ପୁନରୁଦ୍ଧାର ପ୍ରଭୃତି କରିବା ନିମନ୍ତେ ମହାତ୍ମା ଗାନ୍ଧୀ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା ମାଧ୍ୟମରେ ଭାରତ ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ୧୫୦ ଦିନ ଉପରେ ଆହୁରି ଅଧିକ ୫୦ ଦିନର କାମ ରାଜ୍ୟ ସରକାରଙ୍କ ଦ୍ୱାରା ଯୋଗାଇ ଦିଆଯିବ । ଏହି ୨୦୦ ଦିନ ପାଇଁ ସେମାନଙ୍କୁ ଅତିରିକ୍ତ ୩୦ ପ୍ରତିଶତ ପାରିଶ୍ରମିକ ମରୁଡ଼ି ଭତ୍ତା ଭାବରେ ଯୋଗାଇ ଦିଆଯିବ । ଏହାଦ୍ୱାରା ହିତାଧିକାରୀମାନେ ପ୍ରାୟ ୩୦ ହଜାର ଟଙ୍କାରୁ ଅଧିକ ଅର୍ଥ ପାଇପାରିବେ ।

- ଦରିଦ୍ରତମ ଜନସାଧାରଣଙ୍କୁ ଚିହ୍ନଟ କରାଯାଇ ବୟସ୍କମାନଙ୍କୁ ଦୈନିକ ୧ କିଲୋଗ୍ରାମ୍ ଓ ପିଲାମାନଙ୍କୁ ୫୦୦ ଗ୍ରାମ୍‌ର ଖାଦ୍ୟ ୬୦ ଦିନ ପର୍ଯ୍ୟନ୍ତ ଯୋଗାଇ ଦିଆଯିବ ।

- ମରୁଡ଼ି ପରିସ୍ଥିତିର ମୁକାବିଲା କରିବା ପାଇଁ ଓ ଚାଷୀମାନଙ୍କର ସ୍ୱାର୍ଥରକ୍ଷା ନିମନ୍ତେ ସରକାର ୧୦୦୦ କୋଟି ଟଙ୍କାର ଆର୍ଥିକ ସହାୟତା ଘୋଷଣା କରିଛନ୍ତି ।

- ସ୍ୱଳ୍ପକାଳୀନ ଫସଲ ଋଣ ଭଳି ପରିବର୍ତ୍ତିତ ମଧ୍ୟମକାଳୀନ ଋଣ ଉପରେ ମଧ୍ୟ ୩ ପ୍ରତିଶତ ସୁଧ ରିହାତି ଚାଷୀଙ୍କୁ ଦେବା ପାଇଁ କେନ୍ଦ୍ର ସରକାରଙ୍କୁ ଅନୁରୋଧ ।

**ସବୁ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ସରକାର ଚାଷୀ ଭାଇଭଉଣୀମାନଙ୍କ ସହିତ ରହିଥିଲେ, ରହିଛନ୍ତି ଏବଂ ରହିଥିବେ । ଆସନ୍ତୁ, ଏକାଠି ମିଶି ସାହସର ସହିତ ଏହି ମରୁଡ଼ିର ମୁକାବିଲା କରିବା ।**

❖ ❖ ❖

# ମେକ୍ ଇନ୍ ଇଣ୍ଡିଆ ଓ ଓଡ଼ିଶାରେ ଦ୍ରୁତ ଶିଳ୍ପାୟନ

**ତାପସ କୁମାର ସାହା**

ଉତ୍କୃଷ୍ଟ କଳାର ରାଜ୍ୟ ଉତ୍କଳଭାବେ ଓଡ଼ିଶାର ଐତିହ୍ୟ ଓ ଇତିହାସ ସର୍ବଜନ ବିଦିତ । ଉତ୍କଳର କଳା, ସଂସ୍କୃତି, ଭାସ୍କର୍ଯ୍ୟ ଓ କୋଣାର୍କ ମନ୍ଦିର ସ୍ଥାପତ୍ୟ ଏବଂ କଳାକୃତି ପୃଥିବୀରେ ଅଦ୍ୱିତୀୟ ବୋଲି ଓଡ଼ିଶାବାସୀଙ୍କ ଗର୍ବ । ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟ ଆମର ଗର୍ବ ଓ ଗୌରବଗାଥାକୁ ଦ୍ୱିଗୁଣିତ କରେ । ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶ ଯେତେବେଳେ ଆଞ୍ଚଳିକ ଓ ଭୌଗୋଳିକ ପରିସୀମାରେ ସୀମାବଦ୍ଧ ହୋଇ ରହିଥିଲା, ସେତେବେଳେ ଓଡ଼ିଆ ସାଧବପୁଅମାନେ ନୌଯାତ୍ରାରେ ସୁଦୂର ବାଲି, ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଆଦି ଦେଶକୁ ବାଣିଜ୍ୟ କରିବା ଯିବା ନିଶ୍ଚିତରୂପେ ଆମ ଅତୀତର ଏକ ଗୌରବମୟ ପୃଷ୍ଠା ଅଟେ । ପୂର୍ବପୁରୁଷମାନେ ସାତ ସମୁଦ୍ର ତେର ନଈ ପାରହୋଇ ଓଡ଼ିଶାର ଦ୍ରବ୍ୟ ନେଇ ବିଦେଶରେ ବାଣିଜ୍ୟ କରିବା ଆଜିର ଯୁବପିଢ଼ିକୁ ଚକିତ କରୁଥିଲେ ହେଁ, ଇତିହାସ ଏହାର ସାକ୍ଷୀ । ବାଣିଜ୍ୟେ ବସତେ ଲକ୍ଷ୍ମୀ' ଏହି ଉକ୍ତିକୁ ସାକାର କରି କଳିଙ୍ଗର ସାଧବପୁଅମାନେ ନୌବାଣିଜ୍ୟ କରି ସେସମୟରେ କଳିଙ୍ଗକୁ ଏକ ସମୃଦ୍ଧ ଓ ଶକ୍ତିଶାଳୀ ରାଜ୍ୟରେ ପରିଣତ କରିଥିଲେ । ମାତ୍ର ପରିତାପର ବିଷୟ ଦିନେ ଉତ୍ତୁଙ୍ଗ ଶିଖରରେ ବିରାଜମାନ କରୁଥିବା କଳିଙ୍ଗବାସୀ ସମୟଚକ୍ରରେ ଶ୍ରୀହୀନ ହୋଇପଡିଲେ । କର୍ପୂର ଉଡିଯାଇଛି, କନାଖଣ୍ଡକ ପଡିରହିଛି । କୋଣାର୍କ ମନ୍ଦିର ଭଗ୍ନ ମୁଖଶାଳା ଓ କଳିଙ୍ଗର ଐଶ୍ୱର୍ଯ୍ୟମୟ ସାଧବପୁଅଙ୍କ ନୌବାଣିଜ୍ୟ ଯାତ୍ରା ଇତିହାସ ପୃଷ୍ଠାରେ ସୀମାବଦ୍ଧ ହୋଇ ରହିଯାଇଛି । ବାରମ୍ବାର ବିଦେଶୀ ଶାସନର କବଳିତ ଓଡ଼ିଶା, ଅତ୍ୟାଚାର, ଲୁଣ୍ଠନ ଓ ସର୍ବୋପରି ଇଂରେଜ ଶାସନର ପରାଧୀନତାର ଶୃଙ୍ଖଳାରେ ନିପିଡୀତ, ନିଷ୍ପେସିତ ଓ ଚକ୍ରାନ୍ତର ଶିକାର ହୋଇ କ୍ରମଶଃ ଶ୍ରୀହୀନ ହୋଇପଡିଲା । ତେବେ ଖାରବେଳ ଓ କପିଳେନ୍ଦ୍ରଦେବଙ୍କ ଦାୟାଦ ଓଡ଼ିଆ ଜାତିକୁ ବେଶୀଦିନ ଅବଦମିତ କରି ରଖାଯିବା ସମ୍ଭବ କି ? ସ୍ୱାଭିମାନୀ ଓଡ଼ିଆ ଆଜି ପୁନର୍ବାର ନିଜର ହୃତଗୌରବ ଫେରିପାଇବା ପାଇଁ ଅହରହ ଉଦ୍ୟମ କରୁଛି । ଓଡ଼ିଶାର ବହୁଳ ପ୍ରାକୃତିକ ସମ୍ପଦ ସମେତ ଉନ୍ନତ ମାନବ ସମ୍ବଳର ସୁବିନିଯୋଗ କରି ଓଡ଼ିଶା ପୁଣିଥରେ ଦ୍ରୁତ ପ୍ରଗତି ପଥରେ ପାଦ ଦେଇଛି । ନୂତନ ଶତାବ୍ଦୀର ଓଡ଼ିଶା ରାଜ୍ୟବାସୀଙ୍କ ନିମନ୍ତେ ବିପୁଳ ସମ୍ଭାବନାର ବାର୍ତ୍ତା ନେଇ ଆସିଛି । ସୁଦୀର୍ଘ ବେଳାଭୂମି, ଘଞ୍ଚବଣ ଜଙ୍ଗଲ, ବିପୁଳ ଜଳରାଶି ଓ ଖଣିଜ ସମ୍ପଦରେ ଭରପୂର ରତ୍ନଗର୍ଭା ଓଡ଼ିଶା କେବଳ ଓଡ଼ିଶାବାସୀ କାହିଁକି, ଦେଶ ବିଦେଶର ଉଦ୍ୟୋଗୀମାନଙ୍କୁ ଆକର୍ଷିତ କରିଛି । ଦେଶରେ ଗଚ୍ଛିତ ମୋଟ ଖଣିଜ ସମ୍ପଦ ଲୁହାପଥରର ୩୩ ପ୍ରତିଶତ, କ୍ରୋମାଇଟ ୯୮.୯ ପ୍ରତିଶତ, ନିକେଲ ୯୨.୫ ପ୍ରତିଶତ, ବକସାଇଟ୍ ୫୧ ପ୍ରତିଶତ ଏବଂ କୋଇଲାର ୩୩.୨ ପ୍ରତିଶତ ଓଡ଼ିଶାରେ ଗଚ୍ଛିତ ହୋଇ ରହିଥିବା ବେଳେ ପ୍ରାକୃତିକ ଜଳସମ୍ପଦ ପ୍ରଚୁର ପରିମାଣରେ ଉପଲବ୍ଧ । ଏପରିସ୍ଥଳେ ଓଡ଼ିଶା ପଛୁଆ ରାଜ୍ୟ ହୋଇ ରହିବା ଏକ ବିଡମ୍ବନା ମାତ୍ର । ଏହାକୁ ଦୂର କରି ଓଡ଼ିଶାକୁ ଏକ ଅଗ୍ରଣୀ ଓ ଶିଳ୍ପୋନ୍ନତ ରାଜ୍ୟରେ ପରିଣତ କରିବା ସମସ୍ତ ରାଜ୍ୟବାସୀଙ୍କ ନିମନ୍ତେ ଏକ ବଡ ଆହ୍ୱାନ ।

ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ ଏବଂ ଏହାର ପ୍ରମୁଖ ଭାଗ ଲୋକ କୃଷି ଉପରେ ନିର୍ଭର କରୁଥିଲେ ହେଁ, ବିଭିନ୍ନ ଅର୍ଥନୈତିକ ସର୍ଭେର ରିପୋର୍ଟ ଅନୁଯାୟୀ ରାଜ୍ୟର ମୋଟ ଘରୋଇ ଉତ୍ପାଦନରେ କୃଷିର ଭାଗ କ୍ରମଶଃ ହ୍ରାସ ପାଉଥିବା ବେଳେ ଶିଳ୍ପ ଓ ସେବା କ୍ଷେତ୍ରର ଯୋଗଦାନ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଛି । ଓଡ଼ିଶାର କ୍ରମବର୍ଦ୍ଧିଷ୍ଣୁ ଲୋକ ସଂଖ୍ୟାକୁ ଅର୍ଥନୈତିକ ଉନ୍ନତି ସହିତ ନିଯୁକ୍ତି ସୁବିଧା ନିମନ୍ତେ ବୃହତ ଶିଳ୍ପ ସମେତ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା ଏକାନ୍ତ ଆବଶ୍ୟକ ହୋଇପଡିଛି । ଓଡ଼ିଶାର ଦ୍ରୁତ ଶିଳ୍ପାୟନ ନିମନ୍ତେ ଓଡ଼ିଶାର ବଳିଷ୍ଠ ନେତୃତ୍ୱ ଯେପରି ପଦକ୍ଷେପ ନେଇଛନ୍ତି, ତାହା ଅନେକ ଶିଳ୍ପୋଦ୍ୟୋଗୀମାନଙ୍କୁ ଉତ୍ସାହିତ କରିଛି । ଭାରତର ମାନ୍ୟବର ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର

ମୋଦୀଙ୍କ 'ମେକ୍ ଇନ୍ ଇଣ୍ଡିଆ'ର ଆହ୍ୱାନରେ ବିଦେଶର ଶିଳ୍ପପତିମାନେ ଭାରତରେ ପୁଞ୍ଜି ନିବେଶ ନିମନ୍ତେ ଆଗ୍ରହ ପ୍ରକାଶ କରୁଥିବା ସ୍ଥଳେ ଓଡ଼ିଶାରେ ଦେଶ ଓ ବିଦେଶର ଶିଳ୍ପୋଦ୍ୟୋଗୀମାନେ ଯେପରି ଅଧିକରୁ ଅଧିକ ପୁଞ୍ଜି ନିବେଶ କରି ଉତ୍ପାଦନ କରିବେ ସେଥି ନିମନ୍ତେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ପରିଚାଳିତ ସରକାରଙ୍କ ଦ୍ୱାରା ଏକ ବିଧିବଦ୍ଧ ଯୋଜନା ପ୍ରଣୟନ କରାଯାଇଛି । ରାଜ୍ୟର ଅର୍ଥନୈତିକ ଓ ସାମାଜିକ ପରିବର୍ତ୍ତନ ଓ ଅଭିବୃଦ୍ଧି ନିମନ୍ତେ ଶିଳ୍ପର ବିକାଶକୁ ରାଜ୍ୟ ସରକାର ସର୍ବୋଚ୍ଚ ପ୍ରାଥମିକତା ଦେଇଛନ୍ତି । ରାଜ୍ୟର ବଳକା କାର୍ଯ୍ୟକ୍ଷମ ଯୁବକ ଯୁବତୀମାନଙ୍କୁ ନିଯୁକ୍ତି ସହିତ ଜୀବିକା ଯୋଗାଇଦେବା ଉଦ୍ଦେଶ୍ୟରେ ଶିଳ୍ପ ପ୍ରତିଷ୍ଠା ଅପରିହାର୍ଯ୍ୟ । ଏଥିନିମନ୍ତେ ରାଜ୍ୟରେ ଏକ ଅନୁକୂଳ ଶିଳ୍ପର ବାତାବରଣ ସୃଷ୍ଟି କରି ଶିଳ୍ପ ଏବଂ ଭିତ୍ତିଭୂମିର ବିକାଶରେ ଅଧିକରୁ ଅଧିକ ପୁଞ୍ଜି ନିବେଶ କରି ଆୟ, ନିଯୁକ୍ତି ଓ ଅର୍ଥନୈତିକ ଅଭିବୃଦ୍ଧି ସହିତ ରାଜ୍ୟର ଆଞ୍ଚଳିକ ବୈଷମ୍ୟ ହ୍ରାସ କରିବା ପାଇଁ ଘରୋଇ ଓ ବିଦେଶୀ ପୁଞ୍ଜି ନିବେଶକାରୀଙ୍କୁ ଆକର୍ଷିତ କରିବା ନିମନ୍ତେ ରାଜ୍ୟ ସରକାର ପ୍ରାଥମିକତା ଦେଇଛନ୍ତି । 'ମେକ୍ ଇନ୍ ଇଣ୍ଡିଆ' ସ୍ଲୋଗାନକୁ ଓଡ଼ିଶା ପରିପ୍ରେକ୍ଷୀରେ ସାକାର କରିବା ଲକ୍ଷ୍ୟ ନେଇ ଶିଳ୍ପନୀତି–୨୦୧୫ ଘୋଷଣା କରାଯାଇଛି, ଯାହା ଅନେକ ଅର୍ଥନୀତିଜ୍ଞ ଓ ଶିଳ୍ପୋଦ୍ୟୋଗୀମାନଙ୍କ ମତରେ ଏକ ଯୁଗାନ୍ତକାରୀ ପଦକ୍ଷେପ ।

ରାଜ୍ୟରେ ଦ୍ରୁତ ଶିଳ୍ପାୟନ ନିମନ୍ତେ ସାରା ବିଶ୍ୱର ନିବେଶକମାନଙ୍କ ନିମନ୍ତେ ଓଡ଼ିଶା ଯେପରି ପ୍ରଥମ ପସନ୍ଦ ହୋଇପାରିବ, ସେହି ପରିପ୍ରେକ୍ଷୀରେ ଶିଳ୍ପନୀତି–୨୦୧୫ ପ୍ରଣୟନ କରାଯାଇଛି । ଆଶା କରାଯାଉଛି ଏହା ଦ୍ୱାରା ଓଡ଼ିଶା ଖୁବଶୀଘ୍ର ଏକ ଶିଳ୍ପୋନ୍ନତ ରାଜ୍ୟରେ ପରିବର୍ତ୍ତିତ ହୋଇପାରିବ । ଏଥିନିମନ୍ତେ ଠିକଣା ଭାବରେ ଆଗ୍ରହୀ ପୁଞ୍ଜି ନିବେଶକମାନଙ୍କୁ ଆକର୍ଷିତ କରି ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧି ହାର ବଜାୟ ରଖାଯାଇ ପାରିବ । ଖଣିଜ ସମ୍ପଦରେ ଭରା ଓଡ଼ିଶାରେ ପାରମ୍ପରିକ ଖଣିଜ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ପୁଞ୍ଜି ନିବେଶକମାନେ ଆଗ୍ରହୀ ଥିବାବେଳେ, ଓଡ଼ିଶା ସରକାର ସାମଗ୍ରିକ ରୂପେ ଶିଳ୍ପର ବିକାଶ ନିମନ୍ତେ ଅନ୍ୟ କେତେକ କ୍ଷେତ୍ରରେ ପୁଞ୍ଜି ନିବେଶକୁ ଅଗ୍ରାଧିକାର କ୍ଷେତ୍ର ଭାବରେ ଚିହ୍ନଟ କରିଛନ୍ତି । ଏଗୁଡିକ ମଧ୍ୟରେ ସୂଚନା ପ୍ରଯୁକ୍ତି, IT Enabled Services, ଇଲେକ୍‌ଟ୍ରୋନିକସ ଡିଜାଇନ ଏବଂ ନିର୍ମାଣ, ବାୟୋଟେକ୍ନୋଲୋଜି, କୃଷି, ସାମୁଦ୍ରିକ ଓ ଖାଦ୍ୟ ପ୍ରକ୍ରିୟାକରଣ, ପର୍ଯ୍ୟଟନ, ବୟନଶିଳ୍ପ ଏବଂ ଆପାରେଲ ଓ ଅଟୋମୋଟିଭ ଶିଳ୍ପ ଆଦି କ୍ଷେତ୍ରରେ ଯେଉଁଥିରେ ନିଯୁକ୍ତି ସୃଷ୍ଟି ଏବଂ ରପ୍ତାନୀର ସୁଯୋଗ ଥିବ, ସେହିସବୁ କ୍ଷେତ୍ରକୁ ଓଡ଼ିଶା ସରକାର ଅଗ୍ରାଧିକାର କ୍ଷେତ୍ର ଭାବରେ ତାଲିକାଭୁକ୍ତ କରିଛନ୍ତି । ଏଥିସହିତ ଯେଉଁସବୁ କ୍ଷେତ୍ରରେ ସିଧାସଳଖ ନିଯୁକ୍ତି ସୁଯୋଗ ସୃଷ୍ଟି ହେଉଥିବ, ସେହିସବୁ କ୍ଷେତ୍ରକୁ ପ୍ରୋତ୍ସାହନ ଯୋଗାଇ ଦିଆଯାଇଛି । ଅଣୁ, କ୍ଷୁଦ୍ର ଏବଂ ମଧ୍ୟମ ଉଦ୍ୟୋଗ ସହିତ ବୃହତ ଶିଳ୍ପର ସଂଯୋଗକୁ ପ୍ରୋତ୍ସାହିତ କରିବା ସହିତ ଆନୁଷଙ୍ଗିକ ଶିଳ୍ପ ଏବଂ ଡାଉନଷ୍ଟ୍ରିମ୍ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ମଧ୍ୟ ଆବଶ୍ୟକ ପ୍ରୋତ୍ସାହନ ଯୋଗାଇ ଦିଆଯାଇଛି । ସାଧାରଣତଃ ଏହିସବୁ କ୍ଷେତ୍ରରେ ବହୁ ପରିମାଣର ସିଧାସଳଖ ନିଯୁକ୍ତିର ସୁଯୋଗ ଥିବାରୁ ରାଜ୍ୟ ସରକାର ଏହିସବୁ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ପ୍ରାଥମିକତା ପ୍ରଦାନ କରିଛନ୍ତି । ରାଜ୍ୟରେ ଉପଲବ୍ଧ ପ୍ରାକୃତିକ ସଂପଦର ସୁବିନିଯୋଗ କରି ଶିଳ୍ପର ବିକାଶ ଦିଗରେ ରାଜ୍ୟ ସରକାର ବଦ୍ଧପରିକର। ସୁଦୀର୍ଘ ବେଳାଭୂମି, ବୃହତ ବନ୍ଦର, ମଜବୁତ ଭିତ୍ତିଭୂମି, ଔଦଗିକ ଅର୍ଥନୀତି ଉତ୍ତମ ପ୍ରଶାସନ ଆଦି ଶିଳ୍ପ ପ୍ରତିଷ୍ଠାରେ ସହାୟକ ହେବ । ଶିଳ୍ପର ଉନ୍ନତି ନିମନ୍ତେ ସରକାରୀ ଓ ବେସରକାରୀ ସ୍ତରର ସହାୟତାରେ ରାଜ୍ୟରେ ବିଶ୍ୱସ୍ତରୀୟ ଭିତ୍ତିଭୂମି ପ୍ରତିଷ୍ଠା କରାଯିବ । ଯୋଗାଯୋଗର ସୁବିଧା, ଉନ୍ନତମାନର ରାଜପଥ, ରେଳ ସଂଯୋଗ, ବିମାନବନ୍ଦର, ନୌବନ୍ଦର ସମେତ ବିଦ୍ୟୁତ ଶକ୍ତି ଉତ୍ପାଦନ, ଟେଲି ଯୋଗାଯୋଗ ବ୍ୟବସ୍ଥା ଆଦି ଯେତେ ଉନ୍ନତ ହେବ, ବିଦେଶୀ ପୁଞ୍ଜି ନିବେଶକମାନେ ସେତେ ପରିମାଣର ଆଗ୍ରହ ପ୍ରକାଶ କରିବେ । ଶିଳ୍ପର ବିକାଶ ନିମନ୍ତେ ରାଜ୍ୟର ଘରୋଇ ଶିଳ୍ପୋଦ୍ୟୋଗୀମାନଙ୍କର ବିକାଶ କରାଯିବ । ଏଥିସହିତ ଉପଯୁକ୍ତ ମାନବ ସମ୍ବଳର ବିକାଶ ସହିତ ସର୍ବାଧିକ ନିଯୁକ୍ତି ସୃଷ୍ଟି କରିବା ସହିତ ଶିଳ୍ପର ଆବଶ୍ୟକତା ଅନୁଯାୟୀ ଯୁବକ ଯୁବତୀମାନଙ୍କର ଦକ୍ଷତା ବୃଦ୍ଧି କରି ନିଯୁକ୍ତି ସୁଯୋଗ ସୃଷ୍ଟି କରାଯିବ । ଶିଳ୍ପ ନୀତିରେ ସିଧାସଳଖ ନିଯୁକ୍ତି ପ୍ରଦାନ କରୁଥିବା କ୍ଷେତ୍ରକୁ ପ୍ରୋତ୍ସାହିତ କରାଯିବା ସହିତ ପରିବେଶ ଅନୁକୂଳ ଏବଂ କମ ପ୍ରଦୂଷଣ କରୁଥିବା ଶିଳ୍ପ ପ୍ରତିଷ୍ଠା ନିମନ୍ତେ ଅଗ୍ରାଧିକାର ଦିଆଯିବ । ଘରୋଇ ପୁଞ୍ଜି ନିବେଶ ନିମନ୍ତେ ରାଜ୍ୟରେ ଉପଯୁକ୍ତ ବାତାବରଣ ସୃଷ୍ଟି କରିବା ସହିତ ଶିଳ୍ପୋଦ୍ୟୋଗୀମାନଙ୍କ ସୁବିଧାରେ ବ୍ୟବସାୟ ପ୍ରତିଷ୍ଠାନ ସ୍ଥାପନ ନିମନ୍ତେ ସିଙ୍ଗଲଓ୍ୱିନଡୋ ସ୍ଥାପନ ସହିତ ସହାୟତା କେନ୍ଦ୍ର ସ୍ଥାପନ କରାଯାଇଛି । ଓଡ଼ିଶାର ଦ୍ରୁତ ଶିଳ୍ପାୟନ ନିମନ୍ତେ ଓ ଶିଳ୍ପୋଦ୍ୟୋଗୀମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ କରିବା ନିମନ୍ତେ 'ଟିମ୍ ଓଡ଼ିଶା' ଅହରଣ ଉଦ୍ୟମ କରୁଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ଟିମ୍ ଓଡ଼ିଶାର ନେତୃତ୍ୱ ନେଇଛନ୍ତି । ଇପିକଲ ଏଥିନିମନ୍ତେ ବୈଷୟିକ ସଚିବାଳୟ ଭାବରେ ସମସ୍ତ କାର୍ଯ୍ୟ କରୁଅଛି । ଏଥିସହିତ ଜିଲ୍ଲା ଶିଳ୍ପ କେନ୍ଦ୍ର ଓ ଆଞ୍ଚଳିକ ଶିଳ୍ପ କେନ୍ଦ୍ର ସ୍ଥାପନ କରାଯାଇ ଉଦ୍ୟୋଗୀମାନଙ୍କୁ ସମସ୍ତ ପ୍ରକାର ପରାମର୍ଶ ଓ ସହଯୋଗ ଯୋଗାଇ ଦିଆଯାଇଛି । ନୂଆଦିଲ୍ଲୀସ୍ଥିତ

ଓଡ଼ିଶା ସରକାରଙ୍କ ମୁଖ୍ୟ ଆବାସିକ କମିଶନରଙ୍କ କାର୍ଯ୍ୟାଳୟରେ ଓଡ଼ିଶା ଇନଭେଷ୍ଟମେଣ୍ଟ ଆଣ୍ଡ ଏକ୍ସପୋର୍ଟ ପ୍ରମୋଶନ କାର୍ଯ୍ୟାଳୟକୁ ଅଧିକ କ୍ରିୟାଶୀଳ କରାଯାଇଛି । ଯେପରି ଦେଶ ବିଦେଶର ଦୂତାବାସ, ଶିଳ୍ପ ଓ ବାଣିଜ୍ୟିକ ସଂସ୍ଥା ସହିତ ଉତ୍ତମ ଯୋଗସୂତ୍ର ରକ୍ଷା କରି ଓଡ଼ିଶାରେ ପୁଞ୍ଜି ନିବେଶ ନିମନ୍ତେ ଶିଳ୍ପୋଦ୍ୟୋଗୀମାନଙ୍କୁ ଆକୃଷ୍ଟ କରିପାରିବ ।

ଶିଳ୍ପ ପ୍ରତିଷ୍ଠା ନିମନ୍ତେ ଆବଶ୍ୟକ ଜମି, ପରିବେଶ ମଞ୍ଜୁରୀ, ବିଦ୍ୟୁତ ଓ ଜଳ ସମେତ ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧା ସୁଯୋଗ ସହଜରେ ଉପଲବ୍ଧ ନିମନ୍ତେ ସିଙ୍ଗଲ ୱିନଡୋ ଏବଂ କମନ ଆପ୍ଲିକେସନ ଫର୍ମର ପ୍ରଚଳନ କରାଯାଇଛି । ରାଜ୍ୟସ୍ତରରେ ଇପିକଲ ନୋଡାଲ ଏଜେନ୍ସି ଭାବରେ କାର୍ଯ୍ୟ କରୁଥିବା ବେଳେ ଶିଳ୍ପପତିମାନଙ୍କ ନିମନ୍ତେ ଶିଳ୍ପ ସମ୍ବନ୍ଧୀୟ ଏକ ବିସ୍ତୃତ ଡାଟା ବ୍ୟାଙ୍କ ସୃଷ୍ଟି କରାଯାଇଛି । ସମୟାପେକ୍ଷ ଲାଇସେନ୍ସ ନୀତି ଓ ନିୟନ୍ତ୍ରଣ ବ୍ୟବସ୍ଥା ବ୍ୟବସାୟ ଓ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ଯେପରି ଅଧିକ ଉପଯୋଗୀ ହୋଇପାରିବ ସେଥି ନିମନ୍ତେ ଏହାର ପୁନଃ ସମୀକ୍ଷା କରାଯାଇଛି । ଶିଳ୍ପୋଦ୍ୟୋଗୀମାନଙ୍କୁ ସୁବିଧାରେ ଆବଶ୍ୟକ ଜମି ସରକାରୀ ସଂସ୍ଥା ଇଡ୍‌କୋ ମାଧ୍ୟମରେ ଯୋଗାଇ ଦିଆଯାଉଥିବା ବେଳେ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଶିଳ୍ପର ବିକାଶ ନିମନ୍ତେ ସ୍ୱତନ୍ତ୍ର ଧ୍ୟାନ ଦିଆଯାଇଛି । ରାଜ୍ୟରେ ଶିଳ୍ପ ପ୍ରତିଷ୍ଠା କରୁଥିବା ଉଦ୍ୟୋଗୀମାନଙ୍କୁ ରିହାତି ମୂଲ୍ୟରେ ଆବଶ୍ୟକ ଜମି ଯୋଗାଇ ନେବା ସହିତ ଠିକ୍ ସମୟରେ ଋଣ ପରିଶୋଧ କରିଲେ ସୁଧ ଉପରେ ସବସିଡି, ଷ୍ଟାମ୍ପ ଡ୍ୟୁଟି, ବିଦ୍ୟୁତ ଦେୟରେ ସବସିଡି ପ୍ରଦାନ କରାଯାଇଛି । ଏଥିସହିତ ଭାବ ଏବଂ ପ୍ରବେଶ କରିବାରେ ରିହାତି ନିଯୁକ୍ତି, ପେଟେଣ୍ଟ ରେଜିଷ୍ଟ୍ରିକରଣ, ବୈଷୟିକ ଜ୍ଞାନ କୌଶଳ ଆଦିରେ ପ୍ରୋତ୍ସାହନ ଦିଆଯିବା ସଙ୍ଗେ ସଙ୍ଗେ ଉତ୍ପାଦିତ ଦ୍ରବ୍ୟର ବିକ୍ରିବଟା ଉପରେ ମଧ୍ୟ ରିହାତି ପ୍ରଦାନ କରାଯିବାର ବ୍ୟବସ୍ଥା କରାଯାଇଛି । ଏଥି ସହିତ ରପ୍ତାନୀ ବୃଦ୍ଧି ନିମନ୍ତେ ଶିଳ୍ପ ପ୍ରତିଷ୍ଠା, ସ୍ୱତନ୍ତ୍ର ଅର୍ଥନୈତିକ ଯୋନ୍ ଓ ଶିଳ୍ପପାର୍କ ପ୍ରତିଷ୍ଠା କରି ଅଧିକରୁ ଅଧିକ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇଛି । ଖୋର୍ଦ୍ଧାଠାରେ ଫୁଡପାର୍କ ଓ ରାୟଗଡାଠାରେ ମେଗାଫୁଡ ପାର୍କ ଖୋର୍ଦ୍ଧାର ଡେରାସଠାରେ ମେଗା ସି ଫୁଡ୍ ପାର୍କ, ଅନୁଗୋଳଠାରେ ଆଲୁମିନିୟମ ପାର୍କ ଏବଂ ପାରାଦୀପଠାରେ ପ୍ଲାଷ୍ଟିକ୍ ପାର୍କ ପ୍ରତିଷ୍ଠା କରାଯାଇ ଶିଳ୍ପୋଦ୍ୟୋଗୀମାନଙ୍କୁ ଓଡ଼ିଶାରେ ପୁଞ୍ଜି ନିବେଶ ବୃଦ୍ଧି କରାଯିବାର ଲକ୍ଷ୍ୟ ରଖାଯାଇଛି । ଏଥି ସହିତ ଲୌହ ଓ ଇସ୍ପାତ, ଆଲୁମିନିୟମ, ସିମେଣ୍ଟ ଏବଂ ଶକ୍ତି ଆଦି କ୍ଷେତ୍ରରେ ସରକାରଙ୍କ ପକ୍ଷରୁ ବିଭିନ୍ନ ଶିଳ୍ପୋଦ୍ୟୋଗୀମାନଙ୍କ ସହିତ ୯୩୪ଟି ବୁଝାମଣା ପତ୍ର ସ୍ୱାକ୍ଷର କରାଯାଇଛି । ଏଥି ମଧ୍ୟରୁ ଲୌହ ଓ ଇସ୍ପାତ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ୪୯ଟି ବୁଝାମଣା ପତ୍ର ଅନ୍ତର୍ଭୁକ୍ତ । ଏଥିରେ ପ୍ରାୟ ୨,୩୦,୪୨୨ କୋଟି ଟଙ୍କା ପୁଞ୍ଜି ନିବେଶ କରାଯାଇ ୮୩.୬୬ ନିୟୁତ ଟନ ଲୌହ ଓ ଇସ୍ପାତ ଉତ୍ପାଦନର ଲକ୍ଷ୍ୟ ରଖାଯାଇଛି । ୩୦ଟି ପ୍ରକଳ୍ପରେ ଆଂଶିକ ଉତ୍ପାଦନ ଆରମ୍ଭ ହୋଇଛି । ଏଥିମଧ୍ୟରେ ୧୨.୬୬ ମିଲିୟନ୍ ଇସ୍ପାତ, ୧୧-୪୫ ମିଲିୟନ ଟନ ସ୍ପଞ୍ଜ ଆଇନ ଏବଂ ୪.୨୩ ମିଲିୟନ ଟ୍ରନ ଅନ୍ୟାନ୍ୟ ଉତ୍ପାଦ ଅନ୍ତର୍ଭୁକ୍ତ । ଜଗତସିଂହପୁର ଓ କେନ୍ଦ୍ରାପଡା ଜିଲ୍ଲାର ୨୮୪ବର୍ଗ କିଲୋମିଟର ପରିମିତ ଅଞ୍ଚଳରେ ପେଟ୍ରୋଲିୟମ, କେମିକାଲସ୍ ଆଣ୍ଡ ପେଟ୍ରୋକେମିକାଲ ଇନଭେଷ୍ଟମେଣ୍ଟ ରିଜିୟନ ପ୍ରତିଷ୍ଠା ହାର ଓଡ଼ିଶାରେ ବିପୁଳ ପୁଞ୍ଜି ନିବେଶ ଦ୍ୱାରା ପେଟ୍ରୋଲିୟମ ଜାତ ଶିଳ୍ପରେ ବୈପ୍ଳବିକ ପରିବର୍ତ୍ତନ ଆଣିହେବ । ଏଥିସହିତ ନୂତନ ଶିଳ୍ପନୀତି ପ୍ରଣୟନ ଫଳରେ ଆଗାମୀ ୪ବର୍ଷ ମଧ୍ୟରେ ରାଜ୍ୟରେ ଅଧିକ ୧,୭୩,୦୦୦ କୋଟି ଟଙ୍କାର ପୁଞ୍ଜି ନିବେଶ ହୋଇ ସିଧାସଳଖ ୩ଲକ୍ଷ ଲୋକଙ୍କୁ ନିଯୁକ୍ତି ମିଳିବ ବୋଲି ଅନୁମାନ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଚଳିତବର୍ଷ ନଭେମ୍ବର ୧୪ ତାରିଖ ଠାରୁ ନଭେମ୍ବର ୧୪ ତାରିଖଠାରୁ ନଭେମ୍ବର ୨୭ ତାରିଖ ପର୍ଯ୍ୟନ୍ତ ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟମେଳା ଅନୁଷ୍ଠିତ ହେଉଛି ଯାହାର ବିଷୟ ବସ୍ତୁ 'ମେକ୍ ଇନ୍ ଇଣ୍ଡିଆ' ରଖାଯାଇଛି । ପ୍ରତିବର୍ଷ ପରି ଚଳିତବର୍ଷ ଓଡ଼ିଶା ସରକାର ବାଣିଜ୍ୟମେଳାରେ ଭାଗନେବା ସହିତ ଓଡ଼ିଶା ମଣ୍ଡପକୁ ଆକର୍ଷଣୀୟ ଢଙ୍ଗରେ ପ୍ରସ୍ତୁତ କରିବା ନିମନ୍ତେ ପ୍ରୟାସ କରାଯାଇଛି, ଯେପରି ବାଣିଜ୍ୟ ମେଳାକୁ ଆସୁଥିବା ଦର୍ଶକ ଓ ଶିଳ୍ପୋଦ୍ୟୋଗୀମାନଙ୍କୁ ଅଧିକ ସଂଖ୍ୟାରେ ଓଡ଼ିଶା ମଣ୍ଡପ ବୁଲି ଦେଖିବା ନିମନ୍ତେ ଆକର୍ଷିତ କରାଯାଇପାରିବ । ବାଣିଜ୍ୟ ମେଳାର ବିଷୟବସ୍ତୁ ଅନୁସାରେ ଓଡ଼ିଶା ମଣ୍ଡପରେ 'ଟିମ୍ ଓଡ଼ିଶା' ଅଗ୍ରଭାଗରେ ରହି ଓଡ଼ିଶାରେ ଶିଳ୍ପାୟନର ଅଗ୍ରଗତି ଓ ସରକାରଙ୍କ ପକ୍ଷରୁ ଉଦ୍ୟୋଗୀମାନଙ୍କୁ ଦିଆଯାଉଥିବା ସମସ୍ତ ପ୍ରକାର ସୁଯୋଗ ଓ ସୁବିଧାର ଏକ ସୁନ୍ଦର ପ୍ରତିକୃତି ତୋଳି ଧରିବାର ପ୍ରଚେଷ୍ଟା କରାଯାଇଛି । ଏଥିସହିତ ପ୍ରମୁଖ ଶିଳ୍ପ ସଂସ୍ଥା ନାଲ୍‌କୋ ଏବଂ ଟାଟାଷ୍ଟିଲ୍ ଓ ଶକ୍ତିବିଭାଗ ଓଡ଼ିଶାରେ ଶିଳ୍ପାୟନରେ ପ୍ରମୁଖ ଭାଗିଦାରିତା ସମ୍ପର୍କରେ ଅବତାରଣା କରାଯାଇଥିବା ବେଳେ ଓଡ଼ିଶାର ଅର୍ଥନୈତିକ ଉନ୍ନତି ସହିତ ସାମଗ୍ରିକ ବିକାଶ ସମ୍ପର୍କରେ କୃଷି, ପଶୁ ସମ୍ପଦ ବିକାଶ, ପର୍ଯ୍ୟଟନ ବିଭାଗ ସମେତ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ଏକ ସ୍ପଷ୍ଟ ଚିତ୍ର ଦର୍ଶକଙ୍କ ସମ୍ମୁଖରେ ପ୍ରସ୍ତୁତ କରାଯାଇଛି ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଭୁବନେଶ୍ୱର

# ଶ୍ରୀକ୍ଷେତ୍ରରେ ମହାକାର୍ତ୍ତିକ ପାନ ଗୁଆ ତୋର : ମାସକ ଧର୍ମ ମୋର

**ଶ୍ୟାମ ପ୍ରକାଶ ସେନାପତି**

ଦ୍ୱାଦଶ ମାସ ମଧ୍ୟରେ କାର୍ତ୍ତିକ ମାସ ହିନ୍ଦୁଧର୍ମ ଧାରାରେ ଅତ୍ୟନ୍ତ ଶ୍ରେଷ୍ଠ ତଥା ଧର୍ମମାସ ନାମରେ ଖ୍ୟାତ । ପୁରାଣ ମତରେ, କାର୍ତ୍ତିକ ପରି ମାସ, ସତ୍ୟ ପରି ଯୁଗ, ବେଦ ପରି ଶାସ୍ତ୍ର, ଶ୍ରୀକ୍ଷେତ୍ର ପରି ତୀର୍ଥ ଓ ଗଙ୍ଗା ପରି ନଦୀ ଦୁର୍ଲ୍ଲଭ । ବେଦଠାରୁ ଆରମ୍ଭ କରି ସମସ୍ତ ଗ୍ରନ୍ଥରେ ପବିତ୍ର କାର୍ତ୍ତିକ ମାସ ମାହାତ୍ମ୍ୟର ଭୂରିଭୂରି ବ୍ୟାଖ୍ୟାନ କରାଯାଇଛି । ଧୂପଦୀପରେ ମହକିଉଠେ ପୂଜାସ୍ଥଳ । ସଂକୀର୍ତ୍ତନରେ ମୁଖରିତ ହୋଇଯାଏ ବଡ଼ଦାଣ୍ଡ । ଧର୍ମମାସ ରୂପେ



ଅଭିହିତ ମହାକାର୍ତ୍ତିକ ମାସରେ ଶ୍ରୀକ୍ଷେତ୍ରରେ ହବିଷ୍ୟ ଓ ମାସସାରା ମହାପ୍ରଭୁଙ୍କୁ ଦର୍ଶନ କରି ପୁଣ୍ୟ ଏବଂ ମୋକ୍ଷ ଅର୍ଜନ କରିବା ହବିଷ୍ୟାଳିମାନଙ୍କର ଏକମାତ୍ର ଲକ୍ଷ୍ୟ । 'ପଦ୍ମପୁରାଣ'ର ଉତ୍ତରଖଣ୍ଡର ବର୍ଣ୍ଣନା ଅନୁସାରେ କାର୍ତ୍ତିକ ମାସ ହିଁ ଭଗବଦ୍ ଆରାଧନା ଓ ଉପାସନା ଦୃଷ୍ଟିରୁ ସର୍ବଶ୍ରେଷ୍ଠ ମାସ ବୋଲି ପ୍ରତିପାଦନ କରାଯାଇଛି । କାୟ ମନୋବାକ୍ୟରେ ଶୁଦ୍ଧ ରହି ବ୍ରତ ଆଚରଣ ପୂର୍ବକ ଯେଉଁ ମାସରେ ଉପାସନା କରାଯାଏ ତାହା ହେଉଛି କାର୍ତ୍ତିକ ମାସ । ଏହି ମାସ ପବିତ୍ର ମଧ୍ୟରେ ପରମ ପବିତ୍ର । ତେଣୁ 'ବିଷ୍ଣୁ ଧର୍ମୋତ୍ତର ପୁରାଣ'ରେ ଉଲ୍ଲେଖ ଅଛି ଯେ, ପବିତ୍ର କାର୍ତ୍ତିକ ମାସରେ ବ୍ରତ ପାଳନ କଲେ ମହାଫଳ ହୁଏ । କୁମାର ପୂର୍ଣ୍ଣିମା ପର ପହିଲି କାର୍ତ୍ତିକଠାରୁ କାର୍ତ୍ତିକ ପୂର୍ଣ୍ଣମୀ ପଞ୍ଚକ ଶେଷ ପର୍ଯ୍ୟନ୍ତ ହବିଷ୍ୟାଳିଙ୍କ ଯାତ୍ରା । କାର୍ତ୍ତିକ ବ୍ରତ ପାଳନ କେବଳ ପୁରୀରେ ନୁହେଁ, ହିନ୍ଦୁ ଧର୍ମାବଲମ୍ବୀ ଉତ୍କଳୀୟ ପରମ୍ପରା ଭାବରେ ଓଡ଼ିଶାର ପୁରପଲ୍ଲୀରେ ସଧବା ଓ ବିଧବାମାନେ ଏହି ବ୍ରତ ପାଳନ କରି ଆସୁଛନ୍ତି । ବିଶେଷତଃ ଏଥିରେ ବୃଦ୍ଧ ଓ ବୃଦ୍ଧାମାନେ ହବିଷ କରିଥାନ୍ତି । ଗାଁ ଗହଳରେ କାର୍ତ୍ତିକ ବ୍ରତ ପାଳନ ହେଉଥିବାବେଳେ ବହୁ ବ୍ୟକ୍ତି ଶ୍ରୀକ୍ଷେତ୍ର ପୁରୀ ଓ ଆଉ କେହି କେହି ବୃନ୍ଦାବନକୁ ହବିଷ କରିବାକୁ ଯାଆନ୍ତି । ପୁରାଣ ଅନୁଯାୟୀ ଚାରିଧାମ ମଧ୍ୟରୁ ଯେକୌଣସି ଧାମରେ କାର୍ତ୍ତିକ ବ୍ରତ ପାଳନ କରିବା ସହିତ ଠାକୁର ଦର୍ଶନ ଓ ପୁରାଣ ପଠନର ବିଧି ରହିଛି । ଏହି ମାସରେ କେହିକେହି ମଧ୍ୟ ଚାରିଧାମକୁ ଯାତ୍ରା କରିଥାଆନ୍ତି । ଏ ମାସରେ ଦୀପାବଳି ପାଳନ କରାଯାଏ । ଭଗବାନ ଶ୍ରୀବିଷ୍ଣୁଙ୍କର ଆଦ୍ୟ ଅବତାର 'ମତ୍ସ୍ୟ ଅବତାର' ଏହି ମାସରେ ହୋଇଥିଲା । ପୁଣି ଶ୍ରୀ କାର୍ତ୍ତିକେୟଙ୍କର ଏହି ମାସରେ ଜନ୍ମ ହୋଇଥିଲା ବେଳେ ମା' ବୃନ୍ଦାବତୀ ମଧ୍ୟ ଏହି ମାସରେ ତୁଳସୀ ରୂପେ ପ୍ରକଟିତା ହୋଇଥିଲେ । ଏଥି ସହିତ ଏହି ମାସରେ ରାଧା ଓ ଶ୍ରୀକୃଷ୍ଣଙ୍କର ମହାରାସଲୀଳାର ମହାପର୍ବ ଅନୁଷ୍ଠିତ ହୋଇଥିଲା, ଯେଉଁଥିରେ ଭଗବାନ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କର ପୂଜାର୍ଚ୍ଚନା କରିଥିଲେ । ଏହି ମାସର ଅଁଳା ନବମୀ ଦିନ ରାଧା ପାଦ ଦର୍ଶନ ପାଇଁ ହବିଷ୍ୟାଳିମାନେ ସାକ୍ଷୀଗୋପାଳ ଯାତ୍ରା କରିଥାନ୍ତି । ଶ୍ରୀମନ୍ଦିରରେ ମଧ୍ୟ ସାକ୍ଷୀଗୋପୀନାଥ ମନ୍ଦିରରେ ଦର୍ଶନାର୍ଥୀଙ୍କ

ଭିଡ଼ ଜମିଥାଏ । ଏହି ମାସରେ 'ରାଧା ଦାମୋଦର'ଙ୍କ ପୂଜା କରାଯାଏ । 'ନାରଦ ପୁରାଣ'ରେ ଏହି ମାସଟିକୁ ଦାମୋଦର ପ୍ରିୟ ବୋଲି କୁହାଯାଇଛି। ଦେବୀ ଲକ୍ଷ୍ମୀ ମଧ୍ୟ ଏହି କାର୍ତ୍ତିକ ବ୍ରତ ତଥା ରାଧାଦାମୋଦର ପୂଜା କରିଥିବାର କେତେକ ଗ୍ରନ୍ଥରେ ଉଲ୍ଲେଖ ରହିଅଛି । ଏହି ପୂଜାକୁ କେହିକେହି ରାଇଦାମୋଦର ପୂଜା ବୋଲି କହିଥାନ୍ତି । ଏହି କାର୍ତ୍ତିକ ମାସର ଧାର୍ମିକ ଗୁରୁତ୍ୱ ସଂପର୍କରେ ଏତିକି କୁହାଯାଇପାରେ ଯେ, ପ୍ରଭୁ ଦାମୋଦର ହେଉଛନ୍ତି ଏହି ମାସର ଆରାଧ୍ୟ ଦେବତା । ବିଷ୍ଣୁଙ୍କ ବାରଟି ନାମ ମଧ୍ୟରୁ ଦାମୋଦର ନାମ ଆସିଥାଏ ସପ୍ତମ କ୍ରମାଙ୍କରେ । କାର୍ତ୍ତିକ ହେଉଛି ସପ୍ତମ ମାସ । ଦାମ ଶବ୍ଦ ହେଉଛି ବିଶ୍ୱ । ସମଗ୍ର ବିଶ୍ୱ ଯାହାଙ୍କ ଉଦରରେ ସେ ହିଁ ଦାମୋଦର ।

### ଶ୍ରୀକ୍ଷେତ୍ରରେ କାର୍ତ୍ତିକ ଓ ବିଧି

ଧର୍ମ ମାସ କାର୍ତ୍ତିକ । ଅତୀତର ଗୌରବକୁ ସ୍ମରଣ କରିବାର ମାସ କାର୍ତ୍ତିକ । ଏହି ମହାକାର୍ତ୍ତିକରେ ଆହୁରି ମହିମାମଣ୍ଡିତ ହୋଇଯାଏ ତୀର୍ଥରାଜ ଶ୍ରୀକ୍ଷେତ୍ର । ମହାପୁଣ୍ୟ ଦେଉଥିବା ଏହି ମାସରେ ବ୍ରତଧାରୀ ହବିଷ୍ୟାଳିମାନେ ପ୍ରଥମ ଦିନ ସଙ୍କଳ୍ପ କରି ବ୍ରତ ଆରମ୍ଭ କରନ୍ତି । ପ୍ରତିଦିନ ପ୍ରତ୍ୟୁଷରେ ତୀର୍ଥ ପୁଷ୍କରିଣୀ (ଶ୍ୱେତଗଙ୍ଗା, ଇନ୍ଦ୍ରଦ୍ୟୁମ୍ନ, ନରେନ୍ଦ୍ର, ମାର୍କଣ୍ଡ) ଅଥବା ମହୋଦଧିରେ ସ୍ନାନ ସାରି ସେଠାରେ ବାଲୁକାପୂଜା କରି ବସାକୁ ଫେରନ୍ତି । ତା'ପରେ ଶ୍ରୀମନ୍ଦିରରେ ମଙ୍ଗଳଆଳତି ଦର୍ଶନ ଓ ବେଢ଼ା ପରିକ୍ରମା କରି ସ୍ୱ ସ୍ୱ ବସାକୁ ପ୍ରତ୍ୟାବର୍ତ୍ତନ କଲାପରେ ଆରମ୍ଭ ହୁଏ ଚଉରାପୂଜା । ତୁଳସୀଚଉରା ମୂଳରେ ରଙ୍ଗର ମୁରୁଜ ପକାଇ କାର୍ତ୍ତିକର ପ୍ରଥମ ୨୫ଦିନ ଏମାନେ ରାଧା ଦାମୋଦର ପୂଜା ଏବଂ ଶେଷ ପାଞ୍ଚଦିନ ଲକ୍ଷ୍ମୀନାରାୟଣ ପୂଜା କରନ୍ତି । ଚଉରା ମୂଳେ ବ୍ରତଚାରିଣୀମାନେ ମିଳିତ ହୋଇ ରାଧା ଦାମୋଦର ଗୀତ ଗାନ କରନ୍ତି । ଏଥିରେ ରାଧାକୃଷ୍ଣଙ୍କୁ ଦୋଳିରେ ଝୁଲାଇବା ଓ ଦଧିମନ୍ଥନ କରିବା ଆଦି ବେଶ୍ ଆକର୍ଷଣୀୟ । ଏହି ପୂଜା ପରେ ଶ୍ରୀମନ୍ଦିରରେ ହେଉ ଅବା ସେମାନେ ଯେଉଁଠାରେ ଥାଆନ୍ତି ସେଠାରେ 'କାର୍ତ୍ତିକ ମାହାତ୍ମ୍ୟ' ପୁରାଣ ଶୁଣନ୍ତି । ଦିନକରେ ଥରେ ମାତ୍ର ହବିଷ୍ୟାନ୍ନ ଅବା ଅବଢ଼ା ସେବନ କରି ପୁଣି ସଂଧ୍ୟାବେଳେ ସଂଧ୍ୟା ଆଳତି ଦର୍ଶନ ଲାଗି ଶ୍ରୀମନ୍ଦିରରେ ମେଳ ହୁଅନ୍ତି । ଏମାନେ ମନ୍ଦିର ମନ୍ଦିର ବୁଲି ଦୀପଜାଳି, ପୁରାଣ ଶୁଣି ଖୁସିରେ ସମୟ କାଟନ୍ତି । କାର୍ତ୍ତିକ ମାସଟି ରାଧାକୃଷ୍ଣଙ୍କର ଭକ୍ତି ଓ ଆରାଧନାର ମାସ କହିଲେ ଅତ୍ୟୁକ୍ତି ହେବନାହିଁ ।

ଶ୍ରୀକ୍ଷେତ୍ରରେ କାର୍ତ୍ତିକ ପର୍ବ ପାଳନର ଏକ ବିଶେଷ ମହତ୍ତ୍ୱ ରହିଛି । ଓଡ଼ିଶାର କୋଣ ଅନୁକୋଣରୁ ହଜାର ହଜାର ସଂଖ୍ୟାରେ ବ୍ରତଚାରିଣୀମାନେ ଏଠାକୁ ଧାଇଁ ଆସିଥାନ୍ତି କାର୍ତ୍ତିକ ବ୍ରତ ପାଳନ କରିବା ନିମିତ୍ତ । ଏମାନଙ୍କ ପାଇଁ ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିର ମାସସାରା କୋଳାହଳମୟ ହୋଇଉଠେ । ଏମାନେ ସହରର କେତେକ ପ୍ରମୁଖ ଧର୍ମଶାଳା, ଲଜିଂ, ମଠବାଡ଼ି ଓ ବନ୍ଧୁ ବାନ୍ଧବଙ୍କ ଘରେ ଡେରାପକାଇବା ସହ ଧର୍ମଧାରଣାରେ ରହିଥାନ୍ତି । ରାତି ପ୍ରାୟ ତିନିଟାରୁ ହରିବୋଲ ଓ ହୁଳହୁଳିରେ ସହର ପ୍ରକମ୍ପିତ ହୋଇଥାଏ । କାର୍ତ୍ତିକ ମାସରେ ମଙ୍ଗଳ ଆଳତି ଦର୍ଶନ ମହାପୁଣ୍ୟ ବୋଲି କଥିତ ଅଛି । ଏହି ମାସରେ ଶ୍ରୀମନ୍ଦିରରେ ପ୍ରାତଃ ପ୍ରାୟ ୪ଟାରୁ ଶ୍ରୀଜୀଉମାନଙ୍କର ଆଳତି ହୋଇଥାଏ । ଏଥି ସକାଶେ ଶ୍ରୀମନ୍ଦିର ଭିତର ବେଢ଼ାର ଜଗମୋହନ ଓ ଦକ୍ଷିଣପଟ ମୁକ୍ତିମଣ୍ଡପ ଆଡ଼କୁ ଥିବା ଦ୍ୱାରମୁହଁରେ ପ୍ରବଳ ଭିଡ଼ ହୋଇଥାଏ । ସେହିଭଳି ସଂଧ୍ୟାରେ ମଧ୍ୟ ନାହିଁ ନଥିବା ଭିଡ଼ ।

### ଏଠି ଆପଣଙ୍କର ସୁବିଧା

ଅସୁବିଧା କ'ଣ ବୋଲି ପ୍ରଶ୍ନ କଲେ କିଏ କହେ – କାଳିଆକୁ ଛାଡ଼ି ଯିବାକୁ ମନ ହେଉନି । ତା' ମୁହଁକୁ ଦେଖି ସବୁ ଦୁଃଖ ଭୁଲିଯିବାକୁ ହେଉଛି । ପୁଣି କିଏ କହେ – ଏଠି ଅମୃତ ଖାଇବୁ ଆଉ କାଳିଆକୁ ଦେଖିବୁ, ଅସୁବିଧା କ'ଣ ? ଶ୍ରୀକ୍ଷେତ୍ରରୁ ଘରପାଇଁ କ'ଣ ନେବ ପଚାରିଲେ – ସେମାନେ କୁହନ୍ତି – କାର୍ତ୍ତିକ ବଜାର ଦର ଯେତେ ଆକାଶ ଛୁଆଁ ହେଲେ ହେଉ, ବର୍ଷକୁ ତ ଥରେ ଶ୍ରୀକ୍ଷେତ୍ର ଆସଛି, ଆରଥରକୁ ଥିବି କି ନଥିବି, ଖାଲି ହାତରେ କ'ଣ ଘରକୁ ଫେରିବି । ଯେମିତି ହେଲେ ଜଗାର ଶୁଖିଲି ପ୍ରସାଦ ଆଉ ନିର୍ମାଲ୍ୟ ପୁଡ଼ିଆଟେ ନେବି ତ ! ଆଉ କିଏ କହେ – ଆମ ଫେରିବା ବାଟକୁ ଘରେ ସମସ୍ତେ ଜଗିକରି ବସିଥିବେ । ତୀର୍ଥ ଜିନିଷ ସବୁ ନେବା ଲାଗି ବହୁତ ଇଚ୍ଛା, ପାଖରେ ପଇସା ଥିଲେ ତ !

ପୁରୁଷୋତ୍ତମ କ୍ଷେତ୍ରରେ ସମବେତ ହବିଷ୍ୟାଳିଙ୍କର ବଡ଼ ସାହାରା ଅବଢ଼ା । କିନ୍ତୁ କାର୍ତ୍ତିକ ମାସରେ ଅବଢ଼ାର ଦର ବଢ଼ୁଥିବାର ଅଭିଯୋଗ ହୁଏ । ସୁଆରମାନଙ୍କ ସହିତ ତାଙ୍କର କଳିଗୋଳ ଓ ଦରଦାମ୍‌ରେ ଟଣାଓଟରା କୌତୁହଳପ୍ରଦ ମନେହୁଏ । କେତେକ ହବିଷ୍ୟାଳି ଏହି ସମସ୍ୟାରୁ ମୁକୁଳିବାକୁ ଯାଇ ପ୍ରତିବର୍ଷ ନିର୍ଦ୍ଦିଷ୍ଟ ଲୋକଙ୍କ ପାଖରେ ମାସକ ପାଇଁ ବରାଦ କରି ଦିଅନ୍ତି । ବୋଝିଆମାନେ ପାରିଶ୍ରମିକ ନେଇ ସେମାନଙ୍କ ବସାରେ ମହାପ୍ରସାଦ ପହଞ୍ଚାଇଥାନ୍ତି । ବର୍ଷକ ମଧ୍ୟରେ କାର୍ତ୍ତିକ ମାସରେ ଶ୍ରୀମନ୍ଦିରରେ ଅବଢ଼ା ବିକ୍ରି ଅଧିକ । ଶେଷ ପାଞ୍ଚଦିନ ଅବଢ଼ା କାରବାର ଅଧିକ ହୁଏ । ଏହି ସମୟରେ ସୁଆର, ମହାସୁଆର

ହୋଇ ପ୍ରାୟ ୬୦୦ରୁ ଉର୍ଦ୍ଧ୍ୱ ଲୋକ ରୋଷଘରେ ନିୟୋଜିତ ଥାଆନ୍ତି । ସେମାନଙ୍କୁ ସହଯୋଗ କରୁଥାନ୍ତି ତିନିଶହରୁ ଉର୍ଦ୍ଧ୍ୱ ଯୋଗାଡ଼ିଆ । ଅନ୍ୟ ସମୟରେ ତିନିଶହ ସୁଆର ଆଉ ତିନିଶହ ଯୋଗାଡ଼ିଆ ରୋଷ କାର୍ଯ୍ୟ ସମ୍ଭାଳିଥାନ୍ତି । କେବଳ କାର୍ତ୍ତିକ ସମୟରେ ଶ୍ରୀମନ୍ଦିରରେ ନିୟୋଜିତ ଥାଆନ୍ତି କେବଳ ଦେଢ଼ଶହରୁ ଉର୍ଦ୍ଧ୍ୱ ବୋଝିଆ ।

ଏକ ସର୍ଭେରୁ ଜଣାଯାଇଛି, ପୂର୍ବବର୍ଷ ଅପେକ୍ଷା ଚଳିତବର୍ଷ ବହୁତ କମ୍ ସଂଖ୍ୟକ ହବିଷ୍ୟାଳି ଶ୍ରୀକ୍ଷେତ୍ରକୁ ଆସିଛନ୍ତି । ବାତ୍ୟା ଡ଼ରରେ ହେଉ ଅବା କୌଣସି ଆର୍ଥିକ କାରଣରୁ ଅବା ଦରଦାମ ବୃଦ୍ଧି ଓ ପାରିବାରିକ ଜଂଜାଳ ଜନିତ କାରଣ ହୋଇପାରେ । ପୁରୀରେ ମଠବାଡ଼ିର ଅବସ୍ଥା ଖରାପ । ଲୋକଙ୍କ ମଧ୍ୟରେ ବଦାନ୍ୟତାର ଭାବ ମଧ୍ୟ କ୍ରମେ କମି ଆସିଲାଣି । ଗାଡ଼ିଭଡ଼ା ବୃଦ୍ଧି, ତା' ସାଙ୍ଗକୁ ପଇସାପତ୍ର ନେଇ ପୁଅ–ବୋହୂଙ୍କ ସହ ଅଶାନ୍ତିର ଡର ଆଦି ଅନେକ କାରଣ ଅବଶ୍ୟ ରହିଛି, ଯାହା କି ପୁରୀ ଆଡ଼କୁ ମନ ବଳାଇବା ପଛରେ ପ୍ରତିବନ୍ଧକ ସୃଷ୍ଟି କରିଛି ।

**କାର୍ତ୍ତିକେୟ ଓ ବୃନ୍ଦାବତୀ**

କୁମାର ପୂର୍ଣ୍ଣିମାରେ ଦେବ ସେନାପତି କାର୍ତ୍ତିକେୟଙ୍କର ଜନ୍ମ ଉତ୍ସବ ପାଳିତ ହୁଏ । ଶ୍ରୀ କାର୍ତ୍ତିକେୟଙ୍କ ପୂଜା କାର୍ତ୍ତିକମାସର ପ୍ରାରମ୍ଭରୁ ଅନୁଷ୍ଠିତ ହୋଇ କାର୍ତ୍ତିକ ପୂର୍ଣ୍ଣିମା ଦିନ ଉଦ୍‌ଯାପିତ ହୋଇଥାଏ । ଷଡ଼ମୁଖ ଦ୍ୱାରା କୃତ୍ତିକାଙ୍କ ଷଡ଼ଭଗ୍ନୀଙ୍କଠାରୁ ସ୍ତନ୍ୟପାନ କରିଥିବା ହେତୁ କାର୍ତ୍ତିକେୟଙ୍କ ଅନ୍ୟ ନାମ 'ଷଡ଼ାନନ' । ରାମାୟଣ, ମହାଭାରତଠାରୁ ଆରମ୍ଭ କରି ବହୁ ପୁରାଣରେ ତାଙ୍କ କଥା ଉଲ୍ଲେଖ ଅଛି । ସେ ଶିବଶକ୍ତିଙ୍କ ଔରସଜାତ ସନ୍ତାନ । କାର୍ତ୍ତିକେୟ ତାଙ୍କ ଜନ୍ମର ଷଡ଼ଦିନ ଦେବସେନାଙ୍କୁ ବିବାହ କରିଥିଲେ । ପରବର୍ତ୍ତୀ କାଳରେ ଦେବସେନା ଷଷ୍ଠୀଦେବୀ ନାମରେ ଖ୍ୟାତ । ପୁରାଣମାନଙ୍କରେ କୁହାଯାଇଛି – କାର୍ତ୍ତିକେୟଙ୍କୁ ଉପାସନା କଲେ ଧନ ଓ ସନ୍ତାନ ପ୍ରାପ୍ତି ହୋଇଥାଏ । ଓଡ଼ିଶାରେ ଦେଖାଯାଏ, ସନ୍ତାନଜନ୍ମର ଷଷ୍ଠଦିନ ସନ୍ତାନ ରହୁଥିବା ଘରର କାନ୍ଥରେ କଉଡ଼ି ଦ୍ୱାରା ଚତୁଷ୍କୋଣ କୋଠି ଅଙ୍କାଯାଏ ଆଉ ସ୍ତ୍ରୀ ଲୋକମାନେ ତାଙ୍କୁ ପୂଜା କରିଥାନ୍ତି । କୁଷାଣ ସମ୍ରାଟ୍ ହୁବିଷ୍କଙ୍କ ମୁଦ୍ରାରେ ଓ ଗୁପ୍ତ ସମ୍ରାଟ କୁମାରଗୁପ୍ତଙ୍କ ମୁଦ୍ରାରେ କାର୍ତ୍ତିକେୟଙ୍କ ଚିତ୍ର ଦୃଷ୍ଟ ହୁଏ । ତେଣୁ ଧାରଣା କରାଯାଏ, ଖ୍ରୀଷ୍ଟିୟ ୨ୟ ଓ ୩ୟ ଶତାବ୍ଦୀ ପୂର୍ବରୁ କାର୍ତ୍ତିକେୟଙ୍କ ପୂଜା ଭାରତରେ ପ୍ରଚଳିତ । କାର୍ତ୍ତିକେୟ ଯେ ଲୋକଦେବତା ଓ ଶାବରୀୟ ଗୋଷ୍ଠୀରୁ ଆସିଛନ୍ତି ଏଭଳି ଧାରଣା କରିବା ସ୍ୱାଭାବିକ୍ ।

କାର୍ତ୍ତିକ ମାସରେ ବୃନ୍ଦାବତୀ ପୂଜନ ବିଧି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । 'କାର୍ତ୍ତିକ ମାହାତ୍ମ୍ୟ'ର ବର୍ଣ୍ଣନା ଅନୁଯାୟୀ ସତୀ ବୃନ୍ଦାବତୀଙ୍କର ସତୀତ୍ୱର ପରାକାଷ୍ଠାରୁ ଦର୍ପିଷ୍ଠ ଦୈତ୍ୟ ଜଳନ୍ଧର ଦେବତାମାନଙ୍କୁ ମଧ୍ୟ ଭୟ କରୁ ନଥିଲା । ସ୍ୱୟଂ ବିଷ୍ଣୁ ଜଗତର ରକ୍ଷା କଳ୍ପେ ବୃନ୍ଦାବତୀଙ୍କର ସତୀତ୍ୱ ଅପହରଣ କରିଥିଲେ । ମାତ୍ର ଜଗତ୍‌ପତି ବିଷ୍ଣୁ ସତୀ ବୃନ୍ଦାବତୀଙ୍କୁ ନିଜଠାରୁ ଉଚ୍ଚସ୍ଥାନ ଦେଇ ତୁଳସୀକୁ ମସ୍ତକରେ ଧାରଣ କରି ଯେଉଁ ଉଦାର ଧାର୍ମିକ ତଥା ଆଧ୍ୟାତ୍ମିକ ପରମ୍ପରା ପ୍ରତିଷ୍ଠା କରିଥିଲେ, ତା'ର ଫଳ ସ୍ୱରୂପ ବୃନ୍ଦାବତୀ ପୂଜନ କାର୍ତ୍ତିକ ମାସରେ ଅତ୍ୟନ୍ତ ବିଧି ସଙ୍ଗତ ଓ ଗୁରୁତ୍ୱପୂର୍ଣ୍ଣ ମଧ୍ୟ । କାରଣ ତୁଳସୀର ପ୍ରତିଟି ଅଙ୍ଗ ଅତି ପବିତ୍ର ।

**ଶ୍ରୀମନ୍ଦିର ଓ କାର୍ତ୍ତିକ**

କାର୍ତ୍ତିକ ମାସରେ ପଡୁଥିବା ଦଶମୀଠାରୁ କାର୍ତ୍ତିକ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ବାଲଧୂପ ଓ କୀର୍ତ୍ତନ ନିୟମ ସେବା ଯଥାରୀତିରେ ପାଳିତ ହୋଇଥାଏ । ଶ୍ରୀଜୀଉଙ୍କ ବାଲଧୂପ ସମୟରେ ପୁରୀର ମୋହନ ଗୋସ୍ୱାମୀ ଶୀତଳାନନ୍ଦଦେବ ମଠ, ଶ୍ରୀ ଗମ୍ଭୀରା ଶ୍ରୀରାଧାକାନ୍ତ ମଠ ଓ ବଡ଼ ଓଡ଼ିଆ ମଠ ପକ୍ଷରୁ ଏହି କୀର୍ତ୍ତନ ସେବା ପ୍ରତିପାଦିତ ହୋଇଥାଏ । ଏଥିରେ ସ୍ୱତନ୍ତ୍ର ଭାବରେ ଗୋଷ୍ଠ ଅଷ୍ଟମୀଠାରୁ କାର୍ତ୍ତିକ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଶ୍ରୀମନ୍ଦିର ବାଜାମଣ୍ଡପ ସନ୍ନିକଟରେ ଗୋସ୍ୱାମୀଙ୍କ ଶରତରାସ ଓ ତାଙ୍କ ସଂକୀର୍ତ୍ତନ ମଣ୍ଡଳୀ ଦ୍ୱାରା ଗାୟନ କରାଯାଏ । ଏହା ଏକ ପାରମ୍ପରିକ ନିୟମ ସେବା ଭାବେ ବହୁ କାଳରୁ ପାଳିତ ହୋଇ ଆସୁଛି । ଏଥିରେ ମଧ୍ୟ ଗୋସ୍ୱାମୀ ପରିବାରର ଆରାଧ୍ୟ ଦେବତା ଗୌରାଙ୍ଗ ନିତ୍ୟାନନ୍ଦ ମହାପ୍ରଭୁଙ୍କର ନିଶାଣଖଣତା ନେଇ ପଞ୍ଚକୋଶୀର ସମସ୍ତ ସଂକୀର୍ତ୍ତନ ମଣ୍ଡଳୀ ସମାବେଶ ହୋଇ ଶ୍ରୀମନ୍ଦିର ବାହାର ବେଢ଼ାରେ ପରିକ୍ରମଣ କରିଥାନ୍ତି । ଶ୍ରୀଜୀଉଙ୍କ ସାମ୍ନାରେ ଶୀତଳାନନ୍ଦ ଦେବ ମଠ ବାହାର କାଠ ପାଖରେ, ବଡ଼ ଓଡ଼ିଆ ମଠ ଗରୁଡ଼ଖମ୍ଭ ନିକଟସ୍ଥ ଦଶଅବତାର ଚିତ୍ର ପ୍ରତିମା ନିକଟରେ ଏବଂ ରାଧାକାନ୍ତ ମଠରେ ସଂକୀର୍ତ୍ତନ ମଣ୍ଡଳୀ କାଞ୍ଚି ଅଭିଯାନ ଚିତ୍ର ପ୍ରତିମା ପାଖରେ ଠିଆହୋଇ ସଂକୀର୍ତ୍ତନ କରିଥାନ୍ତି । ଏଥି ସହିତ କାର୍ତ୍ତିକ ମାସ ସାରା ରାଧାକାନ୍ତ ମଠ ଓ ବଡ଼ ଓଡ଼ିଆ ମଠ ପକ୍ଷରୁ ତିନିତିନିଟା ଲେଖାଏଁ ଅଖଣ୍ଡ ଦୀପ ଶ୍ରୀମନ୍ଦିରର ଜୟ ବିଜୟ ଦ୍ୱାର ନିକଟରେ ଦିନ ଓ ରାତ୍ର ସବୁ ସମୟ ଜଳିଥାଏ ।

**ରାଧାଦାମୋଦର ବେଶ**

ଆଶ୍ୱିନ ଶୁକ୍ଳ ଏକାଦଶୀ ତଥା ପବିତ୍ର ଦଶହରା ପରଦିନଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ରତ୍ନସିଂହାସନାଧିଷ୍ଠିତ ଶ୍ରୀବିଗ୍ରହ

ମାନଙ୍କର ଆକର୍ଷଣୀୟ ରାଧାଦାମୋଦର ବେଶ ଅନୁଷ୍ଠିତ ହୋଇଥାଏ । ଦୈନିକ ଅବକାଶ ନୀତି ପରେ ଏହି ବେଶ କରାଯାଏ । ବିଷ୍ଣୁ ଓ ଶ୍ରୀଜଗନ୍ନାଥ ଯେହେତୁ ଏକ ଓ ଅଭିନ୍ନ, କାର୍ତ୍ତିକ ମାସରେ ଶ୍ରୀ ଜଗନ୍ନାଥଙ୍କୁ 'ଦାମୋଦର' ରୂପେ ଆରାଧନା କରାଯାଇଥାଏ । ବିଷ୍ଣୁ ସହସ୍ର ନାମ ଓ ଅମରକୋଷ ପ୍ରଭୃତିରେ ବିଷ୍ଣୁଙ୍କର ଅନ୍ୟନାମ ଦାମୋଦର ରୂପେ ବର୍ଣ୍ଣିତ ହୋଇଛି । ଦୀର୍ଘ ଏକମାସ ଧରି ଶ୍ରୀମନ୍ଦିରରେ ପାଳିତ ରାଧାଦାମୋଦର ବେଶରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ତ୍ରିକଚ୍ଛ ବସ୍ତ୍ର ପରିଧାନ କରିଥାନ୍ତି । ଶ୍ରୀହସ୍ତରେ ସୁବର୍ଣ୍ଣ ନଳୀଭୁଜ ଲାଗି ହୋଇଥାଏ । ବାଉଁଶ ପାତିଆ ଓ କନାରେ ନିର୍ମିତ 'ଚୂଳ ତ୍ରିମୁଣ୍ଡି' ଶ୍ରୀମସ୍ତକ ଉପରେ ରହିଥାଏ । ଚୂଳର ଅଗ୍ରଭାଗରେ ଚନ୍ଦ୍ରିକା ଶୋଭା ପାଉଥାଏ । କର୍ଣ୍ଣଦେଶରେ କୁଣ୍ଡଳ, କଟିତଟରେ ଓଡ଼ିଆଣୀ, ମସ୍ତକରେ ତଡ଼ଗୀ, ଚନ୍ଦ୍ର, ସୂର୍ଯ୍ୟ ଏବଂ ଚିତା ଇତ୍ୟାଦି ସ୍ୱର୍ଣ୍ଣ ଅଳଙ୍କାରରେ ପ୍ରଭୁ ଭୂଷିତ ହୋଇଥାନ୍ତି । ଏତଦ୍ ବ୍ୟତୀତ ବିଭିନ୍ନ ପୁଷ୍ପ ଅଳଙ୍କାର, ବାରଲାଗି ପାଟଶାଢ଼ୀ, ଫୁଟା, ଶିରକପଡ଼ା, ପହରଣ, ବଳା, ଅଧର ଓ ଉତ୍ତରୀୟ ବସ୍ତ୍ରରେ ସଜ୍ଜିତ ହୋଇଥାନ୍ତି । କେତେକ ଗବେଷକ ମତ ଦିଅନ୍ତି ଯେ, ଶ୍ରୀଚୈତନ୍ୟଙ୍କ ଶ୍ରୀକ୍ଷେତ୍ର ଆଗମନ ସମୟରେ ହିଁ ଶ୍ରୀମନ୍ଦିରରେ ଏହି ବେଶର ପ୍ରଚଳନ ହୋଇଥିଲା । ଏହି ମନଲୋଭା ବେଶ ଦର୍ଶନ କରିବାକୁ ବହୁ ଭକ୍ତଙ୍କ ସମାଗମ ଦେଖିବାକୁ ମିଳିଥାଏ । ପ୍ରକାଶଥାଉକି, ଶ୍ରୀ ବିଗ୍ରହମାନଙ୍କର ରାଧାଦାମୋଦର ବେଶ ଥାଇ ବାଲଧୂପ ନୀତି ଅନୁଷ୍ଠିତ ହୋଇଥାଏ । ଏତଦ୍‌ବ୍ୟତୀତ କାର୍ତ୍ତିକ ମାସର ଅମାବାସ୍ୟାଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପ୍ରତ୍ୟେକ ସୋମବାରରେ ଶ୍ରୀବଳଭଦ୍ର (ବଡ଼ବାଡ଼) 'ହରିହର ବେଶ' ହୁଅନ୍ତି । ଏହି ଦିନ ଶ୍ରୀ ବଳଭଦ୍ରଙ୍କ ଅର୍ଦ୍ଧେକ ଅଂଶକୁ କଳା ଓ ଅର୍ଦ୍ଧେକ ଅଂଶକୁ ଧଳାବସ୍ତ୍ରରେ ଭୂଷିତ କରାଯାଇଥାଏ । ଏଥିସହିତ କାର୍ତ୍ତିକ ମାସ ଶୁକ୍ଳପକ୍ଷ ଏକାଦଶୀ ତିଥିରେ ଶ୍ରୀମନ୍ଦିରରେ 'ହରି ଉତ୍ଥାପନ ନୀତି' ଏବଂ ଦ୍ୱାଦଶୀ ଦିନ 'ଗରୁଡ଼ ଉତ୍ଥାପନ ନୀତି' ପାଳିତ ହୋଇଥାଏ । କାର୍ତ୍ତିକ ମାସ ଉପଲକ୍ଷେ ଦୈନିକ ସନ୍ଧ୍ୟା ଆଳତି ଶେଷ ହୋବାପରି ସର୍ବସାଧାରଣଙ୍କ ଉଦ୍ଦେଷ୍ୟରେ ସାହାଣମେଲା ଦର୍ଶନ ହୋଇଥାଏ ।

### ଆକାଶଦୀପ

ପବିତ୍ର କାର୍ତ୍ତିକରେ ପାରମ୍ପରିକ ଆକାଶଦୀପ ପ୍ରତିଷ୍ଠାର ପ୍ରଚଳନ ଓଡ଼ିଶାରେ ବହୁଦିନରୁ ଚଳିଆସୁଛି । ଏହି ମାସରେ ଠିକ୍ ସଂଧ୍ୟା ସମୟରେ ଧର୍ମପ୍ରାଣା ହବିଷ୍ୟାଳିମାନେ ଆକାଶଦୀପ ଜାଳିବାର ଦେଖାଯାଏ । କଥାରେ ଅଛି – 'କାର୍ତ୍ତିକେ ଦୀପଦାନ, ମାଘେ ସ୍ନାହାନ ଓ ବୈଶାଖେ ଜଳଦାନ' । ଆଶ୍ୱିନ ମାସ ଶୁକ୍ଳପକ୍ଷ ଆରମ୍ଭରେ ତୁଳା ସଂକ୍ରାନ୍ତିରେ ବିଷ୍ଣୁଙ୍କ ସମୀପରେ ଅଖଣ୍ଡ ଦୀପଦାନ କର୍ତ୍ତବ୍ୟ । ସେହିପରି ଦୀପଦାନ ଦେବାଳୟରେ, ତୁଳସୀ ବୃକ୍ଷ ମୂଳରେ ଅଥବା ଆକାଶରେ ମଧ୍ୟ କରିବାକୁ ହେବ । ଆକାଶ ଦୀପଦାନ ସର୍ବୋତ୍ତମ । ଗୃହର ବର୍ହିଭାଗରେ ଅତି ଉଚ୍ଚ ସ୍ଥାନରେ ଆକାଶ ଦୀପଦାନ କର୍ତ୍ତବ୍ୟ । ଅତି ଉଚ୍ଚରେ ଦୀପ ଜାଳିଲେ ତିନିବର୍ଷରେ ସାତଜନ୍ମର ପାପ ଦୂରୀଭୂତ ହୁଏ ବୋଲି 'ବ୍ରହ୍ମପୁରାଣ'ରେ ଲେଖାଅଛି । ରାଶିତେଲ କିମ୍ବା ଗୁଆଘିଅରେ ଲକ୍ଷ୍ମୀନାରାୟଣଙ୍କୁ ସ୍ମରଣ କରି ଯିଏ ଦୀପଦାନ କରିବ ସେ ଫଳ ପାଇବ । ସେଥିରେ ଆହୁରି ମଧ୍ୟ ଲେଖାଅଛି ଯେ, ଗାଈଗୋଠ, ବିଷ୍ଣୁ ମନ୍ଦିର, ଚାରିଛକ ସ୍ଥାନ, ନିଛାଟିଆ ଗଳି, ବ୍ରାହ୍ମଣ ବସ୍ତି, ଗହଳିଆ ପଡ଼ିଆ ଓ ବୃକ୍ଷ ମୂଳରେ ଦୀପ ଜାଳିଲେ ଅଗ୍ନିଷ୍ଟୋମଯଜ୍ଞର ଫଳ ମିଳିବ । 'ପଦ୍ମପୁରାଣ'ରେ କୁହାଯାଇଛି –

ଉଚ୍ଚୈ ପ୍ରଦୀପମ୍ ଆକାଶେ ଯୋ ଦଦ୍ୟାତ୍ କାର୍ତ୍ତିକେ ନରଃ ।
ସର୍ବଂ କୁଳଂ ସମୃଦ୍ଧୃତ୍ୟ ବିଷ୍ଣୁଲୋକମ୍ ଅବାପ୍ନୁୟାତ୍ ॥

ଆକାଶ ଦୀପ ପ୍ରଜ୍ଜ୍ୱଳନ ସମୟରେ କେଉଁ ଶ୍ଳୋକ ଉଚ୍ଚାରଣ କରିବାକୁ ହେବ ତାହା 'ହରିଭକ୍ତି ବିଳାସ'ରେ ଉଲ୍ଲେଖ ରହିଛି । ତା'ହେଲା–

ଦାମୋଦରାୟ ନଭସି ତୁଳାୟାଂ ଲୋଳୟା ସହ ।
ପ୍ରଦୀପନ୍ତେ ପ୍ରଯଚ୍ଛାମି ନମୋନନ୍ତାୟ ବେଧସେ ॥

ଏହି ଦୀପଦାନ ଦ୍ୱାରା ଅକ୍ଷୟ ଫଳ ମିଳେ । ଗାଁ ଗାଁରେ ଏପରିକି ସହରର କେତେକ ସ୍ଥାନରେ ଉଚ୍ଚ ବାଉଁଶ ଖୁଣ୍ଟ ଉପରେ କାର୍ତ୍ତିକ ମାସର ପ୍ରତ୍ୟହ ସଂଧ୍ୟାରେ ପ୍ରଦୀପ ପ୍ରଜ୍ୱଳିତ ହେଉଥିବାର ଦେଖାଯାଏ ।

### ପଞ୍ଚକ

ପୁଣ୍ୟ ଅର୍ଜନର ପିପାସା, ବୟସ ଭାରରେ ନଇଁ ପଡ଼ିଥିବା ହବିଷ୍ୟାଳିମାନଙ୍କୁ ମାନସିକ ଓ ଶାରୀରିକ ଶକ୍ତି ଯୋଗାଇଥାଏ । ମାସ ସାରା ହବିଷ ପାଳନ କରି ପାରୁନଥିବା ଶ୍ରଦ୍ଧାଳୁମାନେ 'ପଞ୍ଚକ' ପାଳନ କରିଥାନ୍ତି । ମାସର ଶେଷ ପାଞ୍ଚଦିନକୁ 'ପଞ୍ଚକ' ବୋଲି କୁହାଯାଏ । କାର୍ତ୍ତିକ ମାସ ମଧ୍ୟରେ ଏହି ପାଞ୍ଚଦିନ ହେଲା ଶ୍ରେଷ୍ଠ । ଏହି ପଞ୍ଚକରେ ପ୍ରତ୍ୟେକ ଓଡ଼ିଆ ଆମିଷ ଭକ୍ଷଣ ନିଷେଧ କରିବା ସହ ଧର୍ମ ଧାରଣାରେ କଟାଇଥାନ୍ତି । ପ୍ରବାଦ ଅଛି ଯେ, ଏହି ପଞ୍ଚକରେ ବଗ ମଧ୍ୟ ମାଛ ଖାଏ ନାହିଁ । ସେଥି ସକାଶେ ଏହାର ଅନ୍ୟନାମ ହେଲା 'ବକପଞ୍ଚକ' । ଏହି ସମୟରେ ଲକ୍ଷ୍ମୀ ନାରାୟଣ

ପୂଜା ହେବା ସହ ଚଉରାମୂଳେ ମୁରୁଜରେ ଅନ୍ୟ ଚିତ୍ର ସହ ବଗବଗୁଲୀ ଅଙ୍କାଯାଇଥାଏ । ଏହାର ଆଉ ଏକ ନାମ 'ଭୀଷ୍ମ ପଞ୍ଚକ' ବୋଲି 'ଗଦାଧର ପଦ୍ଧତି' ପୁସ୍ତକରେ ଉଲ୍ଲେଖ ଅଛି । ଯେହେତୁ, ଏହି ପଞ୍ଚକ ବ୍ରତକୁ ଭୀଷ୍ମ ବାସୁଦେବଙ୍କଠାରୁ ପାଇଥିଲେ ତେଣୁ ଏହାକୁ 'ଭୀଷ୍ମ ପଞ୍ଚକ' ବୋଲି କହିଥାନ୍ତି ।

ପଞ୍ଚକ ପାଞ୍ଚ ଦିନରେ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ବିଭିନ୍ନ ବେଶ ଅନୁଷ୍ଠିତ ହୋଇଥାଏ । କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ଲକ୍ଷ୍ମୀନାରାୟଣ ବେଶ, ଦ୍ୱାଦଶୀ ଦିନ ବାମନ ବା ବାଙ୍କଚୂଡ଼ ବେଶ, ତ୍ରୟୋଦଶୀରେ ତ୍ରିବିକ୍ରମ ବା ଡାଳିକିଆ ବେଶ, ଚତୁର୍ଦ୍ଦଶୀରେ ଲକ୍ଷ୍ମୀ ନୃସିଂହ ବେଶ ଏବଂ କାର୍ତ୍ତିକ ପୂର୍ଣ୍ଣିମା ଦିନ ରାଜରାଜେଶ୍ୱର ବେଶ (ରାଜବେଶ ବା ସୁନାବେଶ) । ସୂଚନାଯୋଗ୍ୟ ଯେ, ପଞ୍ଚକରେ ଯେଉଁ ବର୍ଷ ଛଅଦିନ ଅର୍ଥାତ୍ ଅତିରିକ୍ତ ତିଥି ପଡ଼େ ସେବର୍ଷ ଶେଷ ଦିନରେ ମହାପ୍ରଭୁମାନଙ୍କର ନାଗାର୍ଜ୍ଜୁନ ବେଶ ଅନୁଷ୍ଠିତ ହୋଇଥାଏ ।

### କାର୍ତ୍ତିକ ପୂର୍ଣ୍ଣିମା ବା ରାସ ପୂର୍ଣ୍ଣିମା

ପବିତ୍ର ମହାକାର୍ତ୍ତିକ ମାସର ଉଦ୍‌ଯାପନ ଦିବସକୁ 'କାର୍ତ୍ତିକ ପୂର୍ଣ୍ଣିମା' କୁହାଯାଏ । ଏହାର ଅନ୍ୟନାମ 'ରାସ ପୂର୍ଣ୍ଣିମା' । ପୁରାଣ କହେ, କାର୍ତ୍ତିକ ପୂର୍ଣ୍ଣିମାକୁ 'ତ୍ରିପୁରାରୀ ପୂର୍ଣ୍ଣିମା' ବୋଲି ମଧ୍ୟ କୁହାଯାଏ । ମଙ୍ଗଳମୟ ଶିବ ଏହି ଦିବସରେ ତ୍ରିପୁରାସୁରକୁ ବଧ କରିଥିବାର ଜଣାଯାଏ । ହବିଷ୍ୟାଳିମାନେ ବ୍ରାହ୍ମଣମାନଙ୍କୁ ଛଞ୍ଚା ଦେଇ ଏହି ବ୍ରତ ଉଦ୍‌ଯାପନ କରିଥାନ୍ତି । ଏହିଦିନ ଶ୍ରୀକୃଷ୍ଣ ରାଧାଙ୍କ ସଙ୍ଗରେ ବୃନ୍ଦାବନରେ ରାସକ୍ରୀଡ଼ା କରିଥିଲେ । ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ବୃନ୍ଦାବନରେ ଯେଉଁ ରାସ କାର୍ତ୍ତିକ ମାସରେ କରିଥିଲେ ତାକୁ 'ଶରତ ରାସ' ଏବଂ ବସନ୍ତ ଋତୁରେ ରାସକୁ 'ବସନ୍ତରାସ' ବୋଲି କହନ୍ତି । ଏହି ରାସପୂର୍ଣ୍ଣିମା ଭାରତରେ ଶ୍ରୀକୃଷ୍ଣାବତାର ଯୁଗରୁ ପ୍ରଚଳିତ ହୋଇ ଆସୁଛି । ଓଡ଼ିଶାରେ ଏହି ରାସପୂର୍ଣ୍ଣିମା ଉତ୍ସବର ଏକ ସ୍ୱାତନ୍ତ୍ର୍ୟ ଅଛି, ଯାହା ଅନ୍ୟତ୍ର ନାହିଁ । ଓଡ଼ିଶାର ସାମାଜିକ, ଧାର୍ମିକ ଓ ଜାତୀୟ ଜୀବନରେ କାର୍ତ୍ତିକ ମାସ, କାର୍ତ୍ତିକ ପୂର୍ଣ୍ଣିମାର ମହତ୍ତ୍ୱ ଏବଂ ପ୍ରଭାବ ସର୍ବଜନ ବିଦିତ । ସହସ୍ରବର୍ଷ ପୂର୍ବେ ଓଡ଼ିଆ ସାଧବ ପୁଅମାନେ ବାଲି, ଜାଭା, ସିଂହଳ ଓ ସୁମାତ୍ରା ଦ୍ୱୀପକୁ ମହାନଦୀବାଟେ ବୋଇତରେ ଆଷାଢ଼ ମାସରେ ବାଣିଜ୍ୟ ପାଇଁ ଯାଉଥିଲେ ଏବଂ ଫେରୁଥିଲେ କାର୍ତ୍ତିକ ମାସରେ କେତେ ଧନରତ୍ନ ନେଇ । ସେତେବେଳେ ଉତ୍କଳର ନୌବାଣିଜ୍ୟ ଲାଗି ଯଥେଷ୍ଟ ଗୌରବ ଥିଲା ଏବଂ ଉତ୍କଳର ସଂସ୍କୃତି ସହିତ ସମ୍ପୃକ୍ତ ଦ୍ୱୀପଗୁଡ଼ିକର ସୁସମନ୍ୱୟ ଥିଲା । ସାଧବ ପୁଅ କହି ଯାଉଥିଲା– 'ଆ କା ମା ବୈ' ଅର୍ଥାତ୍, ଆଷାଢ଼ ମାସରେ ଯାଉଛି କାର୍ତ୍ତିକ ମାସରେ ଫେରିବି, ଭୟ କରିବ ନାହିଁ । ଆଜି ସେହି ସଂସ୍କୃତିର ଅଂଶବିଶେଷକୁ ଉଜ୍ଜୀବିତ ରଖିବା ପାଇଁ ଓଡ଼ିଶାବାସୀ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ନଦୀ, ସମୁଦ୍ର, ପୋଖରୀ, ଗାଡ଼ିଆ ଇତ୍ୟାଦିରେ କଦଳୀ ବାହୁଙ୍ଗା ବା ସୋଲରେ ଡଙ୍ଗା ସଜାଇ ଦୀପଜାଳି ଜଳରେ ଭସାଇ ବୋଲିଥାନ୍ତି – 'ଆ କା ମା ବୈ' । ହବିଷ୍ୟାଳିମାନେ ଡଙ୍ଗାରେ ପାନ ଗୁଆ ଦେଇ କୁହନ୍ତି – 'ପାନ ଗୁଆ ତୋର, ମାସକ ଧର୍ମ ମୋର' । ଏହିଦିନ ପ୍ରତ୍ୟୁଷରୁ ଓଡ଼ିଆଙ୍କ ଡଙ୍ଗାଭସା ଦେଖିଲେ ଏ ଜାତି ଦିନେ ବଣିକ ଜାତି ଥିଲା ବୋଲି ଧାରଣା କରାଯାଏ । କହିବାକୁ ଗଲେ କାର୍ତ୍ତିକ ପୂର୍ଣ୍ଣିମା ସହିତ ପ୍ରାଚୀନ କଳିଙ୍ଗର ସାମୁଦ୍ରିକ ବର୍ହିବାଣିଜ୍ୟ, ଉପନିବେଶ ସ୍ଥାପନ, ବାଣିଜ୍ୟ ବ୍ୟାପାର, ପରମ୍ପରା, ଭୌଗୋଳିକ ଜ୍ଞାନର ବିକାଶ, ସମୁଦ୍ର ଯାତ୍ରା, କଳାସଂସ୍କୃତି, ସାମାଜିକ ରାଜନୈତିକ ଅର୍ଥନୈତିକ ଧାର୍ମିକ ବ୍ୟବସ୍ଥା ଆଦି ଏହି ଦିବସ ସହ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସଂପୃକ୍ତ କହିଲେ ଅତ୍ୟୁକ୍ତି ହେବନାହିଁ । ଶ୍ରୀକ୍ଷେତ୍ରରେ ହବିଷ୍ୟାଳିମାନେ ପ୍ରତ୍ୟୁଷରୁ ଉଠି ସମୁଦ୍ର କିମ୍ବା ତୀର୍ଥ ପୁଷ୍କରିଣୀରେ ସ୍ନାନ ସାରି ଡଙ୍ଗା ଭସାଇଥାନ୍ତି ଏବଂ ପରେ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ରାଜ ରାଜେଶ୍ୱର ବେଶ (ରାଜବେଶ ବା ସୁନାବେଶ) ଦର୍ଶନ କରିଥାନ୍ତି । ଏହିପରି ଭାବରେ କାର୍ତ୍ତିକ ବ୍ରତର ପରିସମାପ୍ତି ଘଟେ ।

ସବୁରି ଉର୍ଦ୍ଧ୍ୱରେ କାଳ । ସେଥିପାଇଁ କୁହାଯାଏ ସମୟ ବଡ଼ ବଳବାନ । ତେବେ ଯାହା କାଳକୁ ଜୟ କରିଥାଏ ତାହା ଏକ ଉନ୍ନତ ସଂସ୍କୃତି ଓ ପରଂପରାର ବାହକ । କାର୍ତ୍ତିକ ମାସ ସେହିଭଳି ଏକ ମହାନ୍ ସଂସ୍କୃତିକୁ ଧରି ଆପଣା ପରିଚୟ ସାଇତିଛି ଏବଂ ସାଇତି ରଖିଥିବ କାଳ କାଳକୁ । ଏହିପରି ଭାବରେ କାର୍ତ୍ତିକ ମାସର ବର୍ଣ୍ଣନା, ଇତିହାସ ଓ ପୌରାଣିକ ପୃଷ୍ଠଭୂମି ଅସରନ୍ତି । ଶ୍ରୀକ୍ଷେତ୍ରରେ ରହି ନିଷ୍ଠାର ସହ କାର୍ତ୍ତିକ ବ୍ରତ ଆଚରଣ କରିପାରିଲେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ କରୁଣା ଯଥାର୍ଥରେ ଉପଲବ୍ଧ ହୁଏ ବୋଲି ବିଶ୍ୱାସ ରହିଛି ।

ସମ୍ପାଦକ
'ଅଭିନନ୍ଦନିକା'
ସେନାପତି ଭବନ
ବଡଦାଣ୍ଡ, ପୁରୀ–୧

# ଦାରୁବ୍ରହ୍ମଙ୍କ ଅନ୍ନବ୍ରହ୍ମ କୈବଲ୍ୟର ମାହାତ୍ମ୍ୟ

**ଦେବପ୍ରସାଦ ମିଶ୍ର**

ମହାପ୍ରଭୁ ଜଗନ୍ନାଥଙ୍କ ମହାପ୍ରସାଦର ନାମ ଅନ୍ନବ୍ରହ୍ମ, କିନ୍ତୁ ସେ ନିଜେ ପ୍ରତ୍ୟକ୍ଷ ଦାରୁବ୍ରହ୍ମ ରୂପେ ବିରାଜିତ । ଅନ୍ନ ସହିତ ବ୍ରହ୍ମ ଶବ୍ଦର ସଂଯୋଗ ବେଦାଦିରେ ଆଲୋଚିତ ହୋଇଥିଲେ ମଧ୍ୟ ସମଗ୍ର ଭାରତରେ କେବଳ ଶ୍ରୀଜଗନ୍ନାଥ ମନ୍ଦିରର ପରମ୍ପରାରେ ପରିଲକ୍ଷିତ ହୁଏ । ଅନ୍ନବ୍ରହ୍ମରୁ କ୍ଷୁଦ୍ର କଣିକାଏ ପାଖରେ ଥିଲେ ଜଗନ୍ନାଥ ମହାପ୍ରଭୁଙ୍କର ସାନ୍ନିଧ୍ୟ ଲାଭର ସୁଯୋଗ ପୂରଣ ହୁଏ । ସ୍ୱୟଂ ଜଗନ୍ନାଥ ଅନ୍ନ ମଧ୍ୟରେ ବ୍ରହ୍ମ ରୂପରେ ପ୍ରକାଶିତ ହୋଇଥିବାରୁ ପ୍ରତ୍ୟେକ ଜଗନ୍ନାଥ ପ୍ରେମୀ ହିନ୍ଦୁ ମହାପ୍ରସାଦକୁ କୈବଲ୍ୟ ରୂପେ ଗ୍ରହଣ କରିଥାନ୍ତି । ଭଗବଦ୍ ଗୀତାରେ ଭଗବାନ ସ୍ୱୟଂ ହବିଃ ବା ଯଜ୍ଞ ପଚିତ ଅନ୍ନକୁ ବ୍ରହ୍ମ ସଂଜ୍ଞାରେ ନାମିତ କରିଛନ୍ତି । 'ଶ୍ରୀଯନ୍ତ୍ର କାରିକା'ରେ ଶ୍ରୀଚକ୍ର ବା ତ୍ରିପୁର ଭୈରବୀ ଯନ୍ତ୍ର ସଂସ୍ପର୍ଶରେ ଆସିଲେ ଚାଣ୍ଡାଳ ମଧ୍ୟ ଦ୍ୱିଜତ୍ୱ ପ୍ରାପ୍ତ ହୋଇଥାଏ । ତେଣୁ ସେହି ଯନ୍ତ୍ର ଉପରେ ନୈବେଦ୍ୟ ବଢାଯାଉଥିବାରୁ ଏଠାରେ ଅନ୍ନ ହିଁ 'ବ୍ରହ୍ମ' । ଦ୍ୱାବିଂଶାକ୍ଷରୀ ମନ୍ତ୍ରରାଜ ଅଭିମନ୍ତ୍ରିତ । 'ନୃସିଂହ ତାପିନୀ' ଉପନିଷଦାଦି ଗ୍ରନ୍ଥର ଅଭିମତ ଯେ, ଜଳର ଅଭିସିଞ୍ଚନ ଦ୍ୱାରା ଦ୍ରବ୍ୟ ଶୁଦ୍ଧ ହୋଇ କୈବଲ୍ୟତ୍ୱ ପ୍ରାପ୍ତ ହୁଏ ଏବଂ ପୁରୁଷୋତ୍ତମ ପୀଠରେ ତାହା ହିଁ ଆଚରିତ ହେଉଥିବାରୁ ଜଗନ୍ନାଥଙ୍କର ଅନ୍ନ ହିଁ ବ୍ରହ୍ମ ରୂପେ ଖ୍ୟାତ । 'ଗୋପାଳ ତାପିନୀ' ତଥା ସମସ୍ତ ପରମାର୍ଥ ଗ୍ରନ୍ଥରେ କ୍ଲୀଂ ବୀଜଦ୍ୱାରା ନିବେଦିତ ଅନ୍ନ ପ୍ରତ୍ୟକ୍ଷ କୈବଲ୍ୟ ଭାବକୁ ପ୍ରାପ୍ତ ହୋଇଥାନ୍ତି ବୋଲି କୁହାଯାଇଛି । ତନ୍ତ୍ର ମତରେ ଜଗନ୍ନାଥଙ୍କର ଅଦା, ପାଚେଡି ପ୍ରଭୃତି ବଳି ଦ୍ରବ୍ୟମାନ ଶ୍ରୀକ୍ଷେତ୍ରାଧୀଶ୍ୱରୀ ଭୈରବୀ ବିମଳାଙ୍କୁ ସମର୍ପଣ କରାଯାଇଥିବାରୁ ତାହା 'କୌଳାନ୍ନ' ଭାବେ ବ୍ରହ୍ମତ୍ୱ ପ୍ରାପ୍ତ ହୋଇଥାଏ ।



ଅନ୍ନବ୍ରହ୍ମ ବା ମହାପ୍ରସାଦ ପ୍ରତି ଭଗବତ ଭାବ ଅକ୍ଷୁଣ୍ଣ ରଖିବା ଉଦ୍ଦେଶ୍ୟରେ ପୂର୍ବାଚାର୍ଯ୍ୟଗଣ ମହାପ୍ରସାଦକୁ ବିଷ୍ଣୁ କୈବଲ୍ୟ ରୂପେ ଶୀର୍ଷ ସ୍ଥାନ ଦେଇଆସିଛନ୍ତି । 'ରୁଦ୍ର ଯାମଳ'ରେ ଭଗବାନ ନୀଳଲୋହିତ ଶଙ୍କର ପାର୍ବତୀଙ୍କୁ କହିଛନ୍ତି ଯେ, ଯେଉଁ ଅନ୍ନ ସାକ୍ଷାତ ମହାଲକ୍ଷ୍ମୀଙ୍କ ଦ୍ୱାରା ପାକ ହୋଇ ସ୍ୱୟଂ ଶଙ୍କର୍ଷଣଙ୍କ ଦ୍ୱାରା ପରିବେଶିତ ହୋଇଛି ଏବଂ ଯାହାକୁ ସ୍ୱୟଂ ମହାବିଷ୍ଣୁ ଭୋଜନ କରୁଛନ୍ତି ତାହାର ପବିତ୍ରତାରେ ବିକଳ୍ପ ଚିନ୍ତାର ଅବକାଶ କାହିଁ ?

ଭବିଷ୍ୟ, କୁର୍ମାଦି ପୁରାଣମାନଙ୍କରେ ଶ୍ରୀଜଗନ୍ନାଥଙ୍କର ଅନ୍ନବ୍ରହ୍ମ ପ୍ରତି ବହୁ ଗୁରୁତ୍ୱ ଆରୋପ କରାଯାଇଛି । ତହିଁରେ ଲେଖାଅଛି ଏହା ଶୁଷ୍କ ହେଉ ବା ବାସି ହୋଇଥାଉ କିମ୍ବା ଦୂର ଦେଶକୁ ଅନ୍ୟଦ୍ୱାରା ନିଆ ହୋଇଥାଉ ତାହାକୁ ପ୍ରାପ୍ତିମାତ୍ରେ ଚିନ୍ତା ନକରି ତତ୍‌କ୍ଷଣାତ ସେବା କରିବ । କୈବଲ୍ୟ ଚାନ୍ଦ୍ରାୟଣ ଆଦି ମହାବ୍ରତମାନଙ୍କରେ, ହରିବାସରାଦିରେ ସେବନ୍ୟ ଯୋଗ୍ୟବୋଲି କାଳସାର ନିତ୍ୟାଚାର ପଦ୍ଧତି ପ୍ରଭୃତି ସ୍ମୃତିଗ୍ରନ୍ଥରେ ଉଲ୍ଲିଖିତ ଅଛି । 'ତନ୍ତ୍ରଚୂଡାମଣି' ଗ୍ରନ୍ଥରେ ଲେଖାଅଛି 'ଯଦି କେହି ମହୋଦଧିରେ ସ୍ନାନ କରି କଳ୍ପବୃକ୍ଷକୁ ସ୍ପର୍ଶ କରି ବଟସାଗର ମଧ୍ୟସ୍ଥିତ ପବିତ୍ର ଭୂମିରେ ଶ୍ରୀମନ୍ଦିର ମଧ୍ୟରେ ବିଷ୍ଣୁ କୈବଲ୍ୟ ଦ୍ୱାରା ଆପଣାର ପିତୃପୁରୁଷଙ୍କୁ ପିଣ୍ଡଦାନ କରନ୍ତି, ତେବେ ତାଙ୍କର ପିତୃଗଣ ପରମ ସନ୍ତୋଷ ଲାଭ କରି ପରମ ଗତି ପ୍ରାପ୍ତି ହୋଇଥାଆନ୍ତି' ।

ଜଗନ୍ନାଥଙ୍କ ଅନ୍ନକୁ କୈବଲ୍ୟ ରୂପେ ମର୍ଯ୍ୟାଦା ଦେବା ସଂପର୍କରେ ଏକ ପ୍ରସଙ୍ଗ ଏଠାରେ ଉଲ୍ଲେଖଯୋଗ୍ୟ । ପରମ ଭାଗବତ ଆଚାର୍ଯ୍ୟ ବଲ୍ଲଭ ପୁରୀକୁ ଆସି ଜଗନ୍ନାଥଙ୍କୁ ଅତ୍ୟନ୍ତ

ପ୍ରେମର ସହିତ ଦର୍ଶନ କରି ଶାସ୍ତ୍ରୀୟ ବିଧିରେ କ୍ଷେତ୍ରବାସ କରୁଥିଲେ। ସେ ଏକଦା ଶିଷ୍ୟମାନଙ୍କ ସହ ଶାସ୍ତ୍ର ଚର୍ଚ୍ଚା କରୁଥିଲା ବେଳେ ଜଗନ୍ନାଥଙ୍କ ମହାପ୍ରସାଦକୁ 'ଅନ୍ନବ୍ରହ୍ମ' ବୋଲି ପ୍ରତିପାଦନ କଲେ। ଏହାର କିଛି ଦିନ ପରେ ଦିନେ ଏକାଦଶୀ ତିଥିରେ ଶିଷ୍ୟମାନେ ନିଜର ଗୁରୁଙ୍କୁ ପରୀକ୍ଷା କରିବା ପାଇଁ ଆଗ୍ରହୀ ହୋଇ ଯଥା ସମୟରେ ଜଗନ୍ନାଥଙ୍କ ମହାପ୍ରସାଦ ଘେନି ଗୁରୁଙ୍କୁ ପ୍ରଣାମ ଓ ପରିକ୍ରମା କରି ତାହା ଆଚାର୍ଯ୍ୟଙ୍କ ହାତକୁ ବଢାଇ ଦେଇ ଉତ୍ସୁକ ଭାବରେ ପ୍ରାପ୍ତି ମାତ୍ରେଣ ଭୋକ୍ତବ୍ୟମ୍ ବାସ୍ତବରେ ଆଚରିତ ହେଉଛି କି ନାହିଁ ତାହା ଜାଣିବା ପାଇଁ ଅପେକ୍ଷା କରି ରହିଲେ, ଉପବାସୀ ଆଚାର୍ଯ୍ୟ ଶିଷ୍ୟମାନଙ୍କ ଉଦ୍ଦେଶ୍ୟ ଜାଣିପାରି ନିଜର ଆଚରଣକୁ ଅକ୍ଷୁଣ୍ଣ ରଖିବା ନିମନ୍ତେ 'ମହାପ୍ରସାଦ ମହିମା' କୀର୍ତ୍ତନ କରିବା ସଙ୍ଗେସଙ୍ଗେ ଭଗବତ ଭାବରେ ତନ୍ମୟ ହୋଇ କର ପାତ୍ରରେ ଅନ୍ନବ୍ରହ୍ମକୁ ଧରି ଶତାଧିକ ଶ୍ଳୋକ ରଚନା ପୂର୍ବକ ମହାପ୍ରସାଦର ସର୍ବପ୍ରକାର ପ୍ରାଧାନ୍ୟ ସ୍ମରଣ କରିବାକୁ ଲାଗିଲେ । ଏପରି କରୁକରୁ ଏକାଦଶୀ ଦିବସ ଅତିବାହିତ ହୋଇଗଲା । ଦ୍ୱାଦଶୀ ପ୍ରବେଶ କାଳରେ ଆଚାର୍ଯ୍ୟ ବଲ୍ଲଭ ପ୍ରସାଦକୁ ଯଥାବିଧି ସେବା କଲେ ।

ଏଣେ ମହାପ୍ରସାଦର ଯଥାବିଧି ମର୍ଯ୍ୟାଦା ରକ୍ଷା ହେଲା, ତେଣେ ନିତ୍ୟାଚାରଗତ ଅଭ୍ୟାସର ମର୍ଯ୍ୟାଦା ମଧ୍ୟ ରକ୍ଷିତ ହେଲା। ଏହି ଆଖ୍ୟାୟିକା ବଲ୍ଲଭକୁଳ ବୈଷ୍ଣବମାନଙ୍କର ଅତି ପ୍ରସିଦ୍ଧ ଚରିତ ରୂପେ ଗଣ୍ୟ ଓ ମାନ୍ୟ ହୋଇଆସିଛି। ଏହିପରି ଏକ ଘଟଣା ଶ୍ରୀକୃଷ୍ଣ, ଚୈତନ୍ୟ ଓ ବକ୍ରେଶ୍ୱରର ପଣ୍ଡିତଙ୍କ ମଧ୍ୟରେ ଘଟିଥିଲା ଓ ବକ୍ରେଶ୍ୱରାଚାର୍ଯ୍ୟ 'ମହାପ୍ରସାଦ ଶତକ' ନାମଧେୟ ଏକଶତ ଶ୍ଳୋକ ରଚନା କରିଯାଇଥିଲେ। ସେହିପରି ଆନନ୍ଦ ସରସ୍ୱତୀ ମଧ୍ୟ ମହାପ୍ରସାଦର ଯଥାବିଧି କ୍ରମ ଅନୁସରଣ କରିବା ପାଇଁ 'କୈବଲ୍ୟ ସେବନ ବିଧି' ନାମକ ଏକ ସଂସ୍କୃତ ଗ୍ରନ୍ଥ ରଚନା କରିଯାଇଛନ୍ତି।

ଏଥିରୁ ଜଣାଯାଏ ଯେ, ବହୁ ପ୍ରାଚୀନ କାଳରୁ ମହାପ୍ରସାଦର ଆଧ୍ୟାତ୍ମିକ ପ୍ରତିଷ୍ଠା ରହିଆସିଛି। ସାଧାରଣତଃ ବିଷ୍ଣୁଙ୍କର ସ୍ୱୀକୃତ ଅନ୍ନ ପ୍ରତି ଯେଉଁ ଯେଉଁ ଶବ୍ଦ ବ୍ୟବହାର କରାଯାଏ, ତାହା ମୁଖ୍ୟତଃ ଗୁଣ, କର୍ମ ଅନୁଯାୟୀ ଚତୁର୍ବିଧ ଯଥା– ପ୍ରସାଦ, ମହାପ୍ରସାଦ, କୈବଲ୍ୟ ଓ ମଣୋହି। ପ୍ରସାଦ– ଯେକୌଣସି ସ୍ଥାନରେ ନିବେଦିତ ଦ୍ରବ୍ୟ ଅର୍ଥାତ ଦୂରରୁ ସମର୍ପିତ ଦ୍ରବ୍ୟ ହେଉଛି ନୈବେଦ୍ୟ। ମହାପ୍ରସାଦ– ଶ୍ରୀ ପ୍ରସାଦର ଷଡଙ୍ଗ ସଂସ୍କାର ହେଲା, 'ଏହା ମହାଲକ୍ଷ୍ମୀଙ୍କ ଦ୍ୱାରା ରନ୍ଧନ ହେଉଅଛି ଅର୍ଥାତ ବୈଷ୍ଣବାଗ୍ନିରେ ଅନାଦି ପାଚିତ ହେଉଛି'। ଶ୍ରୀଯନ୍ତ୍ର ରୂପକ ଠାଆ ବା ମୁରୁଜରେ ନୈବେଦ୍ୟ ନିମନ୍ତେ ସ୍ୱର୍ଣ୍ଣମୟ ପାତ୍ରରେ ପରିବେଷିତ ବା ସ୍ଥାପିତ ହେଉଅଛି। 'ମନ୍ତ୍ରରାଜ' ବା ଦ୍ୱାବିଂଶାକ୍ଷରୀ ନୃସିଂହ ତାପନୀୟ ପାତାଳ ନୃସିଂହ ମନ୍ତ୍ରରେ ପ୍ରେକ୍ଷିତ ହେଉଛି। ଗୋବିନ୍ଦଙ୍କ ଅଷ୍ଟାଦଶାକ୍ଷର ଗୋପାଳମନ୍ତ୍ରରେ ନିବେଦିତ ବା ନୈବେଦ୍ୟ ହେଉଅଛି। ଅଷ୍ଟସାତ୍ତ୍ୱିକ ବୈଷ୍ଣବମାନଙ୍କୁ ଅବଶେଷାନ୍ନ ବଳି ଦିଆଯାଉଅଛି। ଅମୋଣିହା–ଯାହା ନୈବେଦ୍ୟ ପୂର୍ବରୁ ମନ୍ତ୍ରନ୍ୟାସିତ ଭାବରେ ପ୍ରସ୍ତୁତ ହୁଏ । ଦିବାକର ଦାଶ ତାଙ୍କ 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ ଲେଖିଛନ୍ତି, ଅମୋଣିହା ରସଦ୍ରବ୍ୟଂ ଚ ସୁରାସୁର ସୁଦୁଲର୍ଲଭଂ, ଗୁରୁଶିଷ୍ୟ ବିଚାରେତୁ ସାରଂ ବ୍ରହ୍ମ ସୁସିଦ୍ଧକମ୍ ।

ଜଗନ୍ନାଥଙ୍କଠାରୁ ତାଙ୍କ କୈବଲ୍ୟ ଅଧିକ ପ୍ରିୟ । 'ସ୍ୱୟଂ ଭଗବାନଙ୍କ ମୁଖନିସୃଃତ ବାଣୀ ହେଲା ମତ୍ କୈବଲ୍ୟ ମମାଧିକ୍ୟମ୍'– ତା ନହୋଇଥିଲେ କବି ସମ୍ରାଟ ଉପେନ୍ଦ୍ର ତାଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ଶ୍ରୀକ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନାରେ 'ଜଗନ୍ନାଥ' ଏହି ଯୁଗ୍ମ ଶବ୍ଦରେ (ଜଗଦ୍‌ନାଥ) ସାକ୍ଷାତ୍ ଅନ୍ନବ୍ରହ୍ମଙ୍କର ପରିକଳ୍ପନା କରିନଥାନ୍ତେ ଏବଂ ଏହି ଅନ୍ନବ୍ରହ୍ମ ହିଁ ଭକ୍ତି ପ୍ରଦାୟକ ଜଗନ୍ନାଥଙ୍କ ସ୍ୱରୂପକୁ ବୈଷ୍ଣବମାନଙ୍କ ସମ୍ମୁଖରେ ଉଦ୍‌ଘାଟିତ କରି ଦେଉଛି ବୋଲି ପ୍ରକାଶ୍ୟ ଭାବେ ମତବ୍ୟକ୍ତ କରିନଥାନ୍ତେ । 'ଭକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ, ବୈଷ୍ଣବ ବିହୁନେ କେବା ଜାଣିବ ସଂସାରେ'। ଯେଉଁମାନେ ଜଗନ୍ନାଥଙ୍କ ବିଗ୍ରହରେ ରାଧା ଓ କୃଷ୍ଣ (ଜଗତ ମାୟା ବା ପ୍ରକୃତି ଅର୍ଥାଡ୍ ରାଧା ନାଥ ପୁରୁଷ ବା ସ୍ୱାମୀ ଅର୍ଥାଡ୍ କୃଷ୍ଣ )ଙ୍କର ପରିକଳ୍ପନା କରନ୍ତି, ସେମାନେ ହୁଏତ ଜାଣନ୍ତି ନାହିଁ ଯେ, କବୀନ୍ଦ୍ର ଉପେନ୍ଦ୍ର 'ଜଗନ୍ନାଥ' ଏହି ଯୁକ୍ତାକ୍ଷର ମଧ୍ୟରେ 'ନ୍ନ' ଅର୍ଥାଡ୍ ଅନ୍ନବ୍ରହ୍ମଙ୍କୁ ସାକ୍ଷାତ୍ ପ୍ରତ୍ୟକ୍ଷ କରି ବୈଷ୍ଣବୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇଅଛନ୍ତି।

ମନେ ରଖିବାକୁ ହେବ ଯେ, ମହାପ୍ରସାଦ ସେବନରେ ଶୁଦ୍ଧ ଆଚରଣ ସର୍ବାଦୌ ଗ୍ରହଣୀୟ । ଏଥିପାଇଁ କୈବଲ୍ୟକାମୀ ଭକ୍ତ କୈବଲ୍ୟ ମୁକ୍ତି ଲାଭ କରିବା ପାଇଁ ଯୁଗେଯୁଗେ ଆଗ୍ରହୀ ହୋଇଥାଏ । ଏହା ଆଧ୍ୟାତ୍ମ ପ୍ରାଣ ପ୍ରତ୍ୟେକ ଉତ୍କଳୀୟଙ୍କ ପକ୍ଷେ କମ୍ ଗୌରବର କଥା ନୁହେଁ ।

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ–୮

❖ ❖ ❖

# ପ୍ରଥମ ଓଡ଼ିଆ ମହିଳା ରାଜ୍ୟପାଳ

**ସୁରେନ୍ଦ୍ରନାଥ ପଣ୍ଡା**

ସାମ୍ବିଧାନିକ ବ୍ୟବସ୍ଥା ଅନୁଯାୟୀ ପ୍ରତ୍ୟେକ ରାଜ୍ୟର ଶାସନ ରାଜ୍ୟପାଳଙ୍କ ନାମରେ ଚାଲେ । ରାଜ୍ୟପାଳଙ୍କୁ ସାହାଯ୍ୟ ଓ ସହଯୋଗ କରିବା ନିମନ୍ତେ ଏକ ମନ୍ତ୍ରୀ ପରିଷଦ ରହିଛି । ମନ୍ତ୍ରୀ ପରିଷଦର ପରାମର୍ଶ ଅନୁଯାୟୀ ରାଜ୍ୟ ଶାସନ ଚାଲେ । ଆମ ରାଜ୍ୟ ଓଡ଼ିଶା ଭଳି ପ୍ରତ୍ୟେକ ରାଜ୍ୟରେ ରାଜ୍ୟପାଳ ନିଯୁକ୍ତି ହୋଇଥାନ୍ତି । ରାଜ୍ୟପାଳ ପଦବୀ ଏକ ଗୁରୁତ୍ୱପୂର୍ଣ୍ଣ ପଦବୀ । ସାମ୍ବିଧାନିକ ବ୍ୟବସ୍ଥା ଅନୁଯାୟୀ ଏହି ପଦବୀର ଅତ୍ୟନ୍ତ ମର୍ଯ୍ୟାଦା ରହିଅଛି ।



ଗତ କିଛି ବର୍ଷ ହେଲା ରାଜ୍ୟପାଳ ପଦବୀକୁ ନେଇ ଅନେକ ଝଡ ଝଞ୍ଜା ସାରା ଦେଶରେ ସୃଷ୍ଟି ହୋଇଛି । କେନ୍ଦ୍ରରେ ଶାସନ କରୁଥିବା ଦଳ ତାଙ୍କ ମନୋନୀତ ବ୍ୟକ୍ତିଙ୍କୁ ରାଜ୍ୟପାଳଭାବେ ପଠାଇ ରାଜ୍ୟମାନଙ୍କରେ ନିଯୁକ୍ତ କରନ୍ତି । କିନ୍ତୁ ଆମ ଓଡ଼ିଶାର ଅନେକ ବ୍ୟକ୍ତି ରାଜ୍ୟପାଳ ଭାବେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ବହନ କରି କେବଳ ରାଜ୍ୟ ପାଇଁ ନୁହଁ ସାରା ଦେଶ ପାଇଁ ଦକ୍ଷ ପ୍ରଶାସନର ସୁନାମ ଆଣିପାରିଛନ୍ତି । ବର୍ତ୍ତମାନ ବିଶିଷ୍ଟ ଆଦିବାସୀ ନେତ୍ରୀ ଦ୍ରୌପଦୀ ମୁର୍ମୁ ଝାଡଖଣ୍ଡର ରାଜ୍ୟପାଳ ଭାବେ ଅବସ୍ଥାପିତ ହୋଇଛନ୍ତି । ଏହା ପୂର୍ବରୁ ଡକ୍ଟର ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ, ବିଶ୍ୱନାଥ ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଲୋକନାଥ ମିଶ୍ର, ଚିନ୍ତାମଣି ପାଣିଗ୍ରାହୀ, ଜାନକୀବଲ୍ଲଭ ପଟ୍ଟନାୟକ ପ୍ରଭୃତି ବିଭିନ୍ନ ରାଜ୍ୟର ରାଜ୍ୟପାଳଭାବେ ଦାୟିତ୍ୱ ବହନ କରି ନିଜର ଦକ୍ଷତା ପ୍ରତିପାଦିତ କରିପାରିଛନ୍ତି ।

ଝାଡଖଣ୍ଡର ନୂତନ ରାଜ୍ୟପାଳ ମାନ୍ୟବର ଶ୍ରୀମତୀ ଦ୍ରୌପଦୀ ମୁର୍ମୁ ବିଶିଷ୍ଟ ଆଦିବାସୀ ନେତ୍ରୀ ହିସାବରେ ଆମ ରାଜ୍ୟରେ ସୁନାମ ଅର୍ଜନ କରିପାରିଥିଲେ । ଓଡ଼ିଶାର ରାଇରଙ୍ଗପୁର ସଂରକ୍ଷିତ ଆସନରୁ ୨୦୦୦ ଏବଂ ୨୦୦୪ ମସିହାରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ପ୍ରଥମେ ବାଣିଜ୍ୟ ଓ ପରିବହନ ଏବଂ ପରେ ମତ୍ସ୍ୟ ଓ ପଶୁସମ୍ପଦ ମନ୍ତ୍ରୀଭାବେ ସ୍ୱାଧୀନ ଦାୟିତ୍ୱ ଗ୍ରହଣ କରି ତାଙ୍କର ପ୍ରଶାସନିକ ଦକ୍ଷତା ଦେଖାଇ ପାରିଥିଲେ ।

ଆଦିବାସୀମାନଙ୍କ ଉନ୍ନତି ପାଇଁ ତାଙ୍କର ଅବଦାନ ପ୍ରଶଂସନୀୟ । ନିଜେ ଜଣେ ଆଦିବାସୀ ହୋଇଥିବାରୁ ସେମାନଙ୍କର ଜୀବନ ଜୀବିକା ଅନୁଧ୍ୟାନ କରିବାର ଅନେକ ସୁଯୋଗ ସେ ପାଉଛନ୍ତି । ଆଦିବାସୀ ଅଞ୍ଚଳର ବିକାଶ ଏବଂ ଜାତୀୟ ସ୍ରୋତରେ ସେମାନଙ୍କୁ ସାମିଲ କରିବା ନିମନ୍ତେ ସେ ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରିଛନ୍ତି । ଝାଡଖଣ୍ଡ ଏକ ଆଦିବାସୀ ବହୁଳ ରାଜ୍ୟ । ଝାଡଖଣ୍ଡର ଆଦିବାସୀମାନଙ୍କ ପାରିବାରିକ ସମ୍ବନ୍ଧ ଓଡ଼ିଶାର ମୟୂରଭଞ୍ଜ, କେନ୍ଦୁଝର ଏବଂ ବାଲେଶ୍ୱର ଜିଲ୍ଲା ସହ ରହିଛି । ସେହିଭଳି ଝାଡଖଣ୍ଡରେ ଅନେକ ଓଡ଼ିଆ ଅଞ୍ଚଳ ମଧ୍ୟ ରହିଛି । ଏଣୁ ଶ୍ରୀମତୀ ମୁର୍ମୁଙ୍କ ନିଯୁକ୍ତି ଝାଡଖଣ୍ଡ ଓଡ଼ିଆ ଏବଂ ଆଦିବାସୀଙ୍କ ଉନ୍ନତି ନିମନ୍ତେ ଏକ ଅପୂର୍ବ ସୁଯୋଗ ଆଣିଦେଇଛି ।

◆ ◆ ◆

ମାନ୍ୟବର ରାଜ୍ୟପାଳ ଶ୍ରୀମତୀ ଦ୍ରୌପଦୀ ମୁର୍ମୁଙ୍କ ପୂର୍ବରୁ କୌଣସି ଓଡ଼ିଆ ମହିଳା ରାଜ୍ୟପାଳ ପଦବୀ ଭଳି ଏକ ଗୁରୁତ୍ୱପୂର୍ଣ୍ଣ ପଦବୀ ପାଇ ନଥିଲେ । ସମ୍ବିଧାନ ପ୍ରଣୟନ ହେବାର ବହୁ ବର୍ଷ ପରେ ଅନ୍ତତଃ ଜଣେ ଓଡ଼ିଆ ଆଦିବାସୀ ମହିଳାଙ୍କୁ ରାଷ୍ଟ୍ରପତି ଏହି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେଇଥିବାରୁ ସମସ୍ତ ଓଡ଼ିଶାବାସୀ ଚିର କୃତଜ୍ଞ । ଆମ୍ଭେମାନେ ମଧ୍ୟ ମାନ୍ୟବର ରାଜ୍ୟପାଳ ମୁର୍ମୁଙ୍କ ଦକ୍ଷତାକୁ ସେତେବେଳର ଓଡ଼ିଶାର ମନ୍ତ୍ରୀ ହିସାବରେ ଅଙ୍ଗେ ଲିଭାଇଛୁ । ବର୍ତ୍ତମାନ ମଧ୍ୟ ସେ ରାଜ୍ୟପାଳ ପଦବୀର ଗୁରୁତ୍ୱ ଉପଲବ୍ଧି କରି କେବଳ ରାଜ୍ୟ ପାଇଁ ନୁହେଁ, ସାରା ଦେଶ ପାଇଁ ଏକ ଗୌରବ ଆଣିବେ, ଏହି ଆଶା ଓ ବିଶ୍ୱାସ ସମସ୍ତ ଓଡ଼ିଶାବାସୀଙ୍କର ରହିଛି । ଝାଡଖଣ୍ଡରେ ଅନେକ ସମୟରେ ରାଜନୈତିକ ଅସ୍ଥିରତା ଦେଖାଯାଏ । କିନ୍ତୁ ମାନ୍ୟବର ରାଜ୍ୟପାଳ ଶ୍ରୀମତୀ ମୁର୍ମୁ ସମ୍ବିଧାନର ଗଣ୍ଡି ଭିତରେ କାର୍ଯ୍ୟ କରି ନିଜର ପାରଦର୍ଶିତା ଦେଖାଇବାରେ ଜଣେ ସଫଳ ରାଜ୍ୟପାଳ ହେବେ ଏବଂ ଇତିହାସ ତାଙ୍କୁ ସବୁ ସମୟରେ ଦକ୍ଷତା ଏବଂ ସଚ୍ଚୋଟତା ପାଇଁ ମନେରଖିବ । ଓଡ଼ିଶାବାସୀ ଏହା ଭଲ ରୂପେ ଜାଣନ୍ତି ।

ଆଇନ୍‌ଜୀବୀ, ଆସିକା

# ପାଦେପାଦେ ତୁ ଓଡ଼ିଆ ବୋଲାଉ

ହଂସନାଥ ମୁଦୁଲି

ସାରା ଜଗତର ବୋଲି ଯିଏ ଯେତେ କହୁ
ପାଦେପାଦେ ତୁ କିନ୍ତୁ ଓଡିଆ ବୋଲାଉ ।
ସକାଳୁ ଉଠି ଡାଳରେ ପାଣି ଖୋଜୁଥାଉ
ମୁହଁଧୋଇ କୁଳିକରି ଦେଖାଉ ତୁ ଭାଉ
ସାରା ଜଗତର . . . . . . . . . ବୋଲାଉ ।
ନୂଆ ବସ୍ତ୍ର ପାଇଁ ପୁଣି ଅଝଟ ତୁ' ହେଉ
ବାରମାସ ତେର ପର୍ବେ ଝଟକ ଦେଖାଉ ।
ତୁ' ରାଗୁ ତୁ' ରୁଷୁ ଶେଷେ ବୁଝିଯାଉ
ବୁଝିଯିବା ପାଇଁ କେତେ ବାହାନାରେ ରହୁ ।
ଶାଗଭାତ ଆଳୁ ବଡି କେତେ ଚିଜ ଆଉ
ଓଡିଆଣୀ ପରଷାରେ ମନ ଦେଇଥାଉ ।
ବିଞ୍ଚଣା ତୋ ଲୋଡା ହୁଏ ହେଲେ ଗ୍ରୀଷ୍ମ ଦାଉ
ହେମନ୍ତରେ ଉଷ୍ମବସ୍ତ୍ର ପୁଣି ଘୋଡି ହେଉ ।
ତୁ' ଗାଧୋଉ ଖାଇପିଇ ଆରାମରେ ଶୋଉ
ଖିଲିପାନ ଖାଇ ଓଠ ନାଲି କରିଥାଉ ।
ପର୍ବ ପର୍ବାଣିରେ ପାଟି ଲାଳସାରେ ରହୁ
କାକରା ବା ଆରିସାର ସ୍ୱାଦ ଟିକେ ନେଉ ।
ଗୀତଗୋବିନ୍ଦ ନ ଶୁଣି ନିଦ୍ରା ତୁ' ନ ଯାଉ
ନିଦରେ ବ୍ୟାଘାତ ଡରେ ଦ୍ୱାର ଦେଇ ଶୋଉ ।
ଅମାନିଆ ହୋଇ ପୁଣି ଅଧିକ ଗାଧୋଉ
ଜ୍ୱର ସର୍ଦ୍ଦି ପ୍ରକୋପରେ ମୁହଁ ଢାଙ୍କି ଶୋଉ ।
ବଇଦ ଆସିବା ଯାଏ ତୁ' ଶୋଇଥାଉ
ଏ ମାଟିର ଔଷଧରେ ଭଲ ହୋଇଯାଉ ।
ରଥ ଚଢି ବଡଦାଣ୍ଡେ ବାହାରକୁ ଯାଉ
ଭକତଙ୍କ ମନଜାଣି ବରଦାନ ଦେଉ ।
ମାଉସୀ ମାଆର ହାତୁ ପୋଡପିଠା ଖାଉ
ସ୍ନେହର ବନ୍ଧନେ ତୁ' ବାନ୍ଧି ହୋଇଯାଉ ।
ସଭିଙ୍କ ଅଳି ଅର୍ଦ୍ଦଳୀ ତୁ' ବୁଝିଥାଉ
ନିମିଷେ ସବୁରି ଦୁଃଖ ତୁ' ହରି ନେଉ
ସାରା ଜଗତର . . . . . . . . . ବୋଲାଉ ।

ଖଣ୍ଡଗିରି (ଡୁମୁଡୁମା-କ)
ଭୁବନେଶ୍ୱର – ୭୫୧୦୩୦

# ବୀର ଓଡ଼ିଆଙ୍କ ଦୁଃସାହସିକ ଜଳଯାତ୍ରା

ପରୀକ୍ଷିତ ମିଶ୍ର

ଭାରତୀୟ ସଭ୍ୟତା ୫୦୦୦ ବର୍ଷରୁ ଅଧିକ ପୁରାତନ । ଏଠାରେ ଖ୍ରୀ.ପୂ. ୭୦୦୦ ବେଳକୁ କୃଷିକାର୍ଯ୍ୟ ହେଉଥିବା ଜଣାଯାଏ । ଖ୍ରୀ.ପୂ. ୨୬୦୦ରେ ସିନ୍ଧୁ ନଦୀର ଉପତ୍ୟକାରେ ସ୍ଥାପିତ ହୋଇଥିଲା ସହରୀ ସଭ୍ୟତା । ବୁଦ୍ଧ ଓ ଜୈନ ଧର୍ମ ଜାତିଭେଦଜନିତ ବୈଦିକ ହିନ୍ଦୁଧର୍ମ ବିରୋଧରେ ପ୍ରତିକ୍ରିୟା ସ୍ୱରୂପ ପ୍ରାୟ ଖ୍ରୀ.ପୂ. ୬୦୦ରେ ଜନ୍ମ ନେଲେ ।

ବର୍ତ୍ତମାନର ଆନ୍ଧ୍ର ପ୍ରଦେଶ, ଛତିଶଗଡ଼, ଝାଡ଼ଖଣ୍ଡ ଏବଂ ପଶ୍ଚିମବଙ୍ଗ ପରିବେଷ୍ଟିତ ଓଡ଼ିଶା ପୂର୍ବରୁ ଓଡ୍ର ବା ଔଡ୍ର, ଉତ୍କଳ ଓ କଳିଙ୍ଗ ନାମରେ ତିନୋଟି ପ୍ରଦେଶରେ ବିଭକ୍ତ ଥିଲେ । ଏଠାରେ ଆର୍ଯ୍ୟ ଓ ଦ୍ରାବିଡ଼ ସମ୍ମିଶ୍ରଣରେ ଏକ ନୂତନ ସଭ୍ୟତା ଗଢ଼ିଉଠିଲା ଯଦିଓ ଆଦ୍ୟ କାଳରେ ଏହା ଶବର ଅଧ୍ୟୁଷିତ ଅଞ୍ଚଳ ଥିଲା । ଐତିହାସିକ ଏବଂ ଭୌଗୋଳିକ ଦୃଷ୍ଟିରୁ ଏହା ଯେ କୌଣସି ନାମ ଏବଂ ସ୍ଥିତିରେ କଥିତ ହେଲେ ହେଁ ସର୍ବଦା ଭାରତବର୍ଷର ଅବିଚ୍ଛେଦ୍ୟ ଅଙ୍ଗ ଥିଲା । ଭାରତ ସ୍ୱାଧୀନତା ପ୍ରାପ୍ତିର ବହୁ ବର୍ଷ ପୂର୍ବରୁ କବିପ୍ରାଣ ପୁଣ୍ୟାତ୍ମା ଗୋପବନ୍ଧୁ 'ବନ୍ଦୀର ଆତ୍ମକଥା'ରେ ଭାରତରେ ଓଡ଼ିଶାର ସ୍ଥାନ ନିର୍ଦ୍ଧାରଣ କରିଥିଲେ :

ଜଗତ ସରସେ ଭାରତ କମଳ
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।

ଏଠାରେ ଉଲ୍ଲେଖନୀୟ ଯେ ଭାରତୀୟ ଜନତା ଛ'ରୁ କମ୍ ଗୋଷ୍ଠୀର ଜାତିଗତ ଉପାଦାନରେ ଜନ୍ମ ହୋଇଥିଲେ । ଯଥା ନିଗ୍ରୋଆଇଟ, ପ୍ରୋଟୋ ଅଷ୍ଟ୍ରୋଲୟଡ୍ସ୍, ମଙ୍ଗୋଲୟଡସ୍ ଏବଂ ମେଡ଼ିଟରିଆନ, ଆଲପାଇନ୍, ଡାଇନାରିକା ଏବଂ ଆରମୋନୋ– ଏକ କେନ୍ଦ୍ର ଏସିଆର ଏକ ନିମ୍ନଗୋଷ୍ଠୀରେ ଜନ୍ମ ହୋଇଥିଲେ । ସେମାନେ ବେଙ୍ଗଲ, ଓଡ଼ିଶା, ଗୁଜୁରାଟ ଇତ୍ୟାଦି ସ୍ଥାନର ସମସ୍ତ ଲକ୍ଷଣ ବହନ କରୁଥିଲେ । ବର୍ଷ ପୂର୍ବରୁ ସେମାନେ ମୃତ୍ୟୁ ପରେ ଜୀବନ ଥିବାର ବିଶ୍ୱାସ କରୁଥିଲେ । ତେଣୁ ମଣିଷର ଶବକୁ ସନ୍ତୁଷ୍ଟ କରିବାକୁ ଏବଂ ପରବର୍ତ୍ତୀ ଜୀବନର ପ୍ରସ୍ତୁତି ପାଇଁ ପଥର ଯନ୍ତ୍ରପାତି ଏବଂ ପଶୁଙ୍କ ଅଂଶ ସମାଧି ଦିଆଯାଉଥିଲା । ସେମାନଙ୍କର ଧାରାବାହିକ ଜୀବନ ଶୈଳୀର ବିବରଣର ଅଭାବରୁ ନୃତତ୍ତ୍ୱବିତ୍‌ଙ୍କ ଗବେଷଣାଲବ୍ଧ ବ୍ୟାଖ୍ୟାନକୁ ଇତିହାସ ରୂପେ ଗ୍ରହଣ କରି ନିଆଯାଏ ।

ସମ୍ରାଟ ଅଶୋକ କଳିଙ୍ଗକୁ ଆକ୍ରମଣ କଲାବେଳେ ଏହା ଏକ ସୁସଂଗଠିତ ରାଜ୍ୟ ଥିଲା । ଏହାର ଶକ୍ତିଶାଳୀ ସୈନ୍ୟବାହିନୀ ଥିଲା । ଆର୍ଯ୍ୟ ସଂସ୍କୃତି, ବୈଦିକ ଧର୍ମ, ଜୈନ ଓ ବୌଦ୍ଧଧର୍ମ ଭାରତର ଉତ୍ତରରୁ ପ୍ରସାରିତ ହୋଇଥିଲା । ପ୍ରାୟତଃ ଖ୍ରୀ.ପୂ. ୩୦୦ ବେଳକୁ ଦକ୍ଷିଣ ଏସିଆ ଦେଶମାନଙ୍କରେ ବୀର ଓଡ଼ିଆ ନାବିକମାନେ ନୌବାଣିଜ୍ୟ ସହିତ ଉପନିବେଶ ସ୍ଥାପନ କରିଥିଲେ । ସେମାନଙ୍କ ସାହସ ପ୍ରଶଂସନୀୟ ଥିଲା । ପୁରାତନ କାଳରେ କଳିଙ୍ଗ ଉତ୍ତର ଆନ୍ଧ୍ର ପ୍ରଦେଶ, ଓଡ଼ିଶାର ଅଧିକାଂଶ ଅଞ୍ଚଳ ଏବଂ ମଧ୍ୟପ୍ରଦେଶର କିଛି ଅଂଶ ନେଇ ଗଠିତ ହୋଇଥିଲା । ନନ୍ଦ ବଂଶର ପ୍ରତିଷ୍ଠାତା ମହାପଦ୍ମ ଏହାକୁ ଖ୍ରୀ.ପୂ. ୪୦୦ରେ ଜୟ କରିଥିଲେ ।

ଚୀନ୍ ପରିବ୍ରାଜକ ହୁଏନ୍‌ସାଂ (ପ୍ରାୟ ୬୩୮ ମସିହା), ଓଡ଼ିଶା ଦେଇ ଉତ୍ତରରୁ ଦକ୍ଷିଣ ଭାରତକୁ ଯାତ୍ରା କରିଥିଲେ । ବେଙ୍ଗଲର ମୁର୍ଶିଦାବାଦ ଜିଲ୍ଲାର କର୍ଣ୍ଣସୁବର୍ଣ୍ଣଠାରୁ ପ୍ରାୟ ୧୪୦ ମାଇଲ ଦୂରରେ ଅବସ୍ଥିତ ଉଡ୍ରେ ପହଞ୍ଚିଥିଲେ । ଉଡ୍ର ରାଜ୍ୟ ମେଦିନାପୁରର ଉତ୍ତରରୁ ଆରମ୍ଭ ହୋଇ ବାଲେଶ୍ୱର, କଟକ ଏବଂ ପୁରୀ ଜିଲ୍ଲାରେ ୪୦୦ ମାଇଲ ବ୍ୟାପି ଥିଲା ।

ଦୂର ଅତୀତରେ ଭାରତୀୟମାନେ ସମୁଦ୍ର ବକ୍ଷରେ ନୌକା ଚାଳନା କରି ବିଦେଶରେ (ମରିସସ୍ ଇତ୍ୟାଦିରେ) ବସତି ସ୍ଥାପନ

କରିଥିଲେ ଏବଂ ଭାରତୀୟ ସଭ୍ୟତା ପ୍ରସାରିତ କରିଥିଲେ । ଏମାନଙ୍କ ମଧ୍ୟରେ ଓଡ଼ିଆ ଅଗ୍ରଗଣ୍ୟ ଥିଲେ । ଗ୍ରୀକ୍ ଜ୍ୟୋତିର୍ବିଜ୍ଞାନୀ ଟଲେମି (୧୦୦–୧୭୦ ମସିହା) ଭୂଗୋଳ ଲେଖିବାକୁ ଯାଇ ଓଡ଼ିଶା ବନ୍ଦରମାନଙ୍କର ତାଲିକା ପ୍ରସ୍ତୁତ କରିଥିଲେ । ଏମାନଙ୍କ ମଧ୍ୟରେ ଥିଲେ ପାଲୁର, ନୈନାରେନା, କଟିକଦମ, କନାନ୍ତର ଏବଂ ମାବେିର ନଦୀ ମୁହାଣ ।

ଗଞ୍ଜାମ ଜିଲ୍ଲାର ପାଲୁର ବ୍ୟତୀତ କାନ୍ନାଗର କଳିଙ୍ଗ ନଗର ହୋଇପାରେ । କେତେକ ଏହାକୁ କୋଣାର୍କ ବିଶ୍ୱାସ କରନ୍ତି । ଅନ୍ୟମାନଙ୍କୁ ଚିହ୍ନଟ କରିବାକୁ ଉଦ୍ୟମ କରାଯାଇ ନାହିଁ, ହୁଏତ ସେମାନେ ସମୁଦ୍ର ଗର୍ଭରେ ଲୀନ ହୋଇଥିବେ । ତେବେ ଋଷିକୁଲ୍ୟା ନଦୀ ମୁହାଣରେ ପାଲୁର ଏକ ପୁରାତନ ବନ୍ଦର ଥିଲା । ଟଲେମିଙ୍କ ବର୍ଣ୍ଣନାରେ ଏହା କୁହାଯାଇଛି ଯେ ଜଳ ଜାହାଜ ମାଲୟ ପରି ଏକ ଦ୍ୱୀପପୁଞ୍ଜକୁ ଯାତ୍ରା କରୁଥିଲା । ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ପାଲୁର ଏକ ସମୃଦ୍ଧିଶାଳୀ ପୋତାଶ୍ରୟ ଥିଲା ।

ନୂତନ ସୌଭାଗ୍ୟ ଅନ୍ୱେଷଣ ଆଶାରେ କଳିଙ୍ଗ ଏବଂ କଙ୍ଗୋଦର ସାଧବ ପୁଅମାନେ ପଣ୍ୟଦ୍ରବ୍ୟ ନେଇ ଜଳପଥରେ ବିପଜ୍ଜନକ ଯାତ୍ରା କରୁଥିଲେ । ସେମାନଙ୍କ ମଧ୍ୟରୁ କେତେକ ଦୂର ଦୂରାନ୍ତ ସ୍ଥାନରେ ସ୍ଥାୟୀ ବସତି ସ୍ଥାପନ କରିଥିଲେ ଯାହା ତିନି ଶହ ବର୍ଷ ଧରି ତିଷ୍ଠି ରହିଥିଲା । ସେମାନେ ଅନେକଗୁଡ଼ିଏ ଦ୍ୱୀପକୁ ନିଜ ଅଧୀନକୁ ଆଣିଥିଲେ । ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗ ସାମ୍ରାଜ୍ୟ ଅକ୍ଷୁଣ୍ଣ ଥିବା ସୂଚନା ମିଳେ । ଏହା ବ୍ୟତୀତ କଳିଙ୍ଗ ସମ୍ରାଟ ୨୦,୦୦୦ ପରିବାରକୁ ଜାଭା ଦ୍ୱୀପକୁ ପଠାଇଥିଲେ । ସେମାନେ ପରିଶ୍ରମୀ ଓ ସୃଜନଶୀଳ ଥିଲେ । ସେଠାରେ ବସତି ସ୍ଥାପନ କରିବା ସହିତ ସଂଖ୍ୟା ବୃଦ୍ଧି କରିଥିଲେ । ସୁବର୍ଣ୍ଣ ଦ୍ୱୀପ ସହିତ କଳିଙ୍ଗର ସମ୍ପର୍କ କେବଳ ଏକ ଜନଶ୍ରୁତି ନଥିଲା, ଐତିହାସିକ ବିବରଣୀରେ ସ୍ଥାନ ପାଇଥିଲା । ଓଡ଼ିଶାରେ ଆର୍ଯ୍ୟ ଏବଂ ଦ୍ରାବିଡ଼ଙ୍କ ମିଶ୍ରଣ ହିନ୍ଦୁ ଧର୍ମକୁ ଉନ୍ନତ କରାଇବା ସହିତ ଏଠାରେ ଈଶ୍ୱର ବିଶ୍ୱାସ ଏବଂ ମନ୍ଦିର ନିର୍ମାଣର ସଭ୍ୟତାର ଅୟମାରମ୍ଭ ହେଲା । ଆଧୁନିକ ଗବେଷଣା ସୁବର୍ଣ୍ଣ ଦ୍ୱୀପ ବା ଇଣ୍ଡୋନେସିଆ, ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଏବଂ ବାଲି ପରି ଅନେକ ଦ୍ୱୀପର ସମ୍ମିଶ୍ରଣ ସୂଚାଏ, ଯାହାର କଳିଙ୍ଗ ସହିତ ସମ୍ପର୍କ ଥିଲା । ଖ୍ରୀଷ୍ଟପର ପ୍ରଥମ ଶତାବ୍ଦୀରେ ଐତିହାସିକ ପ୍ଲିନିଙ୍କ ଦୃଷ୍ଟିରେ ପୁରାତନ କଳିଙ୍ଗର ଉପକୂଳ ଗୋଦାବରୀଠାରୁ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଖ୍ରୀ.ପୂ. ୬୦୦ ବା ୫୦୦ ବେଳକୁ ଓଡ଼ିଶାର ସମୁଦ୍ର ପାରି ବେପାର ବାଣିଜ୍ୟ ଆଖିଦୃଶିଆ ଥିଲା । ମେଘାସ୍ଥିନିସ୍‌ଙ୍କ ବର୍ଣ୍ଣନା ଏହାକୁ ସମର୍ଥନ କରେ । ଖ୍ରୀ.ପୂ. ୪ର୍ଥ ବା ୫ମ ଶତାବ୍ଦୀ ବେଳକୁ କଳିଙ୍ଗ ସିଂହଳ (ବର୍ତ୍ତମାନର ଶ୍ରୀଲଙ୍କା) ସହିତ ହାତୀ ବ୍ୟବସାୟ କରୁଥିବା ସୂଚନା ମିଳେ ।

ପୁରାତନ କାଳରେ ଓଡ଼ିଶାର ସାଧବପୁଅ ସେମାନଙ୍କର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲେ । ଉତ୍କଳର ନୌବାଣିଜ୍ୟ ଉତ୍କର୍ଷତା ଲାଭ କରିଥିଲା ଏବଂ ଏଠାକାର ଉତ୍ପନ୍ନ ପଦାର୍ଥମାନ ବିଦେଶ ବଜାରରେ ଚାହିଦା ସୃଷ୍ଟି କରିଥିଲା । ବନ୍ଦରମାନଙ୍କରେ ନୂତନ ସଭ୍ୟତା ଗଢ଼ି ଉଠୁଥିଲା । ଏଠାକୁ ବିଦେଶୀ ପରିବ୍ରାଜକ ଆକର୍ଷିତ ହୋଇ ଆସୁଥିଲେ । ଆମ ପୁରାତନ ନୌବାଣିଜ୍ୟର ଗାଥା ପୁରାଣମାନଙ୍କରେ ବର୍ଣ୍ଣିତ । ପୁନଶ୍ଚ ବିଦେଶରେ ଉତ୍କଳୀୟ କଳା ଓ ଭାସ୍କର୍ଯ୍ୟ ଆଦୃତ ଓ ପ୍ରଶଂସିତ ହେଉଥିଲା । ଏହା ସମ୍ଭବ ହେଉଥିଲା ଚତୁର, ନିର୍ଭୀକ ସାଧବପୁଅଙ୍କ ଅଦମ୍ୟ ଶ୍ରମ ଏବଂ ନିଖୁଣ ବୌଦ୍ଧିକ ଯୋଜନା ଯୋଗୁଁ । ସାଧାରଣତଃ ସେମାନେ ଶୀତଋତୁ ଆରମ୍ଭରେ ଯାତ୍ରା ଶୁଭାରମ୍ଭ କରୁଥିଲେ । ବର୍ଷାଋତୁ ପୂର୍ବରୁ ବିପୁଳ ଧନ ରତ୍ନ ସହିତ ଫେରୁଥିଲେ । ଖ୍ରୀଷ୍ଟପର ଏକାଦଶ ଶତାବ୍ଦୀ ବେଳକୁ ଜଳଯାତ୍ରାର ଅବକ୍ଷୟ ଆରମ୍ଭ ହେଲା ସମ୍ଭବତଃ ରାଜକୀୟ ପୃଷ୍ଠପୋଷକତା ଅଭାବ, ଅଶାନ୍ତ ସମୁଦ୍ରରେ ଧନ ଜୀବନ ହାନୀ ଏବଂ ହିଂସ୍ର ଜଳଦସ୍ୟୁଙ୍କ ଆକ୍ରମଣ ଯୋଗୁଁ ।

ସାହସୀ ସାଧବପୁଅ ପାଲଟଣା ନାବରେ ବିଭିନ୍ନ ଦ୍ରବ୍ୟ ସହିତ ଜଳଯାତ୍ରା କରୁଥିଲେ । ସେଗୁଡ଼ିକ ଥିଲା ସୂକ୍ଷ୍ମ ପାଟବସ୍ତ୍ର, କଂସା, ପିତଳ ବାସନ, ଆଭୂଷଣ, ଖେଳନା, ସୌଖୀନ ପଦାର୍ଥ, ଧୂଆଁପତ୍ର, କାଷ୍ଠ ଏବଂ ପ୍ରସ୍ତର ମୂର୍ତ୍ତି । ସେମାନେ ପର୍ଯ୍ୟାପ୍ତ ବ୍ୟବସାୟ କରି ସୁନା, ରୂପା, ରତ୍ନ, ମଣିମାଣିକ, ତାଜା ବିଲାତି ଆଳୁ ଓ ବାଇଗଣ, କଖାରୁ ଇତ୍ୟାଦି ପଦାର୍ଥ ନେଇ ଫେରୁଥିଲେ ।

ଓଡ଼ିଆମାନେ ବିଦେଶ ଭୂମି ବା ଦ୍ୱୀପରେ ଭାରତୀୟ ଏବଂ ଓଡ଼ିଆ ସଂସ୍କୃତିର ବିକାଶ, ପ୍ରଚାର, ପ୍ରସାର କରିଥିଲେ ମିଆଁମାର, ମାଲେସିଆ, ଇଣ୍ଡୋନେସିଆ ଏବଂ ଥାଇଲାଣ୍ଡ ପରି ଦେଶରେ । ଏହା ବର୍ତ୍ତମାନ ଅତୀତର ଇତିହାସ । ଏକଦା କଳିଙ୍ଗବାସିନ୍ଦା ଏଠାରେ ରାମାୟଣ ମହାକାବ୍ୟକୁ ପ୍ରଚାର ଏବଂ ପରିଚିତ କରାଇଥିଲେ । ବାଲି ଦ୍ୱୀପରେ ଏପର୍ଯ୍ୟନ୍ତ ହିନ୍ଦୁ ଧର୍ମ ଏବଂ ସଂସ୍କୃତିର ଅଲିଭା ଚିହ୍ନ ବିଦ୍ୟମାନ । ଏହାର ସାକ୍ଷୀ ସ୍ୱରୂପ ହିନ୍ଦୁ ମନ୍ଦିରମାନ ଦଣ୍ଡାୟମାନ । ଇତିହାସର ଏକ ନିର୍ଦ୍ଦିଷ୍ଟ ସମୟ କାଳରେ ଓଡ଼ିଆ ନାବିକ ବା ସାଧବପୁଅଙ୍କ ଉପସ୍ଥିତିର ସ୍ପଷ୍ଟ ପ୍ରମାଣ ମିଳେ ।

ରାଜେନ୍ଦ୍ର ନଗର, କଟକ–୧୦

# ହସ୍ତତନ୍ତ ବସ୍ତ୍ର ଆମ ଐତିହ୍ୟର ପରିଚୟ

ପୁଷ୍ପାଞ୍ଜଳି ପାଇକରାୟ

ମୋ ହେତୁ ପାଇବା ଦିନୁ ମୁଁ ଦେଖିଆସିଛି, ବେତରେ ତିଆରି ସେ ପେଟରାଟା ମୋ ଜେଜେମାର ଅତି ପ୍ରିୟ ଥିଲା । ମଝିରେ ମଝିରେ ଜେଜେମା ମୋର ସେ ପେଟରାକୁ ଖୋଲେ । ଗୁଣୁଗୁଣୁ ଗୀତ ଗାଇ ଗାଇ ସଜାଡ଼େ । ମୋତେ କହେ ଏସବୁ କ'ଣ ଜାଣିଛୁ ନା? ଏସବୁ ମୋର ପ୍ରିୟ ଜିନିଷ! ତା'ର ପ୍ରିୟ ଜିନିଷ ଭିତରେ ଥିଲା ରୁପାର ଖଡ଼ୁ, ମଥାମଣି, ଖିଲ ଦିଆ ମୋଟା ମୋଟା ପାଉଁଜି, ସୁନାର ନୋଥ, ସୁନା ପଇସାର ହାର, ବିଛାମାଳିଆ ହାର ଆଉ ତା'ର ଅତି ପ୍ରିୟ ଜିନିଷଟି ହେଉଛି ସେ କାଳର କୁମ୍ଭପକା ପାଟଶାଢ଼ୀ । ମୁଁ ପଚାରେ, ଏ ଶାଢ଼ୀ ତ ଫାଟି ଗଲାଣି, କାହିଁକି ରଖିଛୁ ? ରାଗିଯାଇ ସେ କହେ, ତୁ ଯା', ତୁ ତ ମୁଣ୍ଡ ଟେକିନୁ, ତୁ କ'ଣ ଜାଣିବୁ! ଆଲୋ ଦୁଣ୍ଡି, ଏଇଟା ମୋ ବାହାଘରର ଶାଢ଼ୀ । ମୋ ଗୋସେଇଁ ଜେଜେମାନେ ତା' ଶ୍ୱଶୁର କାଳେ ତା' ପାଇଁ ସୁନାର ବିଛାମାଳିଆ ହାର ଓ କୁମ୍ଭପକା ପାଟ ଶାଢ଼ୀ ନେଇଥିଲେ ତାଙ୍କ ବୋହୂ ପାଇଁ । ତା' ବାହାଘରର ସେଇ ସ୍ମୃତିକୁ ସେ ସାଇତି ରଖିଥିଲା ସେଇ ପେଟରାରେ । ଆଜି ସିନା ଫ୍ୟାନ୍ସି ଶାଢ଼ୀର ଏତେ ଚାହିଦା, କିନ୍ତୁ କାଳ କାଳ ଧରି ବୋହୂ ପାଇଁ ସମ୍ବଲପୁରୀ ବା ବରହମପୁରୀ ପାଟ ଓ ସୁନାର ହାର ନେବା ଥିଲା ଶ୍ୱଶୁର ଘର ଲୋକଙ୍କ ସମ୍ଭ୍ରାନ୍ତର ପରିଚୟ । ଆମ ସଂସ୍କୃତି, ପରମ୍ପରା ଓ ନିତିଦିନିଆ ଜୀବନ ବିଶେଷ କରି ଆରାଧ୍ୟ ଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବେଶଭୂଷା ସହିତ ଆମର ତନ୍ତବୁଣା ବାନ୍ଧ ପାଟଶାଢ଼ୀ ବା ସୂତାଶାଢ଼ୀ, କେଉଁ ଏକ ଆବହମାନ କାଳରୁ ଯୋଡ଼ି ହୋଇଯାଇଛି ଯେ ତାହାର ସମୟ ଆକଳନ କରିବା କଷ୍ଟକର । ବରଂ ଏତିକି କହିବା ଠିକ୍ ହେବ, ଆମ ହସ୍ତତନ୍ତ ଶାଢ଼ୀ ଆମ ଐତିହ୍ୟର ପରିଚୟ । ଖ୍ରୀ.ପୂ. ୨୬୧ରେ ଅଶୋକଙ୍କ କଳିଙ୍ଗ ଆକ୍ରମଣ ପୂର୍ବରୁ ଆମର ସାଧବମାନେ କଳିଙ୍ଗର ଅନ୍ୟାନ୍ୟ ସାମଗ୍ରୀ ସହ ବାଉଁଶନଳୀରେ ପାଟଶାଢ଼ୀ ପୂରାଇ ନୌଯାତ୍ରା କରି



ଦରିଆପାରି ଦେଶରେ ବିକ୍ରୀ କରୁଥିଲେ । କିମ୍ବଦନ୍ତୀ ଅଛି, ଥରେ ଚୀନ୍‌ର ରାଜାଙ୍କୁ କଳିଙ୍ଗର କିଛି ସାଧବ ପାଟ ଧୋତି ଉପହାର ଦେଇଥିଲେ । ପାଟ ଧୋତି ପିନ୍ଧି ରାଜା ଯେତେବେଳେ ଦରବାରରେ ପହଞ୍ଚିଲେ ତାହା ଏତେ ପତଳା ଥିଲା ଯେ, ପାରିଷଦବର୍ଗ ଟାପରା କରି କହିଲେ, ରାଜାଙ୍କ ଶରୀର ଅନାବୃତ ଅଛି । ଏଥିରେ ଉତ୍‌କ୍ଷିପ୍ତ ହୋଇ ରାଜା କଳିଙ୍ଗର ସେଇ ସାଧବମାନଙ୍କୁ ବନ୍ଦୀ କଲେ । ଖବର ପାଇ କଳିଙ୍ଗର ରାଜା ସୈନ୍ୟସାମନ୍ତ ଧରି ଚୀନ୍ ରାଜାଙ୍କ ସହ ଯୁଦ୍ଧ କରି ସାଧବଙ୍କୁ ମୁକ୍ତ କରିବା ସହ ସେ ରାଜ୍ୟରୁ ଧନ, ରତ୍ନ ବୋହି ଆଣିଥିଲେ । ଏଥିରୁ ସ୍ପଷ୍ଟ ଜଣାପଡ଼େ ସେସମୟରେ ଆମ ପାଟଶାଢ଼ୀ କେତେ ସୂକ୍ଷ୍ମ, ସ୍ୱଚ୍ଛ ଓ ପାଟ ବା ସିଲ୍‌କର ଗୁଣବତ୍ତା କେତେ ଉଚ୍ଚକୋଟୀର ଥିଲା ।

ଓଡ଼ିଶା ହସ୍ତତନ୍ତ ଶାଢ଼ୀ ସାଧାରଣତଃ ଦୁଇଗୋଟି ପ୍ରଣାଳୀରେ ପ୍ରସ୍ତୁତ କରାଯାଉଥିଲେ ହେଁ ଯେଉଁ ପ୍ରଣାଳୀରେ ଏହାର ସୂକ୍ଷ୍ମ କାରୁକାର୍ଯ୍ୟ ଓ କଷ୍ଟସାଧ୍ୟ କାର୍ଯ୍ୟଟି ସମ୍ପାଦିତ ହେଉଛି, ତାହା

ହେଉଛି ବାନ୍ଧକଳା । ଯାହାକୁ ଇଂରାଜୀରେ ଇକତ୍ ବୋଲି କୁହାଯାଏ । ବାନ୍ଧ ଶାଢ଼ୀ ପାଇଁ ମୁଖ୍ୟତଃ ଓଡ଼ିଶା ପ୍ରସିଦ୍ଧିଲାଭ କରିଛି । ରାଜ୍ୟର ସମ୍ବଲପୁର, ସୋନପୁର, ବରଗଡ଼, ବରପାଲି, ବୌଦ୍ଧ, ବଲାଙ୍ଗୀର ଆଦି ସ୍ଥାନରେ ଏହି ବାନ୍ଧଶାଢ଼ୀ ପ୍ରସ୍ତୁତ କରାଯାଏ, କିନ୍ତୁ ସମ୍ବଲପୁର, ବରଗଡ଼ ଏବଂ ବରପାଲିକୁ ଏହାର ଉତ୍ପତ୍ତିସ୍ଥଳ ବୋଲି କୁହାଯାଏ । ବାନ୍ଧକଳାରେ ଅତ୍ୟନ୍ତ ଧୂରୀଣ ଓ ଅଭିଜ୍ଞ ବୁଣାକାରମାନେ ପ୍ରଥମେ ବିଭିନ୍ନ ଡ଼ିଜାଇନ୍ ପ୍ରସ୍ତୁତ କରି ଡ଼ିଜାଇନ୍‌କୁ ଗଣ୍ଠି ବା ବାନ୍ଧି ଦେବା ପରେ ଏହାକୁ ରଙ୍ଗରେ ବୁଡ଼ାଇଥାନ୍ତି । ଏହାପରେ ତନ୍ତରେ ଟାଣି ସୂତା ଏବଂ ଭରଣି ସୂତା ଏହିପରି ଭାବରେ ସୂତା ବା ପାଟସୂତା ରଖି ବାନ୍ଧ ପ୍ରସ୍ତୁତ କରନ୍ତି । ପ୍ରାଚୀନ ବାଣିଜ୍ୟ ପରମ୍ପରାରେ ଚୀନ୍, ଜାପାନ ପରି ଇଜିପ୍ଟରେ ମଧ୍ୟ ଓଡ଼ିଶୀ ବାନ୍ଧର ନମୁନା ରହିଛି । ଗବେଷକମାନେ କୁହନ୍ତି ଇକ୍‌ତ୍ ବା ବାନ୍ଧ ମାଳୟ-ଇଣ୍ଡୋନେସିଆନ୍ ଶବ୍ଦ 'ମେନ୍‌ଗିକତ୍' ଯାହାର ଅର୍ଥ 'ରଙ୍ଗଦେବା'ରୁ ଉଦ୍ଧାର କରାଯାଇଛି । ପାଞ୍ଚ ହଜାର ବର୍ଷ ପୂର୍ବେ ଓଡ଼ିଶା ବାନ୍ଧ ଇଜିପ୍ଟ୍, ଚୀନ୍, ଜାପାନ ମ୍ୟାଲେସିଆ ଆଦି ଦେଶମାନଙ୍କରେ ପ୍ରସିଦ୍ଧିଲାଭ କରିଥିବାବେଳେ ଏହି ଇକ୍‌ତ୍ ପାଖାପାଖି ୧୬୦୦ ଖ୍ରୀଷ୍ଟାବ୍ଦ ବେଳକୁ ଲାଟିନ୍ ଆମେରିକା ଓ ଇଉରୋପ ମହାଦେଶରେ ଅନେକ ଅଞ୍ଚଳରେ ପ୍ରସିଦ୍ଧିଲାଭ କରିଥିଲା । ତେବେ ଓଡ଼ିଶୀ ବାନ୍ଧ ବ୍ୟତୀତ ଆନ୍ଧ୍ରପ୍ରଦେଶ ଓ ଗୁଜୁରାଟରେ ମଧ୍ୟ ଇକତ୍ କଳା ପରିଦୃଷ୍ଟ ହୁଏ । କିନ୍ତୁ ଏହି ଦୁଇ ରାଜ୍ୟରେ ଏକକ ବାନ୍ଧ ବା ସିଙ୍ଗଲ୍ ଇକତ୍ କଳା ବ୍ୟବହାର କରାଯାଉଥିବା ବେଳେ ଓଡ଼ିଶାରେ ହିଁ ଯୁଗ୍ମ ବା ଡ଼ବଲ୍ ଇକତ୍ କଳା ଦ୍ୱାରା ଶାଢ଼ୀ ବୁଣାଯାଏ । ଆମ ରାଜ୍ୟର ସମ୍ବଲପୁର, ସୋନପୁର ବରଗଡ଼ର ଡ଼ବଲ୍ ଇକତ୍ କଳା ପ୍ରସିଦ୍ଧ ଥିବାବେଳେ ଯାଜପୁରର ଗୋପାଳପୁର, ଆଠଗଡ଼ର ନୂଆପାଟଣା, ବାଙ୍କୀର କଳାପଥର ଏବଂ ଖଣ୍ଡପଡ଼ା ଅଞ୍ଚଳରେ ସିଙ୍ଗଲ୍ ଇକତ୍ ଦ୍ୱାରା ଶାଢ଼ୀ ବୁଣାଯାଏ । ମୁଖ୍ୟତଃ ବୁଣାକାରମାନେ ପ୍ରାଚୀନ ଡ଼ିଜାଇନ୍ ଯାହା ପ୍ରକୃତରେ ଉପଲବ୍ଧ ହୁଏ ଯଥା, ଶଙ୍ଖ, ଚକ୍ର, ମାଛ, ଫୁଲ, ରୁଦ୍ରାକ୍ଷ, ମନ୍ଦିର ଆକୃତି, ପକ୍ଷୀ ବା ପଶୁ ଆଦିକୁ ଡିଜାଇନ୍ ଭାବରେ ଚୟନ କରିଥାନ୍ତି । ଶାଢ଼ୀର ରଙ୍ଗ ପ୍ରାକୃତିକ ରଙ୍ଗରୁ ପ୍ରସ୍ତୁତ କରାଯାଏ । ଗୋଟିଏ ଶାଢ଼ୀ ବୁଣିବା ପାଇଁ ଅନେକ ଦିନ ଲାଗିଥାଏ । ଓଡ଼ିଶାର ମୁଖ୍ୟତଃ ନୂଆପାଟଣାର ଖଣ୍ଡୁଆ, ମାଣିଆବନ୍ଧର ମାଣିଆବନ୍ଧି, କଳାହାଣ୍ଡିର ହାବାସପୁରୀ, ଗଞ୍ଜାମ ଓ ସୋନପୁରର ବୋମକାଇ, ଜଗତସିଂହପୁରର କଟକୀ, କୋରାପୁଟର କୋଟପାଡ଼, ଖୋର୍ଦ୍ଧା ଓ ବାଙ୍କୀର ପର୍ଦ୍ଦା, ନୟାଗଡ଼ ଅଞ୍ଚଳର କୁସୁମୀ, ବରଗଡ଼ ଓ ସମ୍ବଲପୁରର ସକ୍‌ତାପର ଓ ବିଚିତ୍ରାପୁର, ନୂଆପାଟଣାର ଗୀତଗୋବିନ୍ଦ ଖଣ୍ଡୁଆ ପ୍ରସିଦ୍ଧିଲାଭ କରିଛି । ଏପରି ଏକ କଳାଚାତୁରୀ ଓ କଷ୍ଟକର କାର୍ଯ୍ୟଧାରା ଉପରେ ପର୍ଯ୍ୟବସିତ କୌଳିକ ବୃତ୍ତିକୁ ସଂରକ୍ଷିତ କରିବା ପାଇଁ ସରକାର ଯତ୍ନ କରିଆସୁଛନ୍ତି । ଉଭୟ କେନ୍ଦ୍ର ସରକାର ଏବଂ ରାଜ୍ୟ ସରକାର ବହୁବିଧ ପଦକ୍ଷେପମାନ ଗ୍ରହଣ କରିଛନ୍ତି । ବର୍ତ୍ତମାନ ସୁଦ୍ଧା କୋଟପାଡ଼ ବସ୍ତ୍ର ଓ ଓଡ଼ିଶୀ ବାନ୍ଧକୁ ଭୌଗଳିକ ସଂକେତ ବା ଜି.ଆଇ. ଅଧୀନରେ ପଞ୍ଜୀକୃତ କରାଯାଇଥିବାବେଳେ ଅନ୍ୟାନ୍ୟ ହସ୍ତତନ୍ତ ଉତ୍ପାଦ ସାମଗ୍ରୀଗୁଡ଼ିକୁ ମଧ୍ୟ ପଞ୍ଜୀକରଣ କରିବା ପାଇଁ ଉଦ୍ୟମ କରାଯାଉଛି ।

ହସ୍ତତନ୍ତ ଓ ବୟନଶିଳ୍ପ ଅନ୍ତର୍ଗତ ହସ୍ତତନ୍ତ, ରେଶମ ଚାଷ ଉପରେ ମଧ୍ୟ ଯଥେଷ୍ଟ ଧ୍ୟାନ ଦିଆଯାଉଛି । ରେଶମ ବୟନଶିଳ୍ପର ରାଣୀ ମାନ୍ୟତା ପାଇଥିବାରୁ ରାଜ୍ୟରେ ରେଶମ ଚାଷ, ଉତ୍ପାଦନ ଏବଂ ଏହାଦ୍ୱାରା ଆଦିବାସୀ ଜନଜାତି ତଥା ଅର୍ଥନୈତିକ ଦୃଷ୍ଟିକୋଣରୁ ପଛୁଆ ଓ ଗରିବ ଲୋକଙ୍କ ଜୀବନ ଜୀବିକାରେ ଉନ୍ନତି ପାଇଁ ସୁଚିନ୍ତିତ ଯୋଜନାମାନ ପ୍ରଣୟନ କରାଯାଉଛି । ରାଜ୍ୟର ସର୍ବପୁରାତନ ଟସର ଚାଷ ୧୪ଗୋଟି ଜିଲ୍ଲାରେ କରାଯାଉଥିବା ବେଳେ ଏରି ୧୫ ଗୋଟି ଜିଲ୍ଲାରେ ଓ ତୁଳନାତ୍ମକ ଭାବରେ ନୂଆ ପ୍ରକାର ଭେଦର ମଲ୍‌ବେରୀ ଚାଷ ୧୫ ଗୋଟି ଜିଲ୍ଲାରେ କରାଯାଉଅଛି । ରେଶମର ୪ଗୋଟି ପ୍ରକାର ଭେଦ ମଧ୍ୟରୁ ମୁଗା ରେଶମ ଚାଷ ଆମ ରାଜ୍ୟରେ କରାଯାଏ ନାହିଁ । ପୁରାତନ ଟସର ଚାଷ ରାଜ୍ୟର ମୟୂରଭଞ୍ଜ, ବାଲେଶ୍ୱର, କେଉଁଝର, ସୁନ୍ଦରଗଡ଼, ଦେବଗଡ଼, ସମ୍ବଲପୁର, ଢ଼େଙ୍କାନାଳ, ଅନୁଗୁଳ, ଯାଜପୁର, ବୌଦ୍ଧ, ସୋନପୁର, କଳାହାଣ୍ଡି, ନୂଆପଡ଼ା, ନବରଙ୍ଗପୁର ଜିଲ୍ଲାରେ କରାଯାଉଥିବାବେଳେ ଏରି ଚାଷ କେନ୍ଦ୍ରାପଡ଼ା, ଜଗତସିଂହପୁର, କଟକ, ନୟାଗଡ଼, ଖୋର୍ଦ୍ଧା, ଫୁଲବାଣୀ, ସୁନ୍ଦରଗଡ଼, କେଉଁଝର, ରାୟଗଡ଼ା, କୋରାପୁଟ, କଳାହାଣ୍ଡି, ସମ୍ବଲପୁର, ଗଜପତି, ଢ଼େଙ୍କାନାଳ ଓ ଅନୁଗୁଳରେ କରାଯାଉଅଛି ।

ମଲବେରୀ ଚାଷ ଗଜପତି, କୋରାପୁଟ, ରାୟଗଡ଼ା, କଳାହାଣ୍ଡି, ଦେବଗଡ଼, ସମ୍ବଲପୁର, ଫୁଲବାଣୀ, କେଉଁଝର, ମୟୂରଭଞ୍ଜ, ନୟାଗଡ଼, ସୁବର୍ଣ୍ଣପୁର ଓ ଖୋର୍ଦ୍ଧା ଜିଲ୍ଲାରେ କରାଯାଏ ।

ଏସବୁ ସତ୍ତ୍ୱେ ସିଲ୍କ ପାଇଁ ଆମକୁ ବାହାର ରାଜ୍ୟ ଉପରେ ନିର୍ଭର କରିବାକୁ ପଡ଼ୁଛି । ରାଜ୍ୟରେ ସିଲ୍‌କର ଆବଶ୍ୟକତାର ମାତ୍ର ୩୦ ପ୍ରତିଶତ ଉତ୍ପାଦିତ ହେଉଥିବା ବେଳେ ୭୦ ପ୍ରତିଶତ ସିଲ୍‌କ ପାଇଁ ବାହାର ରାଜ୍ୟ ଉପରେ ନିର୍ଭର କରିବାକୁ ପଡ଼ୁଛି । ସେଥିପାଇଁ ଦ୍ୱାଦଶ ପଞ୍ଚବାର୍ଷିକ ଯୋଜନାରେ ଟସର ଚାଷ ଓ

ଏହାର ଉନ୍ନତି ପାଇଁ ପର୍ଯ୍ୟାପ୍ତ ଅସନ ଓ ଅର୍ଜୁନ ବୃକ୍ଷରୋପଣ ସହ ଅନ୍ୟାନ୍ୟ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ।

ବୁଣାକାରମାନଙ୍କ ସାମାଜିକ ଅର୍ଥନୈତିକ ବିକାଶର ଅଭିବୃଦ୍ଧି ତଥା ହସ୍ତତନ୍ତ ଓ ବୟନ କଳାକୁ ଅକ୍ଷୁଣ୍ଣ ରଖିବାର ମହତ୍ ଉଦ୍ଦେଶ୍ୟ ରଖି ରାଜ୍ୟ ସରକାର ବିଭିନ୍ନ ଯୋଜନାମାନ ପ୍ରଣୟନ କରିଛନ୍ତି । ଭାରତ ସରକାରଙ୍କ ପରିସଂଖ୍ୟାନ ରିପୋର୍ଟ ଅନୁସାରେ ରାଜ୍ୟରେ ପାଖାପାଖି ୨ଲକ୍ଷ ବୁଣାକାର ଅବସ୍ଥାନ କରୁଛନ୍ତି । ଏଥି ମଧ୍ୟରେ ୪୩,୬୫୨ରୁ ଅଧିକ ତନ୍ତ ରହିଥିବା ବେଳେ ୪୪,୬୮୩ଟି ବୁଣାକାର ପରିବାର ବସବାସ କରୁଛନ୍ତି । ଏହି



କୌଳିକ ବୃତ୍ତିକୁ ଅବ୍ୟାହତ ରଖିବାକୁ ଜାତୀୟ ହସ୍ତତନ୍ତ ଉନ୍ନୟନ କାର୍ଯ୍ୟକ୍ରମ ଜରିଆରେ କ୍ଲଷ୍ଟର ଉନ୍ନୟନ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଓଡ଼ିଶାରେ ପ୍ରାୟ ୩୯ଟି କ୍ଲଷ୍ଟର କାର୍ଯ୍ୟ କରୁଛି । ପଶ୍ଚିମ ଓଡ଼ିଶାର ବରଗଡ଼, ସୋନପୁର, ବୌଦ୍ଧ, ବଲାଙ୍ଗୀର, ନୂଆପଡ଼ା, ସମ୍ବଲପୁର ଜିଲ୍ଲାରେ ମୁଖ୍ୟତଃ ଅଧିକ କ୍ଲଷ୍ଟର କାମ କରୁଛି । କ୍ଲଷ୍ଟର ଉନ୍ନୟନ ସହ ବ୍ୟକ୍ତିଗତ ବୁଣାକାରମାନଙ୍କ ପାଇଁ ମଧ୍ୟ ନାନା ପଦକ୍ଷେପମାନ ହାତକୁ ନିଆଯାଇଛି । ସେମାନଙ୍କୁ ନୂତନ ତନ୍ତ ଯୋଗାଣ, ଅତ୍ୟାଧୁନିକ ଜ୍ଞାନ କୌଶଳ ପ୍ରୟୋଗରେ ପ୍ରଶିକ୍ଷଣ, ଏନ୍.ଏଚ୍.ଡ଼ି.ପି. ଦ୍ୱାରା ଆବଶ୍ୟକ ପାଟ ବା କପଡ଼ା ସୂତା ଯୋଗାଣ, ଜାତୀୟ ଫ୍ୟାସନ୍ ଡ଼ିଜାଇନରମାନଙ୍କ ସହାୟତାରେ ବଜାର ଚାହିଦା ଅନୁଯାୟୀ ଡ଼ିଜାଇନ୍ ପ୍ରସ୍ତୁତି, ସରକାରଙ୍କ ଶତପ୍ରତିଶତ ଆର୍ଥିକ ସହାୟତାରେ ଦକ୍ଷତା ବୃଦ୍ଧି ପ୍ରଶିକ୍ଷଣ ଓ ବାହାର ରାଜ୍ୟରେ ଜ୍ଞାନ ଆଦାନ ପ୍ରଦାନ ବୁଣାକାରଙ୍କ କୌଳିକ ବୃତ୍ତି ଅକ୍ଷୁଣ୍ଣ ରଖିବା ପାଇଁ ବୁଣାକାର ସମବାୟ ସମିତି ଗଠନ ଆଦି କାର୍ଯ୍ୟକ୍ରମମାନ ହାତକୁ ନିଆଯାଇଛି । ଅଦ୍ୟାବଧି ରାଜ୍ୟରେ ୪୭୯ଟି ବୁଣାକାର ସମବାୟ ସମିତି କାର୍ଯ୍ୟ କରୁଛି । ଏହା ବ୍ୟତୀତ ମୁଖ୍ୟମନ୍ତ୍ରୀଙ୍କ ପ୍ୟାକେଜ୍ ଅନୁସାରେ ସେମାନଙ୍କୁ ସୋଲାର ଲଣ୍ଠନ ବିତରଣ ହେବା ସହ ସାମାଜିକ ସୁରକ୍ଷା ବ୍ୟବସ୍ଥାରେ ମହାତ୍ମା ଗାନ୍ଧୀ ବୁଣାକାର ବୀମା ଯୋଜନାରେ ଅନ୍ତର୍ଭୁକ୍ତ କରାଯାଉଛି । ଏହି ଯୋଜନାରେ ରାଜ୍ୟର ୪୮,୫୧୪ ବୁଣାକାର ଏଥିରେ ଉପକୃତ ହେଉଛନ୍ତି । ଏହା ବ୍ୟତୀତ ବୁଣାକାର କଲ୍ୟାଣ ପାଣ୍ଠି ମଧ୍ୟ ସୃଷ୍ଟି କରାଯାଇଛି । ବୁଣାକାରମାନଙ୍କ ଦ୍ୱାରା ଉତ୍ପାଦିତ ବସ୍ତ୍ର, ବସ୍ତ୍ରାଦି ଦ୍ରବ୍ୟର ବିପଣନ ପାଇଁ ପ୍ରଦର୍ଶନୀ ଆୟୋଜନ କରିବା ସହ ବିପଣନର ଦାୟିତ୍ୱ ବୟନିକା, ସମ୍ବଲପୁରୀ ବସ୍ତ୍ରାଳୟ ଓ ସେରିଫେଡ୍ ବହନ କରିଛନ୍ତି । ପ୍ରାଥମିକ ସମବାୟ ସମିତି ଶୀର୍ଷ ସମବାୟ ସମିତି ଓ ହସ୍ତତନ୍ତ କର୍ପୋରେସନ୍ ମାଧ୍ୟମରେ ବାର୍ଷିକ ପାଖାପାଖି ୨୦୦ କୋଟି ଟଙ୍କାର ବ୍ୟବସାୟ ହେଉଛି ବୋଲି ସୂଚନା ମିଳେ ।

ଆଧୁନିକତାର ସ୍ରୋତରେ ମଧ୍ୟ ବୁଣାକାର ପରିବାରମାନେ ସେମାନଙ୍କର କୌଳିକ ବୃତ୍ତିକୁ ଛାଡ଼ି ନାହାନ୍ତି । ଆମ ରାଜ୍ୟର ଉତ୍କର୍ଷର ଏକ ସଶକ୍ତ ଆଧାର ହେଉଛି ଆମର ସୂକ୍ଷ୍ମ ଓ ଜଟିଳ ପ୍ରକ୍ରିୟାରେ ପ୍ରସ୍ତୁତ ହସ୍ତତନ୍ତ ବସ୍ତ୍ର । ଏକ ନିର୍ଦ୍ଦିଷ୍ଟ ଜଳବାୟୁ, ନିର୍ଦ୍ଦିଷ୍ଟ ବୃକ୍ଷରେ ବଂଶ ବିସ୍ତାର କରୁଥିବା ଛୋଟ ଛୋଟ ପୋକଙ୍କଠାରୁ ସୃଷ୍ଟି ଆମ ଗରିମାର ପ୍ରତୀକ ଓଡ଼ିଶୀ ବାନ୍ଧ କେବଳ ଓଡ଼ିଶାର ସ୍ୱାତନ୍ତ୍ର୍ୟକୁ ଚିହ୍ନାଉ ନାହିଁ ପରନ୍ତୁ ଆଦିବାସୀ ମହିଳା, ଅର୍ଥନୈତିକ ଦୃଷ୍ଟିକୋଣରୁ ଅନଗ୍ରସର ପରିବାର ଓ ଆଭିଜାତ୍ୟର ପ୍ରତୀକ ଏହି ବସ୍ତ୍ରର ସ୍ରଷ୍ଟା ବୁଣାକାରମାନେ ଅର୍ଥନୈତିକ ଦୃଷ୍ଟିକୋଣରୁ ମଧ୍ୟ ବେଶ୍ ଉପକୃତ ହେଉଛନ୍ତି । ଓଡ଼ିଶୀ ବାନ୍ଧ ଶାଢ଼ୀ ଏବେ ଜାତୀୟ ତଥା ଅନ୍ତର୍ଜାତୀୟ ସ୍ତରରେ ଖୁବ୍ ସୁଖ୍ୟାତି ଅର୍ଜନ କଲାଣି । ଝିଅମାନଙ୍କଠାରୁ ଆରମ୍ଭ କରି ମୋ ଜେଜେମା ବୟସର ବୁଢ଼ୀଙ୍କ ପର୍ଯ୍ୟନ୍ତ ସମସ୍ତେ ଆଜି ଏ ହାତବୁଣା ଶାଢ଼ୀ ପସନ୍ଦ କରୁଛନ୍ତି । ଆଜି ବି ବାହା ନିମତାରେ ଏ ଶାଢ଼ୀର ମର୍ଯ୍ୟାଦା ଅଛି ।

ମୋ ଜେଜେମା କେବେଠାରୁ ଆରପାରିକୁ ଗଲାଣି । ତା' ପେଟରା ବି ତା ସାଥୀରେ ହଜିଗଲାଣି । କିନ୍ତୁ କାହିଁକି କେଜାଣି, କେହି ଯଦି ଏ ଶାଢ଼ୀଟି ପିନ୍ଧିଥିବାର ମୁଁ ଦେଖେ, ଜେଜେମାର ଗୋରା ତକ୍‌ତକ୍ ମୁହଁ ସହ ତା'ର ସେହି କୁମ୍ଭପକା ପାଟଶାଢ଼ୀଟା ମୋ ଆଖି ଆଗରେ ଝାପ୍‌ସା ଭାବେ ଭାସିଆସି ହଜିଯାଏ । ମୋ ଅଜାଣତରେ ମୋ ପାଟିରୁ ବାହାରି ପଡ଼େ, ଆହାଃ! ଏ ଶାଢ଼ୀ ଏମିତି ଏକ ଚିଜ, ଯେଉଁଥିରେ ମଣିଷର ସ୍ମୃତି ଅନୁଭୂତି ଓ ଅତୀତ ହିଁ ଯୋଡ଼ି ହୋଇ ରହିଛି ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ବିପନ୍ନ ବାୟା ଓ ସୁରକ୍ଷା ଅଭିଯାନ

ପୀତାମ୍ବର ରାଉତ

ବାୟା ଚଢ଼େଇ – ପ୍ରକୃତିର ଅନନ୍ୟ ସୃଷ୍ଟି । ମଧୁମୟଙ୍କ ସୁମଧୁର ସୃଷ୍ଟି ପାଇଁ ମନଛୁଆଁ କବିତା ଝରିପଡେ ପ୍ରତ୍ୟେକଟି ମା'ର କଣ୍ଠରୁ ତା'ଛୁଆ ପାଇଁ– 'ଧୋରେ ବାୟା ଧୋ,ଯେଉଁ କିଆରିରେ ଗହଳ ମାଣ୍ଡିଆ, ସେଇ କିଆରିରେ ଶୋ' ପଲ୍ଲୀଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ଏବେବି ସଙ୍ଗୀତର ସ୍ୱର ତୋଳୁଛି । ଅବୁଝା ଅଝଟ ଶିଶୁକୁ ଥାପୁଡେଇ ନିଦ ଭରୁଛି । ହେଲେ ଦୁଃଖର କଥା ଦିଶୁନାହିଁ ଆଉ ବାୟା ଚଢେଇ । ଆଗ ଭଳି ତାଙ୍କ ବସା ଆଉ ଝୁଲୁନାହିଁ ବେଶୀ ସଂଖ୍ୟାରେ । କାଁ ଭାଁ କେତୋଟି ହାତ ଗଣତି ଗଛରେ ବାୟା ଚେଢଇ ବସା । ଦୁର୍ଦିନ ଯଦି ଏମିତି ଲାଗି ରହେ ଆଗକୁ ଶାଗୁଣା ଭଳି ବାୟା ଚଢେଇ ବଂଶ ଲୋପ ପାଇବ । ବାୟା ଚଢେଇ ଛୋଟିଆ କଳେବର, କିନ୍ତୁ ଉନ୍ନତ ଗୁଣସମ୍ପନ୍ନ, ପ୍ରକୃତିର ଶ୍ରେଷ୍ଠ ସ୍ଥପତି । ପରଖିଲେ ଜାଣି ହୁଏ ତା'ର ବସାକୁ । ଆମେ ରହିବା ପାଇଁ ଛାତ, ଆଜବେଷ୍ଟସ୍, ଚାଳଛପର ଘର କରିଥାଉ । ନିଜ ସୁବିଧା ପାଇଁ ବାୟା ଚଢେଇ ତିନି ପ୍ରକାର ଘର ତିଆରି କରେ । ବସାର ଦ୍ୱାର ମୁହଁ ସର୍ବଦା ତଳ ମୁହାଁ ଥାଏ । ଯାହା ଫଳରେ ବର୍ଷାପାଣି ବସା ମଧ୍ୟକୁ ପ୍ରବେଶ କରିପାରେ ନାହିଁ । ଅଣ୍ଡାଦାନ ଓ ଛୁଆ ଲାଳନ ପାଳନ ପାଇଁ ଏକ ପ୍ରକାର ବସା,ଅବସର ବିନୋଦନ ପାଇଁ ଦୁଇ ମୁହଁ ବିଶିଷ୍ଟ ଦୋଳି ସଦୃଶ ଅନ୍ୟ ଏକ ବସା ଓ ମାଈ ଚଢେଇ ସହ ସଂଗମ ପାଇଁ ହେଲ୍‌ମେଟ୍ (ଶିରସ୍ତ୍ରାଣ) ସଦୃଶ ଭିନ୍ନ ବସା ନିର୍ମାଣ କରିଥାଏ । ଏହି ବସାଗୁଡିକ ତାଳ ବରଡାରୁ ଲମ୍ବ ହୋଇ ଝୁଲୁଥାଏ । ଯେତେ ପବନ ହେଲେ ମଧ୍ୟ ଏହି ବସାଗୁଡିକ ଛିଡେନି । ଅଣ୍ଡିରା ବାୟା ଚଢେଇ ସାଧାରଣତଃ ବସା ତିଆରି କରେ । ଇଂଙ୍କର, କୁସ, ଆଖୁ, ଖଜୁରି ଓ ନଡିଆପତ୍ର ଧାରକରୁ ଏହି ବସା ପ୍ରସ୍ତୁତ ହୁଏ । ବସା ତିଆରି ସରି ଯିବା ପରେ ଏକ ନିର୍ଦ୍ଦିଷ୍ଟ ପ୍ରକାର ମାଟି ଓ ଗୋବରର ପ୍ରଲେପ ବସାର ଭିତର ପଟେ ଅଣ୍ଡିରା ବାୟାଚଢେଇ ଲଗେଇ ଥାଏ, ଯାହା ବସାକୁ ଶୀତତାପ ନିୟନ୍ତ୍ରଣ କରିବା ସହ ଅଣ୍ଡା ଓ ଛୁଆକୁ ରୋଗ ସଂକ୍ରମଣରୁ ରକ୍ଷା କରିଥାଏ । ତାଳବରଡା ଶୁଖି ଝଡିବା ପୂର୍ବରୁ ବାୟାଚଢେଇ ତାର ନୂତନ ବସା ଅନ୍ୟ ବରଡାରେ କରିନିଏ । ସେଥିପାଇଁ ବାୟାଚଢେଇକୁ ପକ୍ଷୀଙ୍କ ଭିତରେ ଶ୍ରେଷ୍ଠ ସ୍ଥପତିର ମାନ୍ୟତା



ଦିଆଯାଇଛି । ଏହି ପକ୍ଷୀ ପ୍ରଚଣ୍ଡ ସ୍ୱାଭିମାନୀ । ଆଉ ମଧ୍ୟ ପରିବେଶ ବିଜ୍ଞାନୀ ଭାବରେ ପ୍ରାକୃତିକ ଦୁର୍ବିପାକର ବାୟା ଚଢେଇର ଅସ୍ୱାଭାବିକ ରାବରୁ ଜଣାପଡେ ପ୍ରାକୃତିକ ଦୁର୍ବିପାକର ଆଗୁଆ ସୂଚନା । କିନ୍ତୁ ବାୟାଚଢେଇ ଆଜି ବିପନ୍ନ ସ୍ଥିତିରେ । ସେମାନଙ୍କ ସଂଖ୍ୟା ଦ୍ରୁତଗତିରେ ହ୍ରାସ ପାଉଛି । ସେମାନଙ୍କ ବଂଶ ଲୋପ ପାଇଯିବ । ପରିବେଶର ଏକ ଅଙ୍ଗ ଛିଡିପଡିବ । ନିରୀହ ପଶୁପକ୍ଷୀ କୂଳକୁ ବନ୍ୟଜୀବ ସୁରକ୍ଷା ଆଇନ ୧୯୭୨ର ଧାରା ୯,୪୨ରେ ବହୁ ପ୍ରତିକାର ବ୍ୟବସ୍ଥା ରହିବା ସତ୍ୱେ ବାୟାଚଢେଇ, ଶାଗୁଣା, ଶଙ୍ଖଚିଲ, ବଣି, ଘରଚଟିଆ, ଶୁଆ, ଶାରୀ, କୋଇଲି, କାଉ, ବଗ, ଡାହୁକ, କଜଳପାତି, ଗେଣ୍ଡାଳିଆ ପ୍ରଭୃତି ପରିବେଶର ବନ୍ଧୁ ପକ୍ଷୀ କୂଳକୁ ଆହାର ପ୍ରଦାନ କରୁଥିବା ଓ ବସାବାନ୍ଧି ରହିବା ପାଇଁ ଆବଶ୍ୟକ ପଡୁଥିବା ବୃକ୍ଷ ସଂପଦ ତାଳ, ଖଜୁରି, ବର,

ଅଶ୍ୱତ୍ଥ, ନିମ୍ବ, ଚାକୁଣ୍ଡା, ଆମ୍ବ, ବେଲ ପ୍ରଭୃତି ଗଛ ସଂଖ୍ୟା ବହୁ ପରିମାଣ କମି ଆସିଲାଣି । ପଶୁପକ୍ଷୀଙ୍କ ପ୍ରତି ଦୟା ପ୍ରଦର୍ଶନ



ସହିତ ବୃକ୍ଷ ସଂପଦ ପ୍ରତି ଅନାଗ୍ରହ ଭାବ ପାଇଁ ମଣିଷ ହୃଦୟର ସ୍ନେହ, ଦୟା କମିଯିବା ଯୋଗୁଁ ସାମାଜିକ ସ୍ତରରେ ବିଶୃଙ୍ଖଳା କ୍ରମେ ବୃଦ୍ଧି ପାଇଛି । ଆମ ସରକାର ଏ ଦିଗରେ ଚେଷ୍ଟା କଲେ ଲୁପ୍ତ ହୋଇଯାଉଥିବା ପକ୍ଷୀ ପୂର୍ବପରି ଭରପୂର ରହିବେ । ପ୍ରକାଶ ଥାଉ କି ଦିଲ୍ଲୀ ସରକାର 'ଘରଚଟିଆ'କୁ ରାଜ୍ୟ ପକ୍ଷୀର ମାନ୍ୟତା ଦେଇଛନ୍ତି । ସରକାରୀ ଅଫିସ୍‌ରେ ପାଣି ଅଯଥା ଅପଚୟ ହେଉଛି । ସଂରକ୍ଷିତ ଜଙ୍ଗଲ, ପକ୍ଷୀ ରହୁଥିବା କିଛି ପାଣିକୁଣ୍ଡ ରଖାଗଲେ ପକ୍ଷୀମାନେ ପ୍ରଚଣ୍ଡ ରୌଦ୍ରତାପରେ ତୃଷା ନିବାରଣ କରିପାରନ୍ତେ । କାରଣ ଜଳାଶୟ ସ୍ଥାନରେ ଏବେ କୋଠାବାଡି ନିର୍ମାଣ ଚାଲିଛି । ବିଧାୟକ ଓ ସାଂସଦମାନଙ୍କ ଉନ୍ନୟନ ପାଣ୍ଠିରୁ କିଛି ବୃକ୍ଷଲତା ଓ ପଶୁପକ୍ଷୀମାନଙ୍କ ସୁରକ୍ଷା ପାଇଁ ବାଧ୍ୟତାମୂଳକ ଭାବେ ଖର୍ଚ୍ଚ ହେବା ଏକାନ୍ତ ବାଂଛନୀୟ । ପ୍ରାତଃ ସ୍ମରଣୀୟ ସନ୍ଥକବି ଭୀମ ଭୋଇଙ୍କ ଅମୃତବାଣୀ କୁହେ–

'ସ୍ଥାବରୁ ଜଙ୍ଗମ, କୀଟରୁ ପତଙ୍ଗ,
ଚାହିଁଦେଲେ ଅନୁସରି,
ସକଳ ଘଟରେ ପୂରି ସମାନରେ, ନୋହେ
ସାନବଡ ବାରି । ପ୍ରାଣୀଙ୍କ ଆରତ ଦୁଃଖ
ଅପ୍ରମିତ, ଦେଖୁ ଦେଖୁ କିବା ସହୁ, ମୋ ଜୀବନ ପଛେ ନର୍କେ
ପଡିଥାଉ ଜଗତ ଉଦ୍ଧାର ହେଉ ।'

ଆବାହକ, ଓଡିଶା ବାୟାଚଢେଇ ସୁରକ୍ଷା ଅଭିଯାନ
ନିଆଳୀ, କଟକ

❖ ❖ ❖

## ଗୋଷ୍ଠୀ ଜଙ୍ଗଲ ଅଧିକାର ଓ ପ୍ରାଚୀନ ଜନଜାତି ବସତି ଅଧିକାର: ନୀତି ଓ କାର୍ଯ୍ୟକାରିତା ମଧ୍ୟରେ ବ୍ୟବଧାନ ଶୀର୍ଷକ ପାଠଚକ୍ର

ଗୋଷ୍ଠୀଗତ ଜଙ୍ଗଲ ଅଧିକାର ଓ ପ୍ରାଚୀନତମ ଜନଜାତି ଗୋଷ୍ଠୀମାନଙ୍କର ବସତି ଅଧିକାର ନୀତି ଓ କାର୍ଯ୍ୟକାରିତା ମଧ୍ୟରେ ବ୍ୟବଧାନ ଶୀର୍ଷକ ଜାତୀୟ ଟି.ଓ.ଟି. ଓ ପାଠଚକ୍ର ସ୍ଥାନୀୟ ହୋଟେଲ୍ କଳିଙ୍ଗ ଅଶୋକଠାରେ ଅନୁଷ୍ଠିତ ହୋଇଯାଇଛି । ଏହି ପାଠଚକ୍ରର ଉଦ୍‌ଘାଟନୀ ଉତ୍ସବରେ ଏନ୍.ସି. ସାକ୍ସେନା, (ଭା.ପ୍ର.ସେ. ଅବସର ପ୍ରାପ୍ତ), ପୂର୍ବତନ ସଦସ୍ୟ, ନୀତି ଆୟୋଗ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଭାରତରେ କାର୍ଯ୍ୟକାରୀ ହେଉଥିବା ଜଙ୍ଗଲ ଅଧିକାର ଆଇନ୍ ସମ୍ବନ୍ଧରେ ସୂଚନା ଦେଇଥିଲେ । ସମ୍ମାନିତ ଅତିଥି ଭାବେ ଡଃ. ଅରବିନ୍ଦ ବେହେରା (ଭା.ପ୍ର.ସେ. ଅବସର ପ୍ରାପ୍ତ), ପୂର୍ବତନ ଅତିରିକ୍ତ ମୁଖ୍ୟ ଶାସନ ସଚିବ, ଓଡ଼ିଶା, ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗର ନିର୍ଦ୍ଦେଶକ ତଥା ଅତିରିକ୍ତ ଶାସନ ସଚିବ ଶ୍ରୀ ଆର୍, ରଘୁପ୍ରସାଦ, ( ଭାରତୀୟ ବନ ସେବା) ଯୋଗଦେଇ ବିଭାଗ ପକ୍ଷରୁ ଜଙ୍ଗଲ ଅଧିକାର ଆଇନ୍ କାର୍ଯ୍ୟକାରୀ ନିମନ୍ତେ ନିଆଯାଉଥିବା ବିଭିନ୍ନ ପଦକ୍ଷେପ ସମ୍ବନ୍ଧରେ ଉଦ୍‌ବୋଧନ ଦେଇଥିଲେ । ଏନ୍.ଆର୍.ସି. ଓ ଏସି.ଏସ୍‌ଟି.ଆର୍.ଟି.ଆଇ.ର ନିର୍ଦ୍ଦେଶକ ପ୍ରଫେସର, ଡକ୍ଟର ଅଖିଳ ବିହାରୀ ଓତା, ଭା.ପ୍ର.ସେ. ପାଠଚକ୍ରରେ ସ୍ୱାଗତ ସମ୍ଭାଷଣ ଦେବା ସହ ଏହାର ଆଭିମୁଖ୍ୟ, ଉଦ୍ଦେଶ୍ୟ ଓ କାର୍ଯ୍ୟକାରିତା ସମ୍ବନ୍ଧରେ ସୂଚନା ପ୍ରଦାନ କରିଥିଲେ ।

# ଓଡ଼ିଶାର ବନ୍ଦର ଓ ନୌବାଣିଜ୍ୟ

ପ୍ରଭାତ କୁମାର ନନ୍ଦ

ସମଗ୍ର ବିଶ୍ୱ ଇତିହାସରେ ବାଣିଜ୍ୟିକ ବିଭବକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଯେଉଁ ଜାତି ଅନ୍ତର୍ଜାତୀୟ ନୌବାଣିଜ୍ୟ କ୍ଷେତ୍ରରେ ଆଗୁସାର ହୋଇଛନ୍ତି, ସେମାନେ ସମସ୍ତ କ୍ଷେତ୍ରରେ ବିକାଶ ଲାଭ କରିଛନ୍ତି । ଏସିଆ ମହାଦେଶରେ ଭାରତ ନୌବାଣିଜ୍ୟ କ୍ଷେତ୍ରରେ ଅନ୍ୟ ଦେଶ ଅପେକ୍ଷା ଅଗ୍ରଣୀ ଥିଲା । ବିଶେଷତଃ ବିଶ୍ୱ ନୌବାଣିଜ୍ୟ ଇତିହାସରେ ଓଡ଼ିଆମାନଙ୍କର ସ୍ୱତନ୍ତ୍ର ପ୍ରସିଦ୍ଧି ରହିଛି । ଓଡ଼ିଶାର ପୁରାତନ ନାମ କଳିଙ୍ଗ ଓ ଉତ୍କଳର ଅଧିବାସୀମାନେ ନିଜକୁ ସାଧବ ଭାବରେ ପରିଚୟ ଦେଇ ବିଶ୍ୱର ବିଭିନ୍ନ ଦେଶ ସହିତ ନୌବାଣିଜ୍ୟିକ ସମ୍ପର୍କ ସ୍ଥାପନ କରିଥିଲେ । ଏହି ସମ୍ପର୍କ ସ୍ଥାପନ ତିନୋଟି କାରଣ ଯୋଗୁଁ କଳିଙ୍ଗର ସାଧବମାନଙ୍କୁ ବିଶ୍ୱ ନୌବାଣିଜ୍ୟ ଇତିହାସରେ ସମ୍ମାନିତ କରାଯାଇଛି । ପ୍ରଥମତଃ ସେମାନେ ବିଭିନ୍ନ ଉଚ୍ଚ ମାନର ନୌଯାନ ନିର୍ମାଣ କରି ସେଥିରେ ଜଳମାର୍ଗରେ ଯାତ୍ରା କରୁଥିଲେ, ଦ୍ୱିତୀୟତଃ ବିଭିନ୍ନ ଦେଶକୁ ଜଳମାର୍ଗ ଆବିଷ୍କାର କରିଥିଲେ ଓ ସାହସିକତାର ସହିତ ନୌଯାତ୍ରା କରିଥିବାରୁ ତାଙ୍କୁ ସାହସିକ ଜାତି ଭାବରେ ପ୍ରଶଂସା କରାଯାଇଥିଲା । ସଂସ୍କୃତ ସାହିତ୍ୟରେ 'କଳିଙ୍ଗାଃ ସାହସିକାଃ' ଉକ୍ତି ସାଧବମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ଥିଲା । ତୃତୀୟତଃ କଳିଙ୍ଗର ସାଧବମାନେ ପଣ୍ୟଦ୍ରବ୍ୟ କ୍ରୟ ଓ ବିକ୍ରୟ ନିମିତ୍ତ ଯେତେ ଚେଷ୍ଟିତ ନଥିଲେ, ତାହାଠାରୁ ଅଧିକ ଯତ୍ନ କଳିଙ୍ଗର ବିଶ୍ୱ ଭ୍ରାତୃତ୍ୱ ଓ ସାଂସ୍କୃତିକ ବିଭବର ପ୍ରଚାର ନିମିତ୍ତ କରୁଥିଲେ । ସେଥି ନିମିତ୍ତ ବିଶ୍ୱରେ ବିଭିନ୍ନ ଦେଶରେ ବିଦେଶୀ ବଣିକମାନଙ୍କୁ ସେମାନଙ୍କର ଲାଭଖୋର ପ୍ରତିଷ୍ଠା ଭାବକୁ ବିରୋଧ କରାଯାଇ ସ୍ୱାଧୀନତା ସଂଗ୍ରାମଦ୍ୱାରା ତାଙ୍କୁ ବିତାଡିତ କରାଯାଇଥିଲା, ମାତ୍ର ସାଧବମାନଙ୍କୁ ସ୍ୱାଗତ କରାଯାଇ ତାଙ୍କର ସଂସ୍କୃତିକୁ ନିଜ ଦେଶରେ ଗ୍ରହଣ କରାଯାଇଥିଲା । ଦକ୍ଷିଣ ପୂର୍ବ ଦ୍ୱୀପପୁଞ୍ଜରେ ବର୍ତ୍ତମାନ ସୁଦ୍ଧା ବହୁ ହିନ୍ଦୁ ଦେବାଦେବୀମାନଙ୍କର ମନ୍ଦିର ରହିଛି ଓ କଳିଙ୍ଗର ବିଭିନ୍ନ ଯାତ୍ରା ସେଠାରେ ପାଳନ କରାଯାଉଛି । କଳିଙ୍ଗର ସାଧବମାନେ ଜାଭା, ସୁମାତ୍ରା, ବାଲି, ଶ୍ରୀଲଙ୍କା ପ୍ରଭୃତି ଦେଶର ଅଧିବାସୀମାନଙ୍କର ମିତ୍ର ଥିଲେ ।



ସଂସ୍କୃତ ଭାଷାରେ ରଚିତ 'ବ୍ରହ୍ମାଣ୍ଡ ପୁରାଣ'ରେ କଳିଙ୍ଗର ସାଧବମାନେ ବିଭିନ୍ନ ଦେଶ ସହିତ ନୌବାଣିଜ୍ୟିକ ସମ୍ପର୍କ ରକ୍ଷା କରିବାର ବର୍ଣ୍ଣନା ରହିଛି ।

> ଚିଲିକା ହ୍ରଦେ ସହସଂତୁ ଜଳଗାମୀ ସୁବୋଇତଃ
> ବହୁ ଚକ୍ରାନ୍ୱିତ୍ୱାଃ ଶୀଘ୍ରାଃ ଯନ୍ତ୍ରଗାଃ ଚାଳକାଶ୍ରିତାଃ
> ବାଣିଜ୍ୟ କରଣେ ଶକ୍ତାଃ ତ୍ରିପଞ୍ଚ ଶିଖରା କୃତାଃ
> ଦ୍ୱୀପାନ୍ତର ଗତାୟାତାଃ ଜାଭା ମଳୟ ସିଂହଳେ ।

କଳିଙ୍ଗର ସାଧବମାନେ ଚିଲିକା ହ୍ରଦରେ ଉଚ୍ଚମାନର ବୋଇତ ଚଳାଉଥିଲେ, ବାଣିଜ୍ୟରେ ସଫଳ ଥିଲେ ଓ ଜାଭା, ମଳୟ, ସିଂହଳ ପ୍ରଭୃତି ଦ୍ୱୀପ ସହ ନୌବାଣିଜ୍ୟିକ ସମ୍ପର୍କ ରକ୍ଷା କରିଥିଲେ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସ୍ୱରଚିତ 'ଲାବଣ୍ୟବତୀ' କାବ୍ୟରେ ବର୍ଣ୍ଣନା କରିଛନ୍ତି ଯେ ସିଂହଳ ଦ୍ୱୀପରେ ସାଧବମାନଙ୍କର ବସତି ଥିଲା ଓ ସେଠାରେ ବୋଇତ ପହଞ୍ଚିବା ପରେ ବନ୍ଦାପନା କରାଯାଉଥିଲା ।

ସଂସ୍କୃତ, ପାଲି, ଓଡ଼ିଆ ସାହିତ୍ୟରେ ଆମର ପୂର୍ବପୁରୁଷମାନଙ୍କର ନୌବାଣିଜ୍ୟିକ ପ୍ରସିଦ୍ଧି ବହୁଳ ଭାବରେ ବର୍ଣ୍ଣିତ

ହୋଇଛି । ଭାରତର ପୂର୍ବ ଉପକୂଳରେ କଳିଙ୍ଗ ସାଧବମାନଙ୍କର ନୌବାଣିଜ୍ୟ ଏତେ ପ୍ରସିଦ୍ଧି ଲାଭ କରିଥିଲେ ଯେ, ଖ୍ରୀଷ୍ଟପୂର୍ବ ସମୟରୁ ବର୍ତ୍ତମାନ ନାମିତ ବଙ୍ଗୋପସାଗରର ନାମ କଳିଙ୍ଗ ସାଗର ଥିଲା । ଆର୍ଯ୍ୟ ମଞ୍ଜୁଶ୍ରୀ ମୂଳକଳ୍ପ ନାମକ ବୌଦ୍ଧଗ୍ରନ୍ଥରେ କଳିଙ୍ଗ ସାଗର ଓ କଳିଙ୍ଗ ଦେଶ୍ର ନାମର ଉଲ୍ଲେଖ ରହିଛି ।

ଟଲେମି ବିଶ୍ୱ ଭୂଗୋଳ ଗ୍ରନ୍ଥରେ କଳିଙ୍ଗରେ ମନ୍ଦଦ, କୋଣାଗାର, ଆଫିତେରିଆନ୍, କଟିକର୍ଦ୍ଦମ, ପାଲୁର, ତାମ୍ରଲିପ୍ତି ପ୍ରଭୃତି ଉଚ୍ଚମାନର ବନ୍ଦର ଥିଲା ବୋଲି ବର୍ଣ୍ଣନା କରିଛନ୍ତି । ଓଡ଼ିଶାର ଉପକୂଳରେ ବହୁ ନୌବାଣିଜ୍ୟିକ ଓ ପତ୍ନତାତ୍ତ୍ୱିକ ପ୍ରମାଣ ଅଦ୍ୟାବଧି ରହିଛି । କଳିଙ୍ଗର ଦୁର୍ଦ୍ଧର୍ଷ ନୌବାହିନୀକୁ ନିଜ ଅଧୀନକୁ ଆଣିବା ନିମିତ୍ତ ସମ୍ରାଟ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । ଏହିଭଳି ବହୁ ପ୍ରତ୍ନତାତ୍ତ୍ୱିକ, ସାହିତ୍ୟିକ ଓ ବାଣିଜ୍ୟିକ ପ୍ରମାଣରୁ ସମଗ୍ର ବିଶ୍ୱରେ ପ୍ରାଚୀନ ଓଡ଼ିଶାର ନୌଯାତ୍ରା ଓ ବ୍ୟବସାୟ ପ୍ରସିଦ୍ଧ ହୋଇ ପାରିଥିଲା ।

ବିଭିନ୍ନ କାରଣ ଯୋଗୁଁ ପଞ୍ଚଦଶ ଶତାବ୍ଦୀରୁ ଆମ ରାଜ୍ୟର ନୌବାଣିଜ୍ୟ ଅବକ୍ଷୟମୁଖୀ ହେଲା । ପ୍ରସିଦ୍ଧ ପ୍ରାବନ୍ଧିକ ଜଗବନ୍ଧୁ ସିଂହ ନିଜ ରଚିତ ପ୍ରବନ୍ଧରେ ଆମର ନୌବାଣିଜ୍ୟରୁ କର୍ପୂର ଉଡିଯାଇ କେବଳ କନା ପଡିରହିଛି ବୋଲି ଲେଖିଥିଲେ । ଓଡ଼ିଆମାନେ କେବଳ କାର୍ତ୍ତିକ ପୂର୍ଣ୍ଣମୀରେ ଛୋଟ କଦଳୀ ପଟୁଙ୍ଗା ବା ସୋଲ ତିଆରି ଡଙ୍ଗାଟିଏ ଭସାଇ ଦେଇ ନିଜର ହୃତ ଗୌରବକୁ ମନେ ପକାଉଥିଲେ । ବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଆମର ନୌବାଣିଜ୍ୟିକ ପ୍ରସିଦ୍ଧିର ପୁନରୁଦ୍ଧାର ହେଲା । ୧୯୬୨ ମସିହା ଜାନୁଆରୀ ୩ ତାରିଖରେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ, ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଗହଣରେ ପାରାଦ୍ୱୀପ ବନ୍ଦରର ଶିଳାନ୍ୟାସ କରିଥିଲେ । ୧୯୬୫ ମସିହାରେ ନିର୍ମାଣ କାର୍ଯ୍ୟ ଶେଷ ହେବାପରେ, ୧୯୬୬ ମସିହାରୁ ଏକ ବୃହତ୍ ବନ୍ଦର ରୂପେ ପାରାଦ୍ୱୀପ ମାନ୍ୟତା ଲାଭକଲା । ବିଶ୍ୱର ବିଭିନ୍ନ ଦେଶରୁ ବୃହତ୍‌କାୟ ଜାହାଜ ପାରାଦ୍ୱୀପ ବନ୍ଦର ନିକଟରେ ଥିବା ସମୁଦ୍ରର ପ୍ରାକୃତିକ ଗଭୀରତା ଓ ପାଣିପାଗର ଅନୁକୂଳ ପରିବେଶ ଯୋଗୁଁ ଚଳାଚଳ କଲେ ଓ ସମଗ୍ର ବିଶ୍ୱରେ ବନ୍ଦରର ଖ୍ୟାତି ବୃଦ୍ଧି ହେଲା ।

ପାରାଦ୍ୱୀପ ବନ୍ଦର ଇତିହାସରେ ୨୦୧୪–୧୫ ଆର୍ଥିକ ବର୍ଷ ଗୌରବର ବର୍ଷ ଥିଲା । ଏହି ଆର୍ଥିକ ବର୍ଷରେ ବନ୍ଦରରୁ ୭୧ ନିୟୁତ ୧୦ ହଜାର ଟନ୍ ପଣ୍ୟ ଦ୍ରବ୍ୟ କାରବାର ହୋଇଥିଲା । ବନ୍ଦର ଇତିହାସରେ ଏତେ ପରିମାଣର ପଣ୍ୟଦ୍ରବ୍ୟ କେବେ କାରବାର ହୋଇନଥିଲା । ଭାରତର ବିଭିନ୍ନ ବନ୍ଦରର ପରିଚାଳନାର ମାନକୁ ଆକଳନ କରି ଆମ ଦେଶର ଶ୍ରେଷ୍ଠ ବନ୍ଦର ରୂପେ ପାରାଦ୍ୱୀପକୁ ପରିଗଣିତ କରାଯାଇ ଥିଲା । ପ୍ରାବନ୍ଧିକ ଜଗବନ୍ଧୁ ସିଂହ ବଞ୍ଚିଥିଲେ ନିଶ୍ଚୟ ଲେଖିଥାଆନ୍ତେ ଯେ, କଳିଙ୍ଗର ହୃତ ନୌବାଣିଜ୍ୟିକ ପ୍ରସିଦ୍ଧି, ପାରାଦ୍ୱୀପ ବନ୍ଦର ମାଧ୍ୟମରେ ପ୍ରତ୍ୟାବର୍ତ୍ତନ ହୋଇଛି । ପାରାଦ୍ୱୀପ ବନ୍ଦରରେ ଏକଲକ୍ଷ ଟନ୍‌ରୁ ଅଧିକ ପଣ୍ୟଦ୍ରବ୍ୟ ବହନ କରି ବୃହତ୍‌କାୟ ଜାହାଜ ଅନାୟାସରେ ପ୍ରବେଶ ବା ପ୍ରସ୍ଥାନ କରିପାରୁଛି । ଭାରତର ପୂର୍ବ ଉପକୂଳରେ ପାରାଦ୍ୱୀପ ବନ୍ଦର ଗଭୀରତମ ବନ୍ଦର । ୨୦୨୦ ମସିହା ବେଳକୁ ବନ୍ଦରରୁ ୧୦୦ ନିୟୁତ ଟନ୍‌ରୁ ଅଧିକ ପଣ୍ୟଦ୍ରବ୍ୟ କାରବାର ହେବ ବୋଲି ନୌବାଣିଜ୍ୟବିତ୍‌ମାନେ ଆକଳନ କରିଛନ୍ତି । ବନ୍ଦରରୁ ମୁଖ୍ୟତଃ ଲୁହାପଥର, ତାପଜ କୋଇଲା, କ୍ରୋମପଥର ରପ୍ତାନି ହେଉଥିବା ବେଳେ ଇସ୍ପାତଶିଳ୍ପରେ ବ୍ୟବହାର ନିମିତ୍ତ ଉଚ୍ଚ ମାନର କୋଇଲା, ପେଟ୍ରୋଲ ଜାତ ଦ୍ରବ୍ୟ, ତରଳ ଆମୋନିଆ, ଫସ୍‌ଫୋରିକ ଏସିଡ୍,କୃଷି ନିମିତ୍ତ ସାର, ନାଲ୍‌କୋ ଦ୍ୱାରା ଉତ୍ପାଦିତ କ୍ରୋମ କନ୍‌ସେନଟ୍ରେଟ୍, ନୂତନ ଶିଳ୍ପ ନିମିତ୍ତ ଯନ୍ତ୍ରପାତି ପ୍ରଭୃତି ଆମଦାନୀ କରାଯାଉଛି । ବର୍ତ୍ତମାନ ଜାହାଜ ମାଲିକମାନେ ଏକଲକ୍ଷ ଟନ୍‌ରୁ ଅଧିକ ପଣ୍ୟଦ୍ରବ୍ୟ ପରିବହନ କରିପାରୁଥିବା ବୃହତ୍‌କାୟ ଜାହାଜ ନିର୍ମାଣ କରୁଥିବା ବେଳେ, ଭବିଷ୍ୟତରେ ପୂର୍ବ ଉପକୂଳରେ କେବଳ ପାରାଦ୍ୱୀପ ବନ୍ଦରକୁ ସେଭଳି ଜାହାଜ ପ୍ରବେଶ କରିପାରିବ । ତେଣୁ ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ପାରାଦ୍ୱୀପ ବନ୍ଦର ଭାରତର ଶ୍ରେଷ୍ଠ ବନ୍ଦର ଭାବେ ପରିଗଣିତ ହୋଇ ବିଶ୍ୱ ନୌବାଣିଜ୍ୟ ମାନଚିତ୍ରରେ ଓଡ଼ିଶାର ଗୌରବ ବର୍ଦ୍ଧନ କରିବ ।

ପାରାଦ୍ୱୀପ ବନ୍ଦର ବ୍ୟତୀତ ଅନ୍ୟ ଦୁଇଟି ବନ୍ଦର ଯଥା ଗୋପାଳପୁର ଓ ଧାମରାରେ ପଣ୍ୟଦ୍ରବ୍ୟ କାରବାର କରାଯାଉଛି । ଏହି ଦୁଇଟି ବନ୍ଦରର ନିର୍ମାଣ ଶେଷ ହୋଇନାହିଁ । ଅଳ୍ପ କେତେକ ବର୍ଥ ବା ଜାହାଜ ରହଣି ସ୍ଥଳଦ୍ୱାରା ବିବିଧ ପଣ୍ୟଦ୍ରବ୍ୟ କାରବାର କରାଯାଉଛି । ଏହା ବ୍ୟତୀତ ଅନ୍ୟ ତେରୋଟି ବନ୍ଦର ନିର୍ମାଣ ନିମିତ୍ତ ଓଡ଼ିଶାର ଦୀର୍ଘ ଉପକୂଳରେ ସ୍ଥାନ ନିରୂପଣ କରାଯାଇଛି । ସେଗୁଡ଼ିକ ହେଲା ଗଞ୍ଜାମ ଜିଲ୍ଲାର ବହୁଦା ମୁହାଣ ବା ସୋନାପୁର, ପାଲୁର, ପୁରୀ ଜିଲ୍ଲାର ବାଲିହରିଚଣ୍ଡୀ, ଅସ୍ତରଙ୍ଗ, ଜଗତସିଂହପୁର ଜିଲ୍ଲାର ଜଟାଧାରୀ ମୁହାଁଣ, କେନ୍ଦ୍ରାପଡ଼ା ଜିଲ୍ଲାର ବରୁଣେଇ ମୁହାଣ, ଭଦ୍ରକ ଜିଲ୍ଲାର ଚୂଡ଼ାମଣି, ବାଲେଶ୍ୱର ଜିଲ୍ଲାର ଇଞ୍ଚୁରୀ, ଚାନ୍ଦିପୁର, ବାହାବଳପୁର, ସୁବର୍ଣ୍ଣରେଖା ମୁହାଁଣ ବା କୀର୍ତ୍ତନିଆ ଓ ବିଚିତ୍ରପୁର ବା ତଳସାରୀ । ବିଶ୍ୱର ପ୍ରତିଷ୍ଠିତ ଓ ଅଭିଜ୍ଞ ଜାହାଜ ଚଳାଚଳ ପ୍ରତିଷ୍ଠାନଗୁଡ଼ିକ ଏ ସମସ୍ତ ସ୍ଥଳରେ ବନ୍ଦର ନିର୍ମାଣ ନିମିତ୍ତ

ଆଗଭର ହୋଇଛନ୍ତି । ଓଡ଼ିଶାର ୪୮୦ କିଲୋମିଟର ବ୍ୟାପୀ ବେଳାଭୂମିରେ ବହୁ ବନ୍ଦର ନିର୍ମାଣର ସମ୍ଭାବନା ରହିଛି । ପାରାଦ୍ୱୀପ ବନ୍ଦରର ଉତ୍ତମ ନୌବାଣିଜ୍ୟିକ ଅବସ୍ଥିତି ଯୋଗୁଁ, ବନ୍ଦର ଚତୁପାର୍ଶ୍ୱରେ ବହୁସାର, ଲୌହ ଇସ୍ପାତ ଉତ୍ପାଦନ, ଖଣିଜ ତୈଳ ବିଶୋଧନାଗାର ପ୍ରଭୃତି ବହୁ ଶିଳ୍ପ ଗଢ଼ିଉଠିଛି । ଅଧିକ ଶିଳ୍ପ ପ୍ରତିଷ୍ଠାନ ସକ୍ରିୟ ହେବାଦ୍ୱାରା, ଓଡ଼ିଆ ଯୁବକମାନେ ଶିଳ୍ପ ସଂସ୍ଥାରେ ଚାକିରି ଓ ବ୍ୟବସାୟ କରି ଓଡ଼ିଶାର ଅର୍ଥନୈତିକ ମାନଦଣ୍ଡକୁ ବୃଦ୍ଧି କରିବାରେ ସହାୟକ ହୋଇଛନ୍ତି ।

ଓଡ଼ିଶାରେ ବନ୍ଦରଗୁଡ଼ିକର ଅଧିକ ଉନ୍ନତି ନିମିତ୍ତ ପ୍ରତ୍ୟେକ ବନ୍ଦରକୁ ଉତ୍ତମ ରେଳ ଓ ସଡ଼କ ବ୍ୟବସ୍ଥା, ଓଡ଼ିଶାର ନଦୀଗୁଡ଼ିକୁ ଗଭୀର କରିବା ସହିତ ସେଥିରେ ନୌପୋତଦ୍ୱାରା ପଣ୍ୟ ପରିବହନ କରି ବିଭିନ୍ନ ବନ୍ଦରକୁ ପ୍ରେରଣ କରିବା ଓ ଓଡ଼ିଶାର ବିଭିନ୍ନ ସ୍ଥଳରେ ଉଚ୍ଚ ମାନର ରପ୍ତାନୀଭିତ୍ତିକ ପଣ୍ୟଦ୍ରବ୍ୟ ପ୍ରସ୍ତୁତି ନିମିତ୍ତ ଶିଳ୍ପାନୁଷ୍ଠାନ ନିର୍ମାଣ କରିବା ଆବଶ୍ୟକ । ବିଶ୍ୱ ନୌବାଣିଜ୍ୟ କ୍ଷେତ୍ରରେ ଆଧୁନିକ ଯନ୍ତ୍ରପାତି ଓ କୁଶଳୀ ଶ୍ରମିକମାନଙ୍କର ଆବଶ୍ୟକତା କ୍ରମଶଃ ବୃଦ୍ଧିପାଉଛି । ବିଶ୍ୱର ପରିବର୍ତ୍ତନଶୀଳ ଜାହାଜ ଚଳାଚଳ କୌଶଳ ପ୍ରତି ସଜାଗ ରହିଲେ, ଓଡ଼ିଶାର ନୌବାଣିଜ୍ୟ ଖ୍ରୀଷ୍ଟ ପୂର୍ବ ସମୟର ପ୍ରସିଦ୍ଧିଠାରୁ ଅଧିକ ଋଦ୍ଧିମନ୍ତ ହୋଇପାରିବ । ସେହି କୀର୍ତ୍ତି ଅର୍ଜନ ନିମିତ୍ତ ସାମୂହିକ ପ୍ରୟାସର ଆବଶ୍ୟକତା ରହିଛି ।

ଏମ୍.ଆଇ.ଜି–୧–୨୨୭, ସତ୍ୟସାଇ ଏନ୍‌କ୍ଲେଭ
ଖଣ୍ଡଗିରି, ଭୁବନେଶ୍ୱର–୩୦

## ରପ୍ତାନୀ ସଚେତନତା ସେମିନାର ଓ ଆଇ.ଇ.ଏସ୍.ଏସ୍–୨୦୧୫ ସଂପର୍କିତ ରୋଡ୍ ସୋ'

ଏକ୍ସପୋର୍ଟ ପ୍ରମୋସନ ଆଣ୍ଡ ମାର୍କେଟିଂ ନିର୍ଦ୍ଦେଶାଳୟ ଏବଂ କଲିକତାସ୍ଥିତ ଇଂଜିନିୟରିଂ ଏକ୍ସପୋର୍ଟ ପ୍ରମୋସନ୍ କାଉନ୍‌ସିଲ, ଇଣ୍ଡିଆ(ଇ.ଇ.ପି.ସି), ପୂର୍ବାଞ୍ଚଳ ଶାଖାର ମିଳିତ ସହଯୋଗରେ ରପ୍ତାନୀ ସଚେତନତା ସେମିନାର ଓ ଇଣ୍ଡିଆ ଇଂଜିନିୟରିଂ ସୋର୍ସିଂ ସୋ(ଆଇ.ଇ.ଏସ୍.ଏସ୍)–୨୦୧୫ ସଂପର୍କିତ ରୋଡ୍ ସୋ ଅନୁଷ୍ଠିତ ହୋଇଯାଇଛି ।

ଏହାକୁ ଉଦ୍‌ଘାଟନ କରି ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗର ଶାସନ ସଚିବ ଶ୍ରୀ ପଞ୍ଚାନନ ଦାସ କହିଲେ ଯେ ଆମ ରାଜ୍ୟରେ ଏମ୍.ଏସ୍.ଏମ୍.ଇ କ୍ଷେତ୍ରରେ ବ୍ୟାପକ ଆତ୍ମ ନିଯୁକ୍ତି ସୁଯୋଗ ରହିଛି । ଏ ସଂପର୍କରେ ବ୍ୟାପକ ସଚେତନତା ସୃଷ୍ଟି ହେଲେ ଯୁବଶକ୍ତି ଏହାଦ୍ୱାରା ଉପକୃତ ହେବା ସହ ରାଜ୍ୟର ଅର୍ଥନୀତିକୁ ସୁଦୃଢ଼ କରିବାରେ ସହାୟକ ହେବେ । ସରକାରଙ୍କ ତରଫରୁ ଯୁବ ଉଦ୍ୟୋଗୀମାନଙ୍କୁ ଦିଆଯାଇଥିବା ସମସ୍ତ ସୁବିଧାର ସୁଯୋଗ ନେବାକୁ ସେ ଆହ୍ୱାନ ଜଣାଇଛନ୍ତି । ଦୃଢ଼ ଇଚ୍ଛାଶକ୍ତି ଦ୍ୱାରା ନୂତନ ଜ୍ଞାନକୌଶଳ ଆଧାରରେ ରପ୍ତାନୀ ଉପଯୋଗୀ ଉତ୍ପାଦ ତିଆରି କରିବା ଏବଂ ସେଗୁଡିକୁ ଅଧିକ ଆକର୍ଷଣୀୟ, ବ୍ୟବହାର ଉପଯୋଗୀ ଓ ଉନ୍ନତ ମାନର କରିବା ପାଇଁ ବିଭିନ୍ନ ପ୍ରଦର୍ଶନୀଗୁଡିକରେ ଅଂଶଗ୍ରହଣ କରି କୌଶଳ ଶିକ୍ଷା କରିବାକୁ ସେ ଗୁରୁତ୍ୱାରୋପ କରିଛନ୍ତି ।

ଇଇପିସି ଇଣ୍ଡିଆ, ପୂର୍ବାଞ୍ଚଳ ଶାଖାର ଅଧ୍ୟକ୍ଷ ଶ୍ରୀ ଏ.କେ. ଗାରୋଡିଆ ମୁମ୍ବାଇଠାରେ ୨୦୧୫ ନଭେମ୍ବର ୨୪ରୁ ୨୬ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେବାକୁ ଥିବା ଆଇ.ଇ.ଏସ୍.ଏସ୍.ରେ ଅଂଶଗ୍ରହଣ କରିବା ଦ୍ୱାରା ଉଦ୍ୟୋଗୀମାନଙ୍କ ଉତ୍ପାଦର ଆନ୍ତର୍ଜାତିକ ବିପଣନ ପାଇଁ ବିପୁଳ ସୁଯୋଗ ସୃଷ୍ଟି ହେବ ଏବଂ ରପ୍ତାନୀ ବ୍ୟବସ୍ଥା ପର୍ଯ୍ୟାପ୍ତ ସୁଧାର ଆସିପାରିବ ବୋଲି ସେ ପ୍ରକାଶ କରିଥିଲେ । ଏହି ସୋ'ର ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ସଂପର୍କରେ ବର୍ଣ୍ଣନା କରି ଆଞ୍ଚଳିକ ନିର୍ଦ୍ଦେଶକ ଶ୍ରୀମତୀ ଅନୀମା ପାଣ୍ଡେ ଏଥିରେ ଅଂଶଗ୍ରହଣ କରିବାକୁ ଉଦ୍ୟୋଗୀମାନଙ୍କୁ କହିଥିଲେ ।

❖ ❖ ❖

# ମାଟି ଯେଉଁଠି କଥା କହେ...

**ସୁଚେତା ପ୍ରିୟଦର୍ଶିନୀ**

ଟେରାକୋଟା (ପୋଡାମାଟି) କାମ ଭାରତର ଏକ ଅତି ପ୍ରାଚୀନ ପାରମ୍ପରିକ ହସ୍ତକଳା । ମୂର୍ତ୍ତି କଳା ଏବଂ ମାଟିପାତ୍ର ନିର୍ମାଣ ନିମନ୍ତେ ଟେରାକୋଟାର ବହୁଳ ବ୍ୟବହାର ସମ୍ପର୍କରେ ଇତିହାସରେ ଉଲ୍ଲେଖ ଅଛି । ପ୍ରାଚୀନ ଭାରତୀୟ ସିନ୍ଧୁ ସଭ୍ୟତାର ଭଗ୍ନାବଶେଷରୁ ମାଟି ପାତ୍ରର ବ୍ୟବହାର ସମ୍ପର୍କରେ ପ୍ରମାଣ ମିଳେ । ଟେରାକୋଟା ଏକ ଲାଟିନ୍ ଶବ୍ଦ । ଟେରା– କକ୍‌ଟାରୁ ଟେରାକୋଟା ଶବ୍ଦର ଉତ୍ପତ୍ତି । ଆମ ଓଡ଼ିଶାର ପାରମ୍ପରିକ ହସ୍ତକଳା ଭାବେ ଟେରାକୋଟାର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ପ୍ରାୟ ୪ର୍ଥ ଶତାବ୍ଦୀ ବେଳକୁ ଓଡ଼ିଶାର କୁମ୍ଭକାରମାନେ ମାଟିର ସୁନ୍ଦର ପାତ୍ର ତିଆରି କରିବାରେ ନିପୁଣତା ହାସଲ କରିସାରିଥିଲେ । ଦ୍ୱାଦଶ ଶତାବ୍ଦୀରେ ପୁରୀ ଜଗନ୍ନାଥ ମନ୍ଦିରରେ ମାଟି ହାଣ୍ଡି , କଳସ, ପଲମ, ସରା, ଅଭଡା କୁଡୁଆ ଆଦିର ବହୁଳ ବ୍ୟବହାର ଦେଖିବାକୁ ମିଳେ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ, ଟେରାକୋଟା ହସ୍ତଶିଳ୍ପ ଦ୍ୱାଦଶ ଶତାବ୍ଦୀ ଅଥବା ତହିଁ ପୂର୍ବରୁ ଓଡ଼ିଶାରେ ପ୍ରସିଦ୍ଧି ଏବଂ ପ୍ରତିଷ୍ଠା ଲାଭ କରିସାରିଥିଲା । ପୂର୍ବରୁ ଆମ ରାଜ୍ୟର କୁମ୍ଭକାରମାନେ ମୁଖ୍ୟତଃ ମାଠିଆ, ସୁରେଇ ଏବଂ ଗୃହ ଛାତ ନିମନ୍ତେ ଟାଇଲ୍ ନିର୍ମାଣ କରୁଥିଲେ । ପଶ୍ଚିମ ବଙ୍ଗର ବାଙ୍କୁରା ଜିଲ୍ଲା ଏହି ଟେରାକୋଟା ହସ୍ତକଳା ପାଇଁ ପ୍ରସିଦ୍ଧ । ଏଠାରେ ଏକପ୍ରକାର ଉନ୍ନତମାନର ମାଟି ଉପଲବ୍ଧ ହୁଏ । ତେଣୁ ଟେରାକୋଟାର ଅତ୍ୟନ୍ତ ସୂକ୍ଷ୍ମ କାରୁକାର୍ଯ୍ୟ କରିବାରେ ଏ ଅଞ୍ଚଳର କୁମ୍ଭକାରମାନେ ବେଶ୍ ନିପୁଣ । କାଳକ୍ରମେ ଓଡ଼ିଶାର କୁମ୍ଭକାରମାନେ ଏହି ଅଞ୍ଚଳର କଳାନୈପୁଣ୍ୟକୁ ଆପଣେଇ ନେଇ ଓଡ଼ିଶାର ଟେରାକୋଟା ହସ୍ତକଳାକୁ ଏକ ନୂତନ ରୂପରେଖ ଦେଇଛନ୍ତି ।



ଆମ ରାଜ୍ୟ ଓଡ଼ିଶାରେ କୁମ୍ଭାର ବା କୁମ୍ଭକାରଭାବେ ପରିଚିତ ହସ୍ତଶିଳ୍ପ କାରିଗରମାନେ ପୋଡାମାଟିରୁ ଏହି ଟେରାକୋଟା ସାମଗ୍ରୀ ପ୍ରସ୍ତୁତ କରିଥାନ୍ତି । ଏଥିପାଇଁ ନଦୀକୂଳରୁ ଚିକିଟା ମାଟି ଏବଂ ପଟୁମାଟି ସଂଗ୍ରହ କରାଯାଇଥାଏ । ଏହି ମାଟିରେ ଅଧିକ ଅଠାଳିଆ ଅଂଶ ରହିଥାଏ । ପ୍ରଥମେ ଏହି ମାଟିକୁ ହାତରେ ଭଲ ଭାବରେ ଗୁଣ୍ଡ କରାଯାଏ । ଏହାପରେ ପାଣିରେ ବତୁରାଇ ମାଟିକୁ ଯଥାସାଧ୍ୟ ନରମ କରାଯାଏ । ନରମ ମାଟିରୁ  ଗୋଡି, ଘାସ ଏବଂ ଆବର୍ଜନାକୁ ଭଲଭାବରେ ବଛାଯାଇ ପରିଷ୍କାର ଏବଂ ଅତ୍ୟନ୍ତ ଚିକ୍କଣ କରାଯାଏ । ଟେରାକୋଟା ସାମଗ୍ରୀ ନିର୍ମାଣ ପ୍ରଣାଳୀ ମୁଖ୍ୟତଃ ପାଞ୍ଚଭାଗରେ ବିଭକ୍ତ । ୧) ବାଡେଇ ବାଡେଇ ବା Plate beating, ୨) କୁମ୍ଭାର ଚକ ପଦ୍ଧତି, ୩) ବଳା ବା Rolling ପଦ୍ଧତି, ୪) ଢଳେଇ ପଦ୍ଧତି, ୫) ମେସିନ୍ ପଦ୍ଧତି । ଏହିସବୁ ପଦ୍ଧତିରେ ସାମଗ୍ରୀ ତିଆରି ହେବା ପରେ ଏହାକୁ ଖୁବ୍ ହାଲ୍‌କା ଭାବେ ଶୁଖାଯାଏ । ଅଳ୍ପ ଖରା ଅଳ୍ପ ଉତ୍ତାପରେ ଭଲଭାବେ ଶୁଖିବା ପରେ ଉନ୍ନତ ପ୍ରଣାଳୀରେ ଅଳ୍ପ ସମୟରେ ଅଳ୍ପ ଜାଳେଣୀରେ ଭାଟିରେ ପୋଡାଯାଏ । ଏହାଦ୍ୱାରା ଟେରାକୋଟା ସାମଗ୍ରୀ ଶକ୍ତ ହୁଏ ଏବଂ ଅଧିକ ଦିନ ପର୍ଯ୍ୟନ୍ତ ଅକ୍ଷତ ରହେ । ପୋଡାଯିବା

ପରେ ପ୍ରାକୃତିକ କଳା ରଙ୍ଗ ବା ଇଟା ରଙ୍ଗରେ ପରିଣତ ହୁଏ । ଏହା ପରେ ଆବଶ୍ୟକ ଅନୁଯାୟୀ ଉପକରଣକୁ ରଙ୍ଗ କରାଯାଏ ଏବଂ ବିଭିନ୍ନ ଚିତ୍ର ଅଙ୍କାଯାଇ ବଜାରକୁ ବିକ୍ରି ନିମନ୍ତେ ପ୍ରେରଣ କରାଯାଏ ।

ଆମ ରାଜ୍ୟର ସୋନପୁର (ସୁବର୍ଣ୍ଣପୁର), ବରଗଡ (ବରପାଲୀ), କେନ୍ଦୁଝର (ହଳଧରପୁର), ରାୟଗଡା, ଜଗତସିଂହପୁର (ଲୁଣ୍ଡୁକୁଆ), ଖୋର୍ଦ୍ଧା (ନୂଆଗାଁ), ଢେଙ୍କାନାଳ, ନୟାଗଡ, କେନ୍ଦ୍ରାପଡା ଇତ୍ୟାଦି ଅଞ୍ଚଳର କାରିଗରମାନେ ପାରମ୍ପରିକ ସାମଗ୍ରୀ ସହିତ କାରୁକାର୍ଯ୍ୟପୂର୍ଣ୍ଣ ଟେରାକୋଟା ସାମଗ୍ରୀ ବହୁଳଭାବେ ପ୍ରସ୍ତୁତ କରିଥାଆନ୍ତି । ମୁଖ୍ୟତଃ ଟେରାକୋଟାରେ ନିର୍ମିତ ଦେବାଦେବୀ ମୂର୍ତ୍ତି, ଖେଳନା, ଗୃହ ସଜ୍ଜା ଉପକରଣ, ବିଭିନ୍ନ ପ୍ରକାର ପଶୁପକ୍ଷୀ, ମାଟି ଦୀପ ସାମଗ୍ରୀର ବଜାରରେ ବିଶେଷ ଚାହିଦା ରହିଛି । ଦେବଦେବୀ ମୂର୍ତ୍ତି ମଧ୍ୟରେ କାଳିୟ ଦଳନ, ଗିରି ଗୋବର୍ଦ୍ଧନ, ବସ୍ତ୍ରହରଣ, ରାସଲୀଳା, ବୋଇତ ବନ୍ଦାଣ, ବିଭିନ୍ନ ଆକୃତିର ଦୀପ ଏବଂ ଦୀପଷ୍ଟାଣ୍ଡ ବେଶ୍ ଲୋକପ୍ରିୟ । ସେହିପରି ପଶୁପକ୍ଷୀଙ୍କ ମଧ୍ୟରେ ହାତୀ, ଘୋଡା ଏବଂ ମୟୂର, ଶୁଆ ଆଦି କୁମ୍ଭକାରମାନେ ବହୁଳ ଭାବେ ନିର୍ମାଣ କରିଥାନ୍ତି । କିନ୍ତୁ ଆଧୁନିକ ଜୀବନଶୈଳୀରେ ଟେରାକୋଟାର ସୌଖୀନ ଅଳଙ୍କାର, ଗୃହସଜ୍ଜା ଉପକରଣ, ଫୁଲକୁଣ୍ଡ, ବଗିଚା ସଜ୍ଜା ଉପକରଣ ଏବଂ ତାରକା ହୋଟେଲର ସାଜସଜା ତଥା ରେଷ୍ଟୁରାଣ୍ଟରେ ମଧ୍ୟ ରୋଷେଇ ଉପକରଣ ଭାବେ ଟେରାକୋଟା ସାମଗ୍ରୀର ବ୍ୟାପକ ବ୍ୟବହାର ଦେଖିବାକୁ ମିଳୁଛି । ଏତଦ୍‌ବ୍ୟତୀତ ବିଭିନ୍ନ ଅଞ୍ଚଳ ମଧ୍ୟ କିଛି ନିର୍ଦ୍ଦିଷ୍ଟ ସାମଗ୍ରୀ ନିର୍ମାଣରେ ପ୍ରସିଦ୍ଧି ଲାଭ କରିଛି । କେନ୍ଦୁଝର ଘଟଗାଁର ଅଧିଷ୍ଠାତ୍ରୀ ଦେବୀ ତାରିଣୀ ମନ୍ଦିରକୁ କେନ୍ଦ୍ର କରି ଏ ଅଞ୍ଚଳରେ କୁମ୍ଭକାରମାନେ ବହୁଳ ପରିମାଣରେ ବିଭିନ୍ନ ଆକୃତିର ଚିତ୍ରବିଚିତ୍ର ଘୋଡା ନିର୍ମାଣ କରିଥାନ୍ତି । ସେହିପରି ସୋନପୁର ଜିଲ୍ଲାର ଲଙ୍କା ପୋଡି, ହନୁମାନ ମୂର୍ତ୍ତି, ଦୋଳା ପାଲିଙ୍କି ଆଦି ମଧ୍ୟ ବେଶ୍ ଆକର୍ଷଣୀୟ । ନୟାଗଡ ଜିଲ୍ଲାର କୁମ୍ଭକାରମାନେ ଚମତ୍କାର ଆର୍ଟିଷ୍ଟିକ ପଟେରୀ ନିର୍ମାଣରେ ଦକ୍ଷ ଏବଂ କୁଶଳୀ । ଟେରାକୋଟା ସାମଗ୍ରୀ ଅଳ୍ପ ଖର୍ଚ୍ଚରେ ନିର୍ମାଣ ହୁଏ ଏବଂ ଏହା ମଧ୍ୟ ପରିବେଶ ଅନୁକୂଳ । ଅନେକ କୁମ୍ଭକାର ମଧ୍ୟ ଟେରାକୋଟା ପେଣ୍ଟିଂ ନିମନ୍ତେ ପ୍ରାକୃତିକ ରଙ୍ଗ ବ୍ୟବହାର କରିଥାନ୍ତି । ଗୋଟିଏ ଗୋଟିଏ ସାମଗ୍ରୀ ଆକୃତିକୁ ନେଇ ଦୁଇରୁ ଦଶଦିନ ମଧ୍ୟରେ ନିର୍ମାଣ ଶେଷ ହୁଏ ଏବଂ ଚାହିଦାକୁ ଦେଖି ୧୦ରୁ ୧୫ ହଜାର ଟଙ୍କାରେ ମଧ୍ୟ ବିକ୍ରି ହୋଇଥାଏ ।

ଆମ ରାଜ୍ୟରେ ପ୍ରାୟ ୧୦,୦୦୦ରୁ ଊର୍ଦ୍ଧ୍ୱ କୁମ୍ଭକାର ପରିବାର ଏହି ଶିଳ୍ପରେ ନିୟୋଜିତ ହୋଇ ଜୀବିକା ନିର୍ବାହ କରୁଛନ୍ତି । ସମୟାନୁକ୍ରମେ ବିଭିନ୍ନ ପ୍ରକାର ଧାବତ ପଦାର୍ଥର ବହୁଳ ପ୍ରଚଳନ ଏହି ଟେରାକୋଟା ହସ୍ତଶିଳ୍ପ ଏବଂ ଏହାର କାରିଗରମାନଙ୍କ ଜୀବନ ଜୀବିକା ଉପରେ ପ୍ରତିକୂଳ ପ୍ରଭାବ ପକାଇଲା । ଟେରାକୋଟା ବ୍ୟବହାର୍ଯ୍ୟ ସାମଗ୍ରୀର ବଜାର ଚାହିଦାକୁ ଦୃଷ୍ଟିରେ ରଖି କାରିଗରମାନଙ୍କୁ ପ୍ରୋତ୍ସାହିତ କରିବା ପାଇଁ ରାଜ୍ୟ ସରକାରଙ୍କ ହସ୍ତତନ୍ତ, ବୟନ ଓ ହସ୍ତଶିଳ୍ପ ବିଭାଗ ତରଫରୁ ବିଭିନ୍ନ ପ୍ରକାରର ସହାୟତା ପ୍ରଦାନ କରାଯାଇ ଆତ୍ମ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଉଛି । ସ୍ୱୟଂ ସହାୟକ ଗୋଷ୍ଠୀ ଜରିଆରେ ସେମାନଙ୍କ ଦକ୍ଷତା ବୃଦ୍ଧି, କାରିଗରୀ କୌଶଳ ବୃଦ୍ଧି ତାଲିମ, ଉନ୍ନତ ଯନ୍ତ୍ରପାତି ଯୋଗାଣ, ବ୍ୟାଙ୍କ ଋଣ ସହାୟତା, ଭିତ୍ତିଭୂମିର ବିକାଶ, ନମୁନା ବିକାଶ, ପ୍ରଦର୍ଶନୀ ମାଧ୍ୟମରେ ବଜାର ସହାୟତା ଇତ୍ୟାଦି ଯୋଗାଇ ଦିଆଯାଉଛି । ବିଗତ ୧୦ ବର୍ଷରେ ହସ୍ତଶିଳ୍ପ ପୁଞ୍ଜ ବିକାଶ ଯୋଜନାରେ ୨୩ଗୋଟି ଜିଲ୍ଲାରେ ୨୫୩୦ ଜଣ କାରିଗରଙ୍କୁ ନେଇ ୫୩ ଗୋଟି ଟେରାକୋଟା ଗ୍ରାମର ବିକାଶ କରାଯାଇଛି । ରାଜ୍ୟ ହସ୍ତକଳା ଏବଂ ନମୁନା ବିକାଶ ପ୍ରତିଷ୍ଠାନ (ସିଡାକ୍)ଠାରେ



ଟେରାକୋଟା ହସ୍ତଶିଳ୍ପରେ ବର୍ଷିକିଆ ତାଲିମ୍ ପ୍ରଦାନ କରାଯାଉଛି । ଜିଲ୍ଲାସ୍ତରରେ ମଧ୍ୟ କୁଶଳୀ କାରିଗରମାନଙ୍କ ଜରିଆରେ ତାଲିମ ଦିଆଯାଉଛି । ରାଜ୍ୟ ତଥା ରାଜ୍ୟ ବାହାରର ଖ୍ୟାତନାମା ଡିଜାଇନରମାନଙ୍କ ଦ୍ୱାରା ନମୁନା ବିକାଶ କରାଯାଇ ବଜାର ଚାହିଦା ଏବଂ ଗ୍ରାହକଙ୍କ ରୁଚିମୁତାବକ ବହୁଳ ପରିମାଣର ଟେରାକୋଟା ସାମଗ୍ରୀ ପ୍ରସ୍ତୁତ କରିବା ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଛି । ରାଜ୍ୟର ୩୬୭ ଜଣ କାରିଗରଙ୍କୁ ନେଇ ୧୩ଗୋଟି କାର୍ଯ୍ୟକ୍ରମ ଆୟୋଜନ କରାଯାଇ ୪୨୭ଟି ନମୁନା ବିକାଶ କରାଯାଇଛି । ବିଭିନ୍ନ ନୂତନ ଡିଜାଇନର ଟେରାକୋଟା ସାମଗ୍ରୀ ପ୍ରସ୍ତୁତି ନିମିତ୍ତ ନୂତନ ଜ୍ଞାନକୌଶଳ ତାଲିମ ନେବା ପାଇଁ ୧୫ଜଣ ଟେରାକୋଟା କାରିଗରଙ୍କୁ ଜାତୀୟ ଡିଜାଇନ୍ ପ୍ରତିଷ୍ଠାନ, (NID) ଅହମ୍ମଦାବାଦକୁ ପଠାଯାଇ ତାଲିମ ଦିଆଯାଇଛି । ରାୟଗଡା ଜିଲ୍ଲାର ୧୦ଜଣ କାରିଗରଙ୍କୁ ବାଙ୍କୁଡା (ପଶ୍ଚିମବଙ୍ଗ)କୁ ୧୦ ଦିନିଆ କର୍ମଶାଳାରେ ଭାଗନେବା ପାଇଁ ପଠାଯାଇଛି ।

ହସ୍ତଶିଳ୍ପ ପୁଞ୍ଜାରେ ଉତ୍ପାଦିତ ସାମଗ୍ରୀର ବିକ୍ରିବଟାର ସୁଯୋଗ ସୃଷ୍ଟି କରିବା ନିମନ୍ତେ ପ୍ରତ୍ୟେକ ବର୍ଷ ଭୁବନେଶ୍ୱର ଏବଂ ରାଉରକେଲାରେ ବାର୍ଷିକ ଟେରାକୋଟା ପ୍ରଦର୍ଶନୀ (ମୃତ୍ତିକା) ଆୟୋଜନ କରାଯାଉଛି । ଏହି ପ୍ରଦର୍ଶନୀରେ ରାଜ୍ୟର ସବୁ ଜିଲ୍ଲାର ସର୍ବୋତ୍କୃଷ୍ଟ ସାମଗ୍ରୀର ପ୍ରଦର୍ଶନ ଦେଖିବାକୁ ମିଳେ । ଭୁବନେଶ୍ୱରଠାରେ ଅନୁଷ୍ଠିତ ହେଉଥିବା ମୃତ୍ତିକା ପ୍ରଦର୍ଶନୀ ଚଳିତ ବର୍ଷ ୧୦ମ ବର୍ଷରେ ପଦାର୍ପଣ କରିଛି । ନଭେମ୍ବର ୨ରୁ ୮ ତାରିଖ ପର୍ଯ୍ୟନ୍ତ ଏହି ପ୍ରଦର୍ଶନୀ ଇଡ୍‌କୋ ପ୍ରଦର୍ଶନୀ ପଡିଆଠାରେ ଅନୁଷ୍ଠିତ ହେଉଛି । ଏଥିରେ ୧୯ଟି ଜିଲ୍ଲାର ୧୨୦ ଜଣ କାରିଗରଙ୍କୁ ସେମାନଙ୍କ ପ୍ରସ୍ତୁତ ସାମଗ୍ରୀର ପ୍ରଦର୍ଶନ ଓ ବିକ୍ରୟ ପାଇଁ ସୁଯୋଗ ଦିଆଯାଇଛି । ଦିନକୁ ଦିନ ଏହି ମେଳାର ଲୋକପ୍ରିୟତା ବିଶେଷ ବୃଦ୍ଧି ପାଇବାରେ ଲାଗିଛି । ଚଳିତ ବର୍ଷ ମେଳାରେ ପ୍ରାୟ ୫୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ବ୍ୟବସାୟିକ କାରବାର ହୋଇଛି । ଏତଦ୍‌ବ୍ୟତୀତ ଅନେକ ହୋଟେଲ୍, ଶିକ୍ଷାନୁଷ୍ଠାନ, କର୍ପୋରେଟ୍ ହାଉସ୍ ଏବଂ ରପ୍ତାନୀ ସଂସ୍ଥା ତଥା ଉଦ୍ୟୋଗୀମାନେ ନିଜ ଅନୁଷ୍ଠାନ ନିମନ୍ତେ ବିପୁଳ ପରିମାଣର ସାମଗ୍ରୀ ପାଇଁ ଅଗ୍ରୀମ ଦେଇଛନ୍ତି । ଏଥିରୁ ଟେରାକୋଟାର ବହୁଳ ଲୋକପ୍ରିୟତା ଅନୁମେୟ । କଳା ଏବଂ କାରିଗରଙ୍କ ରାଜ୍ୟ ହେଉଛି ଓଡ଼ିଶା । ନିଷ୍ପ୍ରାଣ ପଥର, ମାଟି ଏବଂ ବାଲିରେ ମଧ୍ୟ ଏ ରାଜ୍ୟର କଳାକାରମାନେ ସୃଷ୍ଟି କରିପାରନ୍ତି ଅନୁପମ କଳାକୃତି । ଉତ୍କଳ ମାଟିର ଏ ପାରମ୍ପରିକ ହସ୍ତକଳା ବଞ୍ଚିରହୁ । ଶତାବ୍ଦୀ ଶତାବ୍ଦୀ ଧରି ପୁରୁଷାନୁକ୍ରମିକଭାବେ ଏହି କୌଳିକ ବୃତ୍ତିକୁ ଉଜ୍ଜୀବିତ ରଖି ଆସିଥିବା କୁମ୍ଭକାରମାନଙ୍କ ଜୀବନ ଜୀବିକାର ସୁରକ୍ଷା ନିମନ୍ତେ ଉଭୟ ସରକାରୀ ଏବଂ ବେସରକାରୀ ସ୍ତରରେ ଉଦ୍ୟମ ହେବା ଆବଶ୍ୟକ ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ

## ସବୁ ଗ୍ରାମପଞ୍ଚାୟତକୁ ପର୍ଯ୍ୟାପ୍ତ ଆର୍ଥିକ ଅନୁଦାନ ସମ୍ବନ୍ଧେ ସରପଞ୍ଚଙ୍କୁ ତାଲିମ

ଭୁବନେଶ୍ୱର ପଞ୍ଚାୟତ ସମିତି ସମ୍ମିଳନୀ ଗୃହରେ ଗ୍ରାମ ପଞ୍ଚାୟତକୁ ୪ର୍ଥ ରାଜ୍ୟ ଅର୍ଥ କମିଶନ ଓ ୧୪ତମ କେନ୍ଦ୍ରୀୟ ଅର୍ଥ ଅନୁଦାନ ସଂପର୍କରେ ସମସ୍ତ ସରପଞ୍ଚମାନଙ୍କୁ ସଚେତନତା କରାଯାଇଥିଲା । ରାଜ୍ୟ ପଞ୍ଚାୟତିରାଜ ବିଭାଗ ନିର୍ଦ୍ଦେଶକ ଶ୍ରୀ ଦେବେନ୍ଦ୍ର ପ୍ରସାଦ ଦାସ ବିଭିନ୍ନ ଗ୍ରାମପଞ୍ଚୟତକୁ ଅଧିକ ଆର୍ଥିକ ଅନୁଦାନ ସଂପର୍କରେ ଜିଲ୍ଲା ଯୋଜନା କମିଟିର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ସରପଞ୍ଚମାନଙ୍କୁ ଅବଗତ କରାଇଥିଲେ । ଏ ସଂପର୍କରେ ପଞ୍ଚାୟତିରାଜ ବିଭାଗର ନିର୍ଦ୍ଦେଶାବଳୀ ଓ ନୂତନ ଯୋଜନା ଓ ବିଭିନ୍ନ ତଥ୍ୟ ସପର୍କରେ ସୂଚନା ପ୍ରଦାନ କରିଥିଲେ । ସରପଞ୍ଚମାନେ ବିଭିନ୍ନ ପ୍ରଶ୍ନ ପଚାରି ସେମାନଙ୍କର ସନ୍ଦେହ ଦୂର କରିଥିଲେ ।

❖ ❖ ❖

# ଦେଶ ସେବକ ପ୍ରାଣନାଥ ପଟ୍ଟନାୟକ

ଜବାହରଲାଲ ସୁବୁଦ୍ଧି

ସ୍ୱାର୍ଥ ତ୍ୟାଗୀ, ଦେଶସେବୀ, ଜାତୀୟ ମୁକ୍ତି ସଂଗ୍ରାମରେ ବିପ୍ଳବୀ ପ୍ରାଣନାଥ ପଟ୍ଟନାୟକଙ୍କ ଅବଦାନ ଅତୁଳନୀୟ । ଦେଶରେ ଅନ୍ୟାୟ, ଅନୀତି, ଶୋଷଣ ଓ ଅତ୍ୟାଚାର ବିରୋଧରେ ସେ ସାରା ଜୀବନ ସଂଗ୍ରାମ ଜାରି ରଖିଥିଲେ, ଯେଉଁଥିପାଇଁ କି ତାଙ୍କୁ ଦଶ ଥର ବନ୍ଦୀ ଜୀବନ କଟାଇବାକୁ ପଡ଼ିଥିଲା । ତାଙ୍କର ଦେଶ ପାଇଁ ତ୍ୟାଗ, ସାଧନା ଓ ନିଃସ୍ୱାର୍ଥପର ଜନସେବା ବର୍ତ୍ତମାନର ଯୁବସମାଜ ପାଇଁ ପ୍ରେରଣାର ଉତ୍ସ । ସେ ଥିଲେ ସ୍ୱାଧୀନତା ସଂଗ୍ରାମର ପ୍ରବୀଣ ଯୋଦ୍ଧା, ଓଡ଼ିଶାର କୃଷକ ନେତା ଓ କମ୍ୟୁନିଷ୍ଟ ଆନ୍ଦୋଳନର ଅନ୍ୟତମ ଆଦ୍ୟ ପ୍ରବର୍ତ୍ତକ, ବିଶିଷ୍ଟ ଶିକ୍ଷାବିତ୍ ଓ ସାହିତ୍ୟିକ। ତାଙ୍କ ସମ୍ପର୍କରେ ଆଜିର ଯୁବ ସମାଜ ଅନେକ ଅବଗତ ନୁହନ୍ତି । ସେଥିପାଇଁ ତାଙ୍କ ଜୀବନାଦର୍ଶ ସମ୍ପର୍କରେ ଦେଶର ଭବିଷ୍ୟତ ଯୁବ ସମାଜ ଜାଣିବା ଉଚିତ୍ ।



ପ୍ରାଣନାଥ ବାବୁ ୧୯୦୫ ମସିହା ନଭେମ୍ବର ୧୬ ତାରିଖରେ ପୁରୀ ଜିଲ୍ଲା କଣାସ ଥାନା ଅନ୍ତର୍ଗତ ଡିମିରି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ହେଉଛି ମଦନ ମୋହନ ପଟ୍ଟନାୟକ ଓ ମାତାଙ୍କ ନାମ ଚିତ୍ରାଦେବୀ । ମଦନ ମୋହନ ପଟ୍ଟନାୟକଙ୍କ ପାଂଚଜଣ ପୁତ୍ର ଯଥାକ୍ରମେ ବାବୁ ବନବିହାରୀ, ବାବୁ ବ୍ରଜବନ୍ଧୁ, ବାବୁ ଉଦୟନାଥ, ବାବୁ ଶ୍ରୀନାଥ ଓ କନିଷ୍ଠ ପୁତ୍ର ବାବୁ ପ୍ରାଣନାଥ ଏବଂ ଗୋଟିଏ କନ୍ୟା ଧନମଣୀ । ସେ ଥିଲେ ନିମ୍ନ ମଧ୍ୟବିତ୍ତ ପରିବାରର ସନ୍ତାନ । ଗ୍ରାମ ଚାଟଶାଳୀରେ ପ୍ରାଣନାଥ ବାବୁ ପଢ଼ା ସାରି କଣାସରେ ପ୍ରାଥମିକ ଶିକ୍ଷା ଓ ପୁରୀ ଜିଲା ସ୍କୁଲରେ ମାଧ୍ୟମିକ ଶିକ୍ଷା (ସେତେବେଳେ ଏନ୍‌ଟ୍ରାନ୍‌ସ ନାମରେ କଥିତ) ଶେଷ କରି ରେଭେନ୍ସା କଲେଜରେ ଅଧ୍ୟୟନ କଲେ । ଶେଷରେ ବନାରସର କାଶୀ ବିଦ୍ୟାପୀଠରେ ଶିକ୍ଷା ଅଧ୍ୟୟନ କରିଥିଲେ । ତାଙ୍କ ଜୀବନର ଆଦର୍ଶ ଥିଲେ ମହାତ୍ମା ଗାନ୍ଧୀ ଓ ପଣ୍ଡିତ ଗୋପବନ୍ଧୁ ଦାସ । ପ୍ରାଣନାଥ ବାବୁଙ୍କ ସଂଗ୍ରାମମୟ ଜୀବନରେ ପ୍ରେରଣାର ଉତ୍ସ ଥିଲେ ସହଧର୍ମିଣୀ ମଞ୍ଜରୀ ଦେବୀ । କର୍ମ ଭୂମି ଥିଲା ଜଟଣୀ ଓ ଖୋର୍ଦ୍ଧା ଅଂଚଳ । ବିଂଶ ଶତାବ୍ଦୀରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଦେଶ ସ୍ୱାଧୀନତା ପାଇଁ ଯେଉଁ ବିପ୍ଳବର ଯୁଗ ଆସିଥିଲା ଏବଂ ସେଥିରେ ଯେଉଁମାନେ ଝାସ ଦେଇଥିଲେ ସେମାନଙ୍କ ମଧ୍ୟରେ ବିପ୍ଳବୀ ପ୍ରାଣନାଥ ପଟ୍ଟନାୟକ ଥିଲେ ଅନ୍ୟତମ । ୧୯୩୫ରେ ପରାଧୀନ ଭାରତର ପ୍ରଥମ ନିର୍ବାଚନରେ କଂଗ୍ରେସ ଟିକେଟ୍‌ରେ ଖୋର୍ଦ୍ଧାରୁ କୃଷକ ନେତା ଭାବରେ ଲଢ଼ି ପ୍ରାଣନାଥ ବାବୁ ଜିତିଥିଲେ । ସ୍ୱାଧୀନତା ପରେ ୧୯୫୭ରେ ଦ୍ୱିତୀୟ ସାଧାରଣ ନିର୍ବାଚନ ରଣାଙ୍ଗନରେ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ ଭାବେ ଜିତି ଲୋକଙ୍କ ସେବା କରିବା ପାଇଁ ସୁଯୋଗ ପାଇଥିଲେ । ସାରା ଜୀବନ ଗରିବ, ଚାଷୀ, ମୂଲିଆ, ଖଟିଖିଆ ମେହନତି ଲୋକଙ୍କୁ ଯଥାର୍ଥ ସେବା ଯୋଗାଇ ଦେଉଥିଲେ । କମ୍ୟୁନିଷ୍ଟ ମତବାଦରେ ବିଶ୍ୱାସ ରଖି ଗାଁ ଠୁ ଆରମ୍ଭ କରି ସହର ପର୍ଯ୍ୟନ୍ତ ଲୋକଙ୍କ ସେବା କରିବା, ଖୋର୍ଦ୍ଧାର ବିଧାୟକ ଭାବେ ରହି ଖୋର୍ଦ୍ଧା ତଥା ରାଜ୍ୟ ଓ ଦେଶର ଲୋକଙ୍କ ସାମାଜିକ ଓ ଅର୍ଥନୈତିକ ବିକାଶ କ୍ଷେତ୍ରରେ ଶାନ୍ତିପୂର୍ଣ୍ଣ ବିପ୍ଳବ ସୃଷ୍ଟି କରି ସେ ଯଶସ୍ୱୀ ହୋଇଛନ୍ତି । ଓଡ଼ିଶାର ଜଣେ ନିଷ୍ଠାପର ବ୍ୟକ୍ତିତ୍ୱ, ତ୍ୟାଗୀ, ସ୍ୱାଧୀନତା ସଂଗ୍ରାମର ମହାରଥୀ,

କୃଷକ ଆନ୍ଦୋଳନର ପ୍ରତିଷ୍ଠାତା, ଛାତ୍ରାବସ୍ଥାରେ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହ ଆଦିରେ ଯୋଗ ଦେଇ ସ୍ୱାଧୀନତା ସଂଗ୍ରାମରେ ନିଜକୁ ଉତ୍ସର୍ଗ କରିଥିଲେ । ସେ ସମାଜର ନିମ୍ନ ବର୍ଗର ଲୋକଙ୍କ ବିକାଶ ଦିଗରେ କାର୍ଯ୍ୟକରି ନିଜକୁ ଜଣେ ନିଷ୍ଠାପର ଜନସେବୀ ଭାବରେ ପ୍ରମାଣିତ କରିଯାଇଛନ୍ତି । ମଣିଷ ହିସାବରେ ସେ ଅପରିବର୍ତ୍ତନୀୟ ଆଦର୍ଶତା ବଜାୟ ରଖିଥିଲେ । ରାଜ୍ୟରେ ଶିକ୍ଷାର ପ୍ରସାର, ସମାଜସେବା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ଯଥେଷ୍ଟ ଅବଦାନ ଥିଲା । ଜଟଣୀରେ ଜଟଣୀ ଉଚ୍ଚ ବିଦ୍ୟାଳୟ ଓ ଖୋର୍ଦ୍ଧାରେ ଖୋର୍ଦ୍ଧା ମହାବିଦ୍ୟାଳୟ ପ୍ରତିଷ୍ଠା କରିଛନ୍ତି । ୧୯୭୦ ମସିହା ଅକ୍ଟୋବର ୫ ତାରିଖ ଦିନ ପ୍ରାଣନାଥ ବାବୁ କଲିକତାଠାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ତାଙ୍କ ମୃତ୍ୟୁ ପରେ ପ୍ରାଣନାଥ ଉଚ୍ଚ ବିଦ୍ୟାଳୟ, ଜଟଣୀ ଓ ଖୋର୍ଦ୍ଧାର ପ୍ରାଣନାଥ ମହାବିଦ୍ୟାଳୟ ତାଙ୍କ ନାମରେ ନାମିତ ହୋଇ ଯଥାର୍ଥ ସମ୍ମାନ ଦିଆଯାଇଛି ।

ପ୍ରାଣନାଥ ବାବୁଙ୍କ ଘରସଂସାର କହିଲେ ପତ୍ନୀ ଥିଲେ ଅବିଭକ୍ତ ପୁରୀ ଜିଲ୍ଲା ଚଣାହାଟର ବିପ୍ଳବୀ କବି କୃଷ୍ଣ ମୋହନଙ୍କ ଝିଅ ମଞ୍ଜରୀ ଦେବୀ, ଯିଏ କି ଥିଲେ ଜଣେ ସୁଗୃହିଣୀ ସହିବାରେ ବସୁମତୀ ଓ ଜୀବନ ଯୁଦ୍ଧରେ ଜଗଦ୍ଧାତ୍ରୀ । ପ୍ରାଣନାଥ ବାବୁଙ୍କର ଛ'ଜଣ ପ୍ରତିଷ୍ଠିତ ଯୋଗ୍ୟ ସନ୍ତାନ ଡାକ୍ତର, ଇଞ୍ଜିନିୟର, ଅର୍ଥନୀତି ବିଶାରଦ, ରସାୟନବିତ୍ ଓ ସାମ୍ବାଦିକ ଭାବରେ ଦେଶ ବିଦେଶରେ ଲୋକଙ୍କ ସେବାରେ କାର୍ଯ୍ୟରତ ରହିଛନ୍ତି । ସଫଳ ପିତାମାତାଙ୍କର ଯୋଗ୍ୟ ସନ୍ତାନ ବୃନ୍ଦ ହେଉଛନ୍ତି ଅନ୍ୟମାନଙ୍କ ପାଇଁ ପ୍ରେରଣାର ଉତ୍ସ ।

ପ୍ରାଣନାଥ ବାବୁଙ୍କ ମାନବ ଜୀବନ ସାର୍ଥକ ହୋଇଛି । ତାଙ୍କ ଜୀବନାଦର୍ଶର ପ୍ରଭାବ ବହୁ ଲୋକଙ୍କୁ ଉଦ୍‌ବୁଦ୍ଧ କରିବ, ଏହା ନିଃସନ୍ଦେହରେ କୁହାଯାଇପାରେ ।

ବଡ଼ତୋଟା, ଜଟଣୀ, ଖୋର୍ଦ୍ଧା

## ରାଜ୍ୟରେ ରେଳ ପଥର ବିକାଶ ନିମନ୍ତେ ଏସ୍‌ପିଭି ଗଠନ

ରାଜ୍ୟରେ ରେଳ ଭିତ୍ତିଭୂମିର ବିକାଶ ନିମନ୍ତେ ସ୍ପେସାଲ ପର୍ପଜ୍ ଭେଇକିଲ୍(ଏସ୍‌ପିଭି) ଗଠନ କରାଯିବ । ଏଥିନିମନ୍ତେ ନଭେମ୍ବର ୪ ତାରିଖ ଦିନ ନୂଆଦିଲ୍ଲୀଠାରେ ରେଳ ମନ୍ତ୍ରାଳୟ ଓ ରାଜ୍ୟ ସରକାରଙ୍କ ମଧ୍ୟରେ ଏକ ବୁଝାମଣା ପତ୍ର ସ୍ୱାକ୍ଷରିତ ହେବ । ରାଜ୍ୟ ସରକାରଙ୍କ ତରଫରୁ ବାଣିଜ୍ୟ ଓ ପରିବହନ ବିଭାଗର କମିଶନର ତଥା ଶାସନ ସଚିବ ଶ୍ରୀ ସଞ୍ଜୟ ରସ୍ତୋଗୀ ଏବଂ ରେଳ ମନ୍ତ୍ରାଳୟ ପକ୍ଷରୁ ରେଲୱେ ବୋର୍ଡର ଅଧକ୍ଷ ଏହି ବୁଝାମଣାପତ୍ରରେ ସ୍ୱାକ୍ଷର କରିବେ । କେନ୍ଦ୍ର ରେଳ ମନ୍ତ୍ରୀ ଶ୍ରୀ ସୁରେଶ ପ୍ରଭୁ ଓ ରାଜ୍ୟ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ରମେଶ ଚନ୍ଦ୍ର ମାଝୀ ଏହି ଅବସରରେ ଉପସ୍ଥିତ ରହିବେ ।

ଏସ୍‌ପିଭି ନିମନ୍ତେ ଏକ ଜଏଣ୍ଟ ଭେଞ୍ଚର କମ୍ପାନୀ ଗଠନ କରାଯାଇ ରାଜ୍ୟରେ ୭ଗୋଟି ରେଳ ଲାଇନ ନଥିବା ଜିଲ୍ଲାରେ ରେଳ ଭିତ୍ତିଭୂମିର ବିକାଶ କରାଯିବ । ଏହି ପ୍ରକଳ୍ପରେ ରାଜ୍ୟ ସରକାରଙ୍କର ୫୧ ପ୍ରତିଶତ ଓ କେନ୍ଦ୍ର ରେଳ ମନ୍ତ୍ରାଳୟର ୪୯ ପ୍ରତିଶତ ଅଂଶଧନ ରହିବ । ପ୍ରାଥମିକ ପର୍ଯ୍ୟାୟରେ ୨୦୦ କୋଟି ଟଙ୍କା ବିନିଯୋଗ କରାଯିବ ଏବଂ ରାଜ୍ୟର ଜୟପୁର-ମାଲକାନଗିରି, ନବରଙ୍ଗପୁର-ଜୟପୁର ରେଳପଥ ପାଇଁ ପ୍ରାଥମିକତା ଦିଆଯିବ ବୋଲି ମନ୍ତ୍ରୀ ଶ୍ରୀ ମାଝୀ ପ୍ରକାଶ କରିଛନ୍ତି ।

# ଓଡ଼ିଶାରେ ରେଶମ ଚାଷ ଓ ଆର୍ଥିକ ଉପାଦେୟତା

ଡକ୍ଟର ସୁଧାକର ପାତ୍ର

ରେଶମ ଚାଷ ଟସର ଓ ସିଲ୍କ ବସ୍ତ୍ର ଉତ୍ପାଦନ ପାଇଁ ଭାରତ ପ୍ରସିଦ୍ଧି ଲାଭ କରିଛି । ଓଡିଶାର ଆଦିବାସୀ ବହୁଳ ଜିଲ୍ଲା ଯଥା ମୟୂରଭଂଜ, କେନ୍ଦୁଝର, ସୁନ୍ଦରଗଡ, କନ୍ଧମାଳ, ରାୟଗଡା, କୋରାପୁଟ, ଗଜପତି, କଳାହାଣ୍ଡି ଓ ନବରଙ୍ଗପୁର ଜିଲ୍ଲାରେ ରେଶମ ଚାଷ ଗ୍ରାମାଞ୍ଚଳର ଗରିବ ଶ୍ରେଣୀର ଲୋକମାନଙ୍କର ଏକ ମୁଖ୍ୟ ଜୀବିକା ଅଟେ । ରେଶମ ଚାଷ ଶ୍ରମଭିତ୍ତିକ ଓ କୃଷିଭିତ୍ତିକ କାର୍ଯ୍ୟ ହୋଇଥିବାରୁ ଏହା ବର୍ଷସାରା କୃଷକମାନଙ୍କୁ ଆୟ ପ୍ରଦାନ କରିବାରେ ସହାୟକ ହୋଇଥାଏ । ୧୯୭୮ ମହିହାରେ ଓଡିଶାରେ ପ୍ରଥମ ଥର ପାଇଁ ରେଶମ ଚାଷ ଆରମ୍ଭ ହୋଇଥିଲା । ବିଗତ  ବର୍ଷ ମଧ୍ୟରେ ରେଶମ ଚାଷ ଓଡିଶାରେ ସର୍ବାଧିକ ଆଦୃତ ହୋଇଥିବାରୁ ଏହାର ପ୍ରସାର ଓ ପ୍ରଗତି ପାଇଁ ଓଡିଶା ସରକାର ବିଶେଷ ଯତ୍ନଶୀଳ ଅଛନ୍ତି । ସାଧାରଣତଃ ମଲବେରୀ, ଟସର ଓ ଏରିପୋକ ଆଦି ତିନି ପ୍ରକାର ରେଶମ ପୋକ ଓଡିଶାରେ ଚାଷ କରାଯାଏ । ଭାରତରେ ରେଶମ ଉତ୍ପାଦନରେ ଓଡିଶା ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ଟସର ପୁରାତନ ପ୍ରଣାଳୀରେ ପ୍ରାକୃତିକ ଜଙ୍ଗଲରେ ଲୋକମାନେ ଚାଷ କରୁଥିଲାବେଳେ ମଲବେରୀ ନୂତନ ପଦ୍ଧତିରେ ଚାଷ ହୋଇଥାଏ । ଏରି ପୋକ ସାଧାରଣତଃ ମହିଳାମାନେ ଚାଷ କରନ୍ତି । ବର୍ତ୍ତମାନ ଓଡିଶାର ୨୨ଟି ଜିଲ୍ଲାରେ ପ୍ରାୟ ୫୦,୦୦୦ ଲୋକ ରେଶମ ଶିଳ୍ପକୁ ମୁଖ୍ୟ ଜୀବିକା ରୂପେ ଗ୍ରହଣ କରିଛନ୍ତି । ଆମ ରାଜ୍ୟରେ ବାର୍ଷିକ ୨୫୦ ମେଟ୍ରିକ ଟନ୍ ସିଲ୍କର ଆବଶ୍ୟକତା ଅଛି । ବର୍ତ୍ତମାନ ୪୩୩୫ଟି ହସ୍ତତନ୍ତ ପାଇଁ ରାଜ୍ୟରେ ପ୍ରାୟ ୫୦ ମେଟ୍ରିକ ଟନ୍ ରେଶମ ଉତ୍ପାଦନ ହେଉଥିବାବେଳେ ଆବଶ୍ୟକତା ତୁଳନାରେ ଏହା ଯଥେଷ୍ଟ କମ୍ ।

**ମଲବେରୀ ରେଶମ ଉତ୍ପାଦନ**

ଓଡିଶାରେ ଗଜପତି, ରାୟଗଡା, କୋରାପୁଟ, ଫୁଲବାଣୀ, କଳାହାଣ୍ଡି, ସୋନପୁର, ଦେବଗଡ, ନୟାଗଡ, ଖୋର୍ଦ୍ଧା, ସମ୍ବଲପୁର, କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ ମଲବେରୀ ରେଶମ ଚାଷ ହୋଇଥାଏ । ବାର୍ଷିକ ହାରାହାରି ୫୦,୦୦୦ କିଲୋଗ୍ରାମ କୋକୁନ ଉତ୍ପାଦିତ ହୋଇଥାଏ । ଏଥିରେ ୧୩୦୦ ପରିବାର ବାର୍ଷିକ ସମୁଦାୟ ୫୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଆୟ କରିଥାନ୍ତି । ମଲବେରୀ ଚାଷକୁ ଭାରତ ସରକାର ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ଅନ୍ତର୍ଭୁକ୍ତ କରି ଦାରିଦ୍ର୍ୟ ସୀମାରେଖା ନିମ୍ନରେ ରହୁଥିବା ଲୋକଙ୍କୁ ମଲବେରୀ ଚାଷ ପାଇଁ ଆର୍ଥିକ ସହାୟତା ପ୍ରଦାନ କରୁଛନ୍ତି । ୧୯୮୬-୮୭ ମସିହାରେ ମଲବେରୀ ଚାଷ ପ୍ରଥମେ ଚନ୍ଦ୍ରଗିରି, ରାମଗିରି ଓ ଉଦୟଗିରିରେ ଆରମ୍ଭ ହୋଇଥିଲା । ପରବର୍ତ୍ତୀ ସମୟରେ ଜାତୀୟ ରେଶମ ଚାଷ ପ୍ରକଳ୍ପ ମାଧ୍ୟମରେ ଏହା କୋରାପୁଟ ଜିଲ୍ଲାରେ ଆରମ୍ଭ କରାଗଲା । ଏହି ଚାଷ ୩୦ ଡିଗ୍ରୀରୁ ୪୦ ଡିଗ୍ରୀ ତାପମାତ୍ରା ଓ ସମୁଦ୍ରଠାରୁ ଦୂରତାର ଆବଶ୍ୟକ ଥିବାରୁ ଆଦିବାସୀ ବହୁଳ ଜିଲ୍ଲାଗୁଡିକ ବିଶେଷ ଉପଯୋଗୀ । ଅବ୍ୟବହୃତ ଓ ପତିତ ଜମିରେ ମଲବେରୀ ଚାଷ ହେଉଥିବାରୁ ଏହା କୃଷକମାନଙ୍କ ଆୟ ବୃଦ୍ଧିରେ ସହାୟକ ହୋଇଥାଏ । ଓଡିଶାର ମଲବେରୀ ରେଶମ ଚାଷର ପ୍ରଗତିର ତଥ୍ୟ ଅନୁସାରେ ରେଶମ ଚାଷର ପରିମାଣ ୨୦୦୩-୦୪ ମସିହାଠାରୁ କ୍ରମାଗତ ବୃଦ୍ଧି ପାଉଥିବାରୁ ଏହା ଲାଭଜନକ ବୋଲି ପ୍ରମାଣିତ ହୁଏ । ୨୦୦୮-୦୯ ମସିହାରେ କୋକୁନ ଉତ୍ପାଦନ ୨୫.୬ ମେଟ୍ରିକ ଟନ୍ ଏବଂ କଞ୍ଚା ରେଶମ ଉତ୍ପାଦନ ୨.୫୬ ମେଟ୍ରିକ ଟନ୍ ଥିଲା । ମଲବେରୀ ଚାଷର ପ୍ରଚାର ଓ ପ୍ରସାର ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଗଲେ ଓଡିଶାର ଚାଷୀମାନଙ୍କର ଆର୍ଥିକ ଉନ୍ନତିରେ ଏହା ସହାୟକ ହୋଇପାରିବ ।

### ଟସର ସିଲ୍କ ଉତ୍ପାଦନ

ଟସର ଚାଷ ପ୍ରଥମେ ମୟୂରଭଞ୍ଜ ଜିଲ୍ଲାରେ ଭଞ୍ଜ ରାଜାଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ବର୍ତ୍ତମାନ ୮୪୫୦ ହେକ୍ଟର ଜମିରେ ଟସର ଚାଷ ହୋଇଥିଲେ ମଧ୍ୟ ଏହା ଏକ ସହାୟକ ଜୀବିକା ମାଧ୍ୟମ ରୂପେ ଆଦିବାସୀମାନେ ଗ୍ରହଣ କରିଛନ୍ତି । ଆମ ରାଜ୍ୟରେ ୧୪ଟି ଜିଲ୍ଲାରେ ୪୬୮୨୮ ତଫସିଲଭୁକ୍ତ ଜାତି ଉପଜାତି ପରିବାର ଟସର ସମବାୟ ସମିତିର ସଭ୍ୟ ରୂପେ ଅନ୍ତର୍ଭୁକ୍ତ ହୋଇଛନ୍ତି । ଆଦିବାସୀ ଚାଷୀମାନେ ଟସର ଚାଷରୁ ବର୍ଷକୁ ୭.୩ କୋଟି ଟଙ୍କା ଆୟ କରିଥାନ୍ତି । ଉତ୍ପାଦିତ ୫୦ ପ୍ରତିଶତ କୋକୁନ ଟସର ସମବାୟ ସମିତି ଦ୍ୱାରା ବିକ୍ରି ହେଉଥିବା ବେଳେ ବାକି ୫୦ ପ୍ରତିଶତ ଖୋଲାବଜାରରେ ବିକ୍ରୀ ହୋଇଥାଏ । ଓଡ଼ିଶାରେ ପ୍ରଚୁର ଜଙ୍ଗଲ ଓ ମାନବ ସଂପଦ ଥିବାରୁ ଟସର ଚାଷର ଭବିଷ୍ୟତ ଉଜ୍ଜ୍ୱଳ । ଏ ସମ୍ପର୍କରେ ଏକ ଉଦାହରଣ ଦିଆଯାଇପାରେ । ୨୦୦୩ ରୁ ୨୦୦୯ ମସିହା ମଧ୍ୟରେ ୨୦୦୫–୦୬ ବର୍ଷକୁ ବାଦ୍ ଦେଲେ ଟସର ଉତ୍ପାଦନ ରାଜ୍ୟରେ କ୍ରମାଗତ ବୃଦ୍ଧି ପାଉଛି । ୨୦୦୮–୦୯ ବର୍ଷରେ ୯୧୧୫ ହେକ୍ଟର ଜମିରେ ଟସର ଚାଷ ଏକ ଉଲ୍ଲେଖନୀୟ । ଟସର ପୋଷାକର ଚାହିଦା ବୃଦ୍ଧି ପାଉଥିବାରୁ ଟସର ଉତ୍ପାଦନ ଓ ଏଥିରୁ ଆର୍ଥିକ ଆୟ ମଧ୍ୟ କ୍ରମାଗତ ଭାବରେ ବୃଦ୍ଧି ପାଉଛି । ଆର୍ଥିକ ସହାୟତା ମାଧ୍ୟମରେ ନିମ୍ନ ଆୟକାରୀ ଲୋକମାନେ ଏହାକୁ ଏକ ମୁଖ୍ୟ ଆୟର ପନ୍ଥା ରୂପେ ଗ୍ରହଣ କରିପାରିବେ ।

### ଏରି ସିଲ୍କ ଚାଷ

ଓଡ଼ିଶାରେ ୧୯୫୭ ମସିହାରେ ପ୍ରଥମଥର କଟକ ଜିଲ୍ଲାରେ ଚାରିଗୋଟି ସମବାୟ ସମିତି ଜରିଆରେ ସିଧଲ, ଡମପଡା, ଉଦଲ ଓ ଇନ୍ଦୁପୁର ପଞ୍ଚାୟତରେ ଏହି ସିଲକ ଚାଷ ଆରମ୍ଭ ହୋଇଥିଲା । ବର୍ତ୍ତମାନ ରାଜ୍ୟରେ ପାଖାପାଖି ୫,୦୦୦ରୁ ଉର୍ଦ୍ଧ୍ୱ ଏରି ଚାଷୀ ଏହି କେନ୍ଦ୍ର ମାଧମରେ ଏହି ଚାଷ ଦ୍ୱାରା ଲାଭବାନ ହୋଇପାରିଛନ୍ତି । ରାଜ୍ୟ ସରକାର ପଟାଙ୍ଗୀ, ଖୋର୍ଦ୍ଧା ଓ ଚନ୍ଦକାଠାରେ ତିନିଗୋଟି ଓ ଅନ୍ୟାନ୍ୟ ସ୍ଥାନରେ ଏରି ମଂଜି କେନ୍ଦ୍ର ସ୍ଥାପନ କରି ଏରି ରେଶମ ଚାଷର ବିକାଶ ପାଇଁ ଉଦ୍ୟମ କରୁଛନ୍ତି । ଏରି ଚାଷ ଆମ ରାଜ୍ୟରେ ବର୍ତ୍ତମାନ ୧୪ଟି ଜିଲ୍ଲାରେ ବିଶେଷ ଆଦୃତ ହୋଇ ଥିବାରୁ ଏହାର ଭବିଷ୍ୟତ ଉଜ୍ଜ୍ୱଳ ଅଟେ । ଏହି ଏରି ସିଲ୍କକୁ ମଧ୍ୟ ଅହିଂସା ସିଲ୍କ କୁହାଯାଏ । କାରଣ ଏହାର ପ୍ୟୁପା ଉତ୍ପାଦନ ପରେ ନଷ୍ଟ ହୁଏ ନାହିଁ । ଏହା ବିଶେଷତଃ ମହିଳାମାନେ ଚାଷ କରୁଥିବାରୁ କୁଟୀର ଶିଳ୍ପର ମାନ୍ୟତା ଲାଭ କରିଛି । ଏରି ସିଲ୍କ ଅନ୍ୟ ସିଲ୍କ ଅପେକ୍ଷା ଶସ୍ତା ହୋଇଥିବାରୁ ସବୁ ଶ୍ରେଣୀର ଲୋକମାନଙ୍କ ଦ୍ୱାରା ଆଦୃତ ହୋଇଛି । ଏହା ବିଦେଶକୁ ରପ୍ତାନୀ ହୋଇଥିବାରୁ ବୈଦେଶିକ ମୁଦ୍ରା ଉପାର୍ଜନରେ ସହାୟକ ହୋଇଥାଏ । ଏରି ପୋକ ଘର ମଧ୍ୟରେ ଚାଷ ହେଉଥିବାରୁ ଏହା ବର୍ଷସାରା ସବୁ ସମୟରେ ଚାଷୀକୁ ଆର୍ଥିକ ସହାୟତା ପ୍ରଦାନ କରିଥାଏ । ଏରି ସିଲ୍କ ଚାଷର କ୍ରମାଗତ ଉନ୍ନତି ପରିଲକ୍ଷିତ ହୁଏ । ୨୦୦୮–୦୯ ବର୍ଷରେ ୨୨୩୧ ଜଣ ଚାଷୀ ଏରି ରେଶମ ଚାଷରେ ଜୀବିକା ଉପାର୍ଜନ କରୁଛନ୍ତି । କୋକୁନ ଉତ୍ପାଦନ କ୍ରମାଗତ ବୃଦ୍ଧି ପାଉଥିବାରୁ ଏହି ଚାଷ ଲାଭଦାୟକ ହେବା ସହିତ ଲୋକମାନଙ୍କ ମଧ୍ୟରେ ବିଶେଷ ଆଦୃତ ହୋଇପାରିଛି ।

### ରେଶମ ଚାଷର ପ୍ରଗତି ପାଇଁ ପଦକ୍ଷେପ

ରେଶମ ଚାଷ ପ୍ରକଳ୍ପଗୁଡ଼ିକୁ ଆର୍ଥିକ ସହାୟତା ପ୍ରଦାନ କରିବା ପାଇଁ ରାଜ୍ୟ ସରକାର ବିଭିନ୍ନ ପଦକ୍ଷେପ ନେଇଛନ୍ତି । ଗୁଣାତ୍ମକ ବିହନ କିଣିବାରେ ଆମ ରାଜ୍ୟରେ ଯଥେଷ୍ଟ ଅସୁବିଧାର ସମ୍ମୁଖୀନ ହେଉଥିବାରୁ ରେଶମ ଶିଳ୍ପର ପ୍ରସାର ଆଶାନୁରୂପ ହୋଇପାରି ନାହିଁ । ଲୋକମାନେ ରେଶମ ଚାଷର ଆର୍ଥିକ ଉପାଦେୟତା ବିଷୟରେ ସଚେତନ ହେଲେ ଏହାର ପ୍ରସାର ହେବା ସହିତ ଗ୍ରାମାଞ୍ଚଳର ଆର୍ଥିକ ଅବସ୍ଥାରେ ଉନ୍ନତି ସଂଭବ ହେବ । ଯଥେଷ୍ଟ ସମ୍ବଳ, ଉପଯୁକ୍ତ ତାଲିମ୍, ସଚେତନତା କାର୍ଯ୍ୟକ୍ରମ, ପାଠଚକ୍ର ଓ ଅଧିକ ଅମଳକ୍ଷମ ବିହନ ଯୋଗାଣ ମାଧ୍ୟମରେ ରେଶମ ଚାଷର ବିକାଶ କରାଯାଇପାରିବ । ବାଣିଜ୍ୟିକ ଭିତ୍ତିରେ ଚାଷ କରିବାକୁ ହେଲେ ରେଶମ ବସ୍ତ୍ରର ବଜାର ଚାହିଦା ବୃଦ୍ଧି କରିବା ସହିତ ସହରାଞ୍ଚଳରେ ବିକ୍ରୟ କେନ୍ଦ୍ର ସ୍ଥାପନର ଆବଶ୍ୟକତା ଅଛି । ରେଶମ ଚାଷରେ ରୋଗ ନିରାକରଣ ପାଇଁ ଉପଯୁକ୍ତ ଔଷଧ ଉଦ୍ଭାବନର ଓ ବଣ୍ଟନର ଗୁରୁତ୍ୱ ରହିଛି । ମଲବେରୀ ଚାଷରେ ମିଶ୍ର ଚାଷ ଦ୍ୱାରା ଅନ୍ୟାନ୍ୟ ଫସଲ ମଧ୍ୟ ଏକ ସମୟରେ ଉତ୍ପାଦିତ ହୋଇପାରିବ । ସମୟ ଉପଯୋଗୀ ଋଣ ପ୍ରଦାନ, ବୈଷୟିକ ସହାୟତା, ଗୁଣାତ୍ମକ ବିହନ ଯୋଗାଣ ଓ ଉପଯୁକ୍ତ ପ୍ରୋତ୍ସାହନ ମାଧ୍ୟମରେ ରେଶମ ଶିଳ୍ପ ଓ ଚାଷର ପ୍ରଗତି ଓଡ଼ିଶାରେ ହୋଇପାରିବ ।

ଅର୍ଥନୀତି ପ୍ରାଧ୍ୟାପକ
ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ

# ବୋଇତ ବନ୍ଦାଣ : ଆମ ନିଜ ସଂସ୍କୃତି

ସୁପ୍ରଭା ମିଶ୍ର

ସଂସ୍କୃତି ହେଉଛି ଗୋଟିଏ ଜାତିର ମାର୍ଜିତ ଚନ୍ତାଧାରା, ଅନ୍ତର୍ନିହିତ ଶକ୍ତି, ଅନ୍ତଃ ପ୍ରକୃତି, ଅନ୍ତରର ବାର୍ତ୍ତା । ଏହି ବାର୍ତ୍ତାର ବସ୍ତୁଗତ ପରିପ୍ରକାଶ ହେଉଛି ସଭ୍ୟତା ଓ ସଂସ୍କୃତିର ଆରମ୍ଭ ଅଛି, ବିକାଶ ଅଛି, ମାତ୍ର ବିଳୟ ନାହିଁ । ଏହା ସନାତନ ଧର୍ମଭିତ୍ତିକ, ସମୟାନୁବର୍ତ୍ତୀ ଓ ବିବେକଧର୍ମୀ । ଓଡ଼ିଶାର ସଂସ୍କୃତି କହିଲେ ଆମେ ସାଧାରଣତଃ କଳିଙ୍ଗ, ଉତ୍କଳ ବା ଉଡ୍ର ଦେଶର ସଂସ୍କୃତିକୁ ବୁଝୁ । ଏହା ବୈଦିକ ସଂସ୍କୃତିର ମହାନ୍ ପରମ୍ପରା ଉପରେ ପ୍ରତିଷ୍ଠିତ ।

ଆଧୁନିକ ଓଡିଶାର ଏକ ପ୍ରାଚୀନ ଐତିହାସିକ ନାମ ହେଉଛି ଉତ୍କଳ । କେଉଁ ପୁରାଣ କାଳରୁ ଏହି ଉତ୍କଳଭୂମି ଭାରତୀୟ ରାଷ୍ଟ୍ରମାନଙ୍କ ମଧ୍ୟରେ ନିଜର ସ୍ୱକୀୟ ମର୍ଯ୍ୟାଦା ଓ ମହତ୍ତ୍ୱ ପ୍ରତିପାଦନ କରି ଆସିଅଛି । ଏହା କପିଳ ସଂହିତାରେ ବର୍ଣ୍ଣନା ଅଛି ।

ବର୍ଷ ମଧ୍ୟରେ ଭାରତ ଓ ଦେଶ ମଧ୍ୟରେ ଉତ୍କଳ ଶ୍ରେଷ୍ଠ ଅଟେ । ଏହି ପ୍ରାଚୀନ ପବିତ୍ର ଦେଶର ନାମ ଉତ୍କଳ କାହିଁକି ହେଲା, ସେ ବିଷୟରେ ପଣ୍ଡିତମାନେ ନାନା ମତ ପ୍ରଦାନ କରିଥାନ୍ତି । ଡକ୍ଟର ହରେକୃଷ୍ଣ ମହତାବଙ୍କ ମତରେ ପ୍ରାଚୀନ ଭାରତର ଉଡ୍ର, ଉତ୍କଳ ଓ କଳିଙ୍ଗ ପ୍ରଦେଶ ବର୍ତ୍ତମାନର ଓଡିଆ ଭାଷାଭାଷୀ ଅଞ୍ଚଳକୁ ବୁଝାଏ । ଏକଦା ଏହି ଉତ୍କଳଭୂମି ଗଙ୍ଗାଠାରୁ ଗୋଦାବରୀ ଯାଏଁ ବିସ୍ତୃତି ଲାଭ କରିଥିଲା । ଖ୍ରୀଷ୍ଟ ଜନ୍ମର ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବରୁ କଳିଙ୍ଗର ବଣିକ ଓ ନାବିକମାନେ ଭାରତୀୟ ସଭ୍ୟତା ଓ ସଂସ୍କୃତିର ବହୁଳ ପ୍ରଚାର କରିଥିଲେ । ବାଣିଜ୍ୟ ଦ୍ୱାରା ସେମାନେ କଳିଙ୍ଗ ରାଜ୍ୟର ଅର୍ଥନୀତିକୁ ସୁଦୃଢ କରିବା ସହ ରାଜ୍ୟକୁ ବହୁଭାବରେ ସମୃଦ୍ଧ କରି ଗୌରବର ଶୀର୍ଷରେ ପହଞ୍ଚାଇ ପାରିଥିଲେ ।

ପ୍ରାଚୀନ ଗ୍ରୀକ୍, ରୋମ୍, ଆରବ ଓ ଚୀନ୍‌ବାସୀଙ୍କ ପ୍ରଦତ୍ତ ବିବରଣୀରୁ ଉତ୍କଳର ନୌବାଣିଜ୍ୟର ସ୍ପଷ୍ଟଚିତ୍ର ମିଳିଥାଏ । ସର୍ବୋପରି ହୁଏନ୍‌ସାଂଙ୍କ ଭାରତ ଭ୍ରମଣ ବିବରଣୀ ଓ ଚାଣକ୍ୟଙ୍କ ଅର୍ଥଶାସ୍ତ୍ରରୁ ଓଡ଼ିଆ ସାଧବପୁଅର ନୌବାଣିଜ୍ୟ ସମ୍ପର୍କିତ ସୂଚନା ମିଳେ । ଯଃ ସାଧୁଃ ସଃ ସାଧବଃ । ସଂସ୍କୃତ ସାଧୁ ଶବ୍ଦରୁ ଓଡ଼ିଆ ସାଧବ ଶବ୍ଦର ଉତ୍ପତ୍ତି । ସାଧବ ନାମକରଣରୁ ଓଡ଼ିଆ ବଣିକର ଚାରିତ୍ରିକ ବୈଶିଷ୍ଟ୍ୟର ସୂଚନା ମିଳିଥାଏ । ତତ୍କାଳୀନ ଓଡ଼ିଆ ସାଧବପୁଅମାନେ ନୌବାଣିଜ୍ୟ ଦ୍ୱାରା ବିଶ୍ୱର ଅଧିକାଂଶ ଦେଶ ସହିତ ବନ୍ଧୁତା ସ୍ଥାପନ କରିବା ସଙ୍ଗେ ସଙ୍ଗେ ଉତ୍କଳୀୟ ଧର୍ମ, ସଂସ୍କୃତି ଓ କଳାକୁ ସେହି ଦେଶମାନଙ୍କରେ ପ୍ରଚାର କରିବାରେ ସକ୍ଷମ ହୋଇପାରି ଥିଲେ ।

ସେମାନେ ଓଡ଼ିଶାରୁ ପାଷାଣମୂର୍ତ୍ତି, ପାନ ମସଲା, ସୂକ୍ଷ୍ମ ରେଶମ ପାଟ, ସୌଖୀନ ଶାଢୀ, ବିଭିନ୍ନ ସୁଗନ୍ଧ ଦ୍ରବ୍ୟ, ସୂକ୍ଷ୍ମ କାରୁକାର୍ଯ୍ୟ ଖଚିତ ହସ୍ତଶିଳ୍ପ ସାମଗ୍ରୀ, ଧାନ, ଚାଉଳ, ପାନ, ଗୁଆ, ନଡିଆ, ହଳଦୀ, ଗୁଡ଼, ଲୁଣ, ତୈଳ, ଶଙ୍ଖ, ଚାନ୍ଦୁଆ ଇତ୍ୟାଦି ନେଇ ବିଦେଶକୁ ଯାଉଥିଲେ । ତା' ବଦଳରେ ଚନ୍ଦନକାଠ, ଅଗରୁ, କସ୍ତୁରୀ, କର୍ପୂର, ସିନ୍ଦୂର, ଲବଙ୍ଗ, ଅଳେଇଚ, ସୈନ୍ଧବ ଲବଣ, ହାତୀଦାନ୍ତ, ବାଘନଖ, ହରିଣପୁଚ୍ଛ ନିର୍ମିତ ଚାମର, ଶାଳଗ୍ରାମ ଶିଳା, ରୁଦ୍ରାକ୍ଷ, ମୁକ୍ତା, ସୁନା, ରୂପା, ସୂର୍ଯ୍ୟକାନ୍ତମଣି, ଚନ୍ଦ୍ରକାନ୍ତ ମଣି, ପୋହଳା ଓ ଦୁର୍ମୂଲ୍ୟ ପଥର ଇତ୍ୟାଦି ଅଶେଷ ଧନରତ୍ନ ଆଣି ଉତ୍କଳ ଲକ୍ଷ୍ମୀଙ୍କୁ ସୁସମୃଦ୍ଧ କରିପାରିଥିଲେ । ଓଡ଼ିଆ ସାଧବ ବିଦେଶରୁ ଆଣିଥିବା ନୂତନ ଦ୍ରବ୍ୟ ପ୍ରଥମେ ଶ୍ରୀଜଗନ୍ନାଥଙ୍କୁ ଭେଟି ସ୍ୱରୂପ ପ୍ରଦାନ କରୁଥିଲେ । ସିଂହଳରେ ଉତ୍ପାଦିତ ଲଙ୍କା, ବିଦେଶୀମାନଙ୍କ ଦ୍ୱାରା ଭାରତରେ ପ୍ରବେଶ କରିଥିବା ବିଲାତି ଆଳୁ, ବିଲାତି ବାଇଗଣ, କୋବି ପ୍ରଭୃତି ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ପ୍ରସ୍ତୁତିରେ ବ୍ୟବହୃତ ହେଉନଥିଲା । ମାତ୍ର ଏହାର ଯଥେଷ୍ଟ ପୂର୍ବରୁ ସାଧବମାନଙ୍କ ଦ୍ୱାରା ବୋଇତରେ ଆନୀତ କଖାରୁ 'ବୋଇତି କଖାରୁ' ବା 'ବୋଇତାଳୁ' ନାମରେ ଓଡିଶାରେ ପରିଚିତ ।

ଉତ୍କଳର ସାଧବମାନେ ଶରତ ଋତୁର ଶେଷଭାଗ ଏବଂ ହେମନ୍ତ ଋତୁର ଆରମ୍ଭରେ ଅର୍ଥାତ୍ କାର୍ତ୍ତିକ ପୂର୍ଣ୍ଣିମା ଦିନ ନୌଯାତ୍ରା ଆରମ୍ଭ କରୁଥିଲେ । କାର୍ତ୍ତିକ ମାସଠାରୁ ଚୈତ୍ରମାସ ପର୍ଯ୍ୟନ୍ତ ସେଠାରେ ବାଣିଜ୍ୟ କାରବାର ଚାଲୁଥିଲା । ଆଷାଢ଼ ମାସ ବେଳକୁ ସେମାନେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । କାର୍ତ୍ତିକ ଅମାବାସ୍ୟା ଅର୍ଥାତ୍ ଦୀପାବଳି ଦିନ ଲକ୍ଷ୍ମୀପୂଜା ହେଉଥିଲା । ତା'ପର ଦିନଠାରୁ କାର୍ତ୍ତିକ ଶୁକ୍ଲପକ୍ଷ ଯାଏଁ ବୋଇତରେ ପଣଦ୍ରବ୍ୟ ସଞ୍ଚୟ କରି ସାଧବମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ ବୋଇତଯାତ୍ରାର ଶୁଭାରମ୍ଭ କରୁଥିଲେ । ଏହି ଯାତ୍ରା ବେଳରେ ସାଧବବୋହୂ ସାଧବ ମୁଣ୍ଡରେ ଅକ୍ଷୟ କବଚ ସ୍ୱରୂପ ଚନ୍ଦନଟିପା ଲଗାଇ ଦେଇ ସାତଦୀପରେ ବନ୍ଦାଇ ଦେଉଥିଲେ । ତା'ପରେ ବୋଇତ ମଙ୍ଗରେ ଶୁଭ ନାରିକେଳ ଜଳ ଢାଳି ହୁଳହୁଳି ପକାଇ ଆମ ସଂସ୍କୃତିର ପ୍ରତୀକ ତିଳ–ତାମ୍ବୁଳ–ଦୁର୍ବା–ଅକ୍ଷତ ଜଳରେ ନିକ୍ଷେପ କରି ଘିଅ ଦୀପରେ ବୋଇତ ବନ୍ଦାଇ ବାଣିଜ୍ୟ ଲକ୍ଷ୍ମୀଙ୍କଠାରୁ ଶୁଭ କାମନା କରୁଥିଲେ ।

ପରିବର୍ତ୍ତିତ ସମୟ ପରିପ୍ରେକ୍ଷୀରେ ଆଜି ସାଧବପୁଅ ନାହିଁ କି ସେଦିନର ବୋଇତ ବାଣିଜ୍ୟ ନାହିଁ । ମାତ୍ର ସେହି ଗୌରବୋଜ୍ଜ୍ୱଳ ପରମ୍ପରାକୁ ପାଥେୟ କରି ଓଡ଼ିଆମାନେ ଆଜି ବି କାର୍ତ୍ତିକ ପୂର୍ଣ୍ଣିମା ଦିନ ପ୍ରାତଃ ସ୍ନାନ କରି କଦଳୀ ବାସୁଙ୍ଗା ଅଥବା ସୋଲ କାଗଜରେ ନିର୍ମିତ ଡଙ୍ଗାରେ ପାନ, ଗୁଆ, ଲବଙ୍ଗ, ଚାଉଳ, ରାଶି ରଖି ଘିଅବତୀ ଜାଳି ଆ'– କା'–ମା'– ବୈ' ଉଚ୍ଚାରଣ ପୂର୍ବକ ଯେଉଁ ବୋଇତ ଭସାଣ ଉତ୍ସବ ପାଳନ କରୁଛି ତାହା ଓଡିଆ ସାଧବର ଅତୀତ ବୋଇତ ବାଣିଜ୍ୟର ମହିମାଦୀପ୍ତ ସ୍ମାରକୀ ମାତ୍ର । ଏହି ପ୍ରସଙ୍ଗରେ ଯଥାର୍ଥରେ କୁହାଯାଇପାରେ–

'ସ୍ମୃତିକୁ ସୁମରି ଓଡିଆଣୀ ଏବେ
ବୋଇତ ବନ୍ଦାଇ ଥାଏ
ଅତୀତ ଉତ୍କଳ ଗଉରବ ଗାଥା
ଇତିହାସ ସିନା ଗାଏ ।'

ଖୁଦୁରୁକୁଣୀ ଓଷା ଓ କାର୍ତ୍ତିକ ପୂର୍ଣ୍ଣିମୀ ସ୍ନାନ ପ୍ରଭୃତି ଆମ ପୂର୍ବପୁରୁଷମାନଙ୍କର ଜଳଯାତ୍ରା ସ୍ମୃତି ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ତାଛଡ଼ା କାର୍ତ୍ତିକ ଶୁକ୍ଳ ପ୍ରତିପଦା ପ୍ରଭାତରେ ଓଡିଆଣୀମାନେ ବାଡ଼ି ଅଗଣାରେ ପଞ୍ଚବର୍ଣ୍ଣୀ ମୁରୁଜରେ ବୋଇତ, ମୟୂର, କଳସ, ପଦ୍ମ ଆଦି ଚିତ୍ର ଅଙ୍କନ କରି ତା' ଉପରେ କଂସାବାସନ, ପେଡ଼ି, ବାକ୍ସ ଇତ୍ୟାଦି ସ୍ଥାପନା କରି ଧନଲକ୍ଷ୍ମୀଙ୍କ ଉପାସନା ମାଧ୍ୟମରେ ଅତୀତର ନୌବାଣିଜ୍ୟର ସ୍ମୃତିକୁ ମନେ ପକାଇ ଥାନ୍ତି ଓ ଆତ୍ମପ୍ରସାଦ ମଧ୍ୟ ଲାଭ କରିଥାନ୍ତି । ଅନୁକୂଳ ପବନରେ ସାଧବମାନଙ୍କର ବୋଇତ ବାଲି ପ୍ରଭୃତି ଦୀପପୁଞ୍ଜକୁ ଯାତ୍ରା କରୁଥିଲା ବୋଲି ବାଲିଦ୍ୱୀପ ଯାତ୍ରା ଆମ ଓଡ଼ିଆ ଜନମାନସରେ ଗଭୀର ଛାପ ରଖାଯାଇଛି । ଏହା ବର୍ତ୍ତମାନ କଟକରେ ବାଲିଯାତ୍ରା ଉତ୍ସବ ଭାବରେ ପାଳିତ ହୋଇ ଆସୁଅଛି । ବାଲି ସହିତ କଳିଙ୍ଗର ବାଣିଜ୍ୟ ଓ କଳା ସଂସ୍କୃତିର ସମ୍ପର୍କ କେତେ ନିବିଡ଼ ଥିଲା, ତାହା ଏଥିରୁ ସହଜରେ ଅନୁମାନ କରିହୁଏ ।

ସେଦିନର ବାଣିଜ୍ୟ ସ୍ୱପ୍ନ ଜୁଡୁବୁଡୁ ମଣିଷ ଆଜି ନିଜକୁ ଛିଡ଼ା କରାଇଛି ଏକ ଭିନ୍ନ ଜୀବନରେ । ଆଜି ପ୍ରତିଦ୍ୱନ୍ଦ୍ୱୀତାରେ ଅସ୍ତବ୍ୟସ୍ତ ମଣିଷ ଜୀବନ । ପ୍ରଲୋଭନ ଓ ହଟଚମଟ ଭିତରେ ସେ ବସ୍ତୁବାଦ ପଛରେ ଧାବମାନ । ସୁସ୍ଥ, ସରଳ, ନିରୀହ ମାନସିକତା ବଦଳରେ ନିଜ ସୌଭାଗ୍ୟ ପାଇଁ ସେ ତା'ର ଉଦ୍ୟମ ଜାରି ରଖିଛି । ସେଭଳି ସ୍ୱାର୍ଥ ସର୍ବସ୍ୱ ନ ହୋଇ କେବଳ ଅତୀତ ଗୌରବ ରୋମନ୍ଥନରେ ଗର୍ବିତ ନ ହୋଇ ଆମକୁ ମିଳିମିଶି ପରିଶ୍ରମ କରିବାକୁ ହେବ । ପ୍ରେମସ୍ନିଗ୍ଧ ଆଚରଣ ଓ ବିବେକ ଅନୁମୋଦିତ ବିଚାର, ଯାହା ଯୁଗେ ଯୁଗେ ଓଡିଆ ସଂସ୍କୃତିର ମୌଳିକ ଉପାଦାନ, ତାହାର ପ୍ରଚାର ଓ ପ୍ରସାର କରାଗଲେ ବିଶ୍ୱରେ ଭ୍ରାତୃତ୍ୱ ଭାବ ସୃଷ୍ଟି ହୋଇପାରିବ ।

ପ୍ରାଧ୍ୟାପିକା
ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟ
ଭୁବନେଶ୍ୱର

❖ ❖ ❖

# ପୁଣ୍ୟତୀର୍ଥ ଶ୍ରୀ ଶ୍ରୀ ନୃସିଂହନାଥ

**କୁଞ୍ଜ ବିହାରୀ ସାହୁ**

କଳା, ଐତିହ୍ୟ, ଭାସ୍କର୍ଯ୍ୟ, ସ୍ଥାପତ୍ୟ, ସଂସ୍କୃତି, ପରମ୍ପରାର ମଧୁର ଓ ମହାର୍ଘ ଆଲେଖ୍ୟ ବହନ କରିଛି ଉତ୍କୃଷ୍ଟ କଳାର ରାଜ୍ୟ ଉତ୍କଳ ବା ଓଡିଶା । ନିବିଡ ଅରଣ୍ୟାନୀର ଲୁକ୍କାୟିତ ସ୍ଥାନ ହେଉ ଅବା ପାହାଡ ଗାତ୍ର– ସବୁଠି ରହିଛି ବିମୁଗ୍ଧ ଐତିହ୍ୟ ଓ ପ୍ରାକୃତିକ ସୌନ୍ଦର୍ଯ୍ୟବୋଧ ଓ ପୌରାଣିକ, ଐତିହାସିକ ଏବଂ ଲୋକକଥାର ଅପାଶୋରା କିମ୍ବଦନ୍ତୀ । ବିଶ୍ୱାସର କାନଭାସରେ ସାମ୍ପ୍ରତିକ ଚିତ୍ରର ପ୍ରତିଫଳନ । ଜନମାନସରେ ସ୍ମରଣୀୟ କରିବାର ଏକ ମଧୁରତମ ଆବେଗ ।



ଏମିତି ଏକ ଐତିହ୍ୟର ଉପଢୌକନରେ ବିମଣ୍ଡିତ ଗନ୍ଧମାର୍ଦ୍ଦନ ପର୍ବତ ଯୁଗେଯୁଗେ ପର୍ଯ୍ୟଟକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି ।

ରାଜା ପରୀକ୍ଷିତ ଓ ଶୁକ ମୁନିଙ୍କ କଥୋପକଥନରୁ ଜଣାପଡେ ଯେ ରାମାୟଣ ପୁରାଣ ଅନୁଯାୟୀ ଲକ୍ଷ୍ମଣଙ୍କ ଶକ୍ତିଭେଦ ସମୟରେ ମୂର୍ଚ୍ଛିତ ଲକ୍ଷ୍ମଣଙ୍କୁ ଅଗ୍ରଜ ବିବ୍ରତ ହୁଅନ୍ତେ, ହନୁମାନଙ୍କ ସାହାଯ୍ୟର ଆବଶ୍ୟକତା ପଡିଲା । ବିଶଲ୍ୟକରଣୀ ଗୁଳ୍ମକୁ ଆଣିବା ପାଇଁ ଶ୍ରୀରାମଚନ୍ଦ୍ର ହନୁମାନକୁ ଆଦେଶ ଦେଲେ । ପ୍ରଭୁଙ୍କ ନିର୍ଦ୍ଦେଶକୁ ସମ୍ମାନ ଜଣାଇ ଭକ୍ତ ହନୁମାନ ବିଭିନ୍ନ ସ୍ଥାନ ବୁଲିଲେ । ବିଶଲ୍ୟକରଣୀ ଗୁଳ୍ମକୁ ଚିହ୍ନି ନ ପାରି ହିମାଳୟର ଏକ ଅଂଶକୁ କାନ୍ଧରେ ବୋହି ଆକାଶ ମାର୍ଗରେ ଗତି କଲେ । ଏହି ସମୟରେ ତାହାର ଏକ ଅଂଶ ବିନ୍ଧ୍ୟଗିରିରେ ଖସି ପଡିଥିଲା । ତତକ୍ଷଣାତ ବିନ୍ଧ୍ୟଗିରି ଥରିଗଲା । ପାହାଡର ମୁଖ୍ୟ ପ୍ରପାତ ପାଖରେ ମହାଋଷି କପିଳ ଯୋଗ ସାଧନରେ ମଗ୍ନ ଥିଲାବେଳେ ଏହି ଭୟଙ୍କର ଶବ୍ଦ ଶୁଣି ଚମକି ଉଠିଲେ । ଯୋଗ ବଳରେ କପିଳ ମୁନି ଘଟଣା ସମ୍ପର୍କରେ ଅବଗତ ହେଲେ । ଔଷଧ ବୃକ୍ଷରେ ଭରପୂର ହିମାଳୟ ପର୍ବତାଂଶ ଗନ୍ଧଗିରି ଗନ୍ଧମାର୍ଦ୍ଦନ ସହ ମିଶିଯାଇ ପରେପରେ ଗନ୍ଧମାର୍ଦ୍ଦନ ବୋଲି ପରିଚୟ ପାଇଲା । ବରଗଡ ଓ ବଲାଙ୍ଗୀର ଜିଲ୍ଲା ପାଇଁ ଏହା ଦର୍ଶନୀୟ ସ୍ଥାନର ଭୂମିକା ଗ୍ରହଣ କରିଛି ।

ବୃକ୍ଷ–ଲତା–ଗୁଳ୍ମ ଏପରିକି ଔଷଧୀୟ ବୃକ୍ଷର ସମ୍ମିଳିତ ଗନ୍ଧମାର୍ଦ୍ଦନ ପର୍ବତ କେଉଁ ଆଦିମ କାଳରୁ ପ୍ରସିଦ୍ଧି ଲାଭ କରିଛି । ଆୟୁର୍ବେଦ ଚିକିତ୍ସକମାନେ ଏହି ପର୍ବତରୁ ଔଷଧୀୟ ବୃକ୍ଷର ଅଶେଷ ସୁବିଧା ସୁଯୋଗ ପାଇଥିବାରୁ ଗନ୍ଧମାର୍ଦ୍ଦନ ପର୍ବତକୁ ଆୟୁର୍ବେଦୀୟ ବୈଦ୍ୟମାନଙ୍କର ସ୍ୱର୍ଗ ବୋଲି କହିଥାନ୍ତି ।

ବରଗଡ ଜିଲ୍ଲାର ପାଇକମାଳ ବ୍ଲକରେ ଲୋକକାହାଣୀ ତଥା ପୌରାଣିକ ପୃଷ୍ଠଭୂମିର ଆଧାରରେ ବିଡାଳ ନୃସିଂହନାଥଙ୍କ ମନ୍ଦିର ଅବସ୍ଥିତ । ଗନ୍ଧମାର୍ଦ୍ଦନ ପର୍ବତର ପାଦଦେଶରେ ମାର୍ଜାରକେଶରୀ ନୃସିଂହନାଥ (ମୁଖ ମାର୍ଜାର ଓ ଦେହ ସିଂହ) ବିରାଜିତ । ପଶ୍ଚିମ ଓଡିଶାବାସୀଙ୍କ ଆରାଧ୍ୟ ଦେବତା ରୂପେ

ପରିଚିତ । ଏକ ଲୋକକଥାନୁଯାୟୀ ଏହା ବିଶ୍ୱାସନୀୟ ଯେ ଏକଦା ଗୋଦାବରୀ ନଦୀକୂଳରୁ ଅଳ୍ପ ଦୂରରେ ସୁବାହୁ ଜଙ୍ଗଲରେ ଆଶ୍ରମକରି ରହୁଥିବା ଉତ୍ତୁଙ୍ଗ ଋଷିଙ୍କ କନ୍ୟା ମାଳତୀର ଅପରୂପ ସୌନ୍ଦର୍ଯ୍ୟରେ ଲଙ୍କା ନରେଶ ରାବଣ କାମପ୍ରବଣତା ପୂର୍ବକ ମାଳତୀକୁ ନିକଟସ୍ଥ ଝରଣାରେ ଫୋପାଡିଦେଲା । ସେଠାରୁ କୌଶଳକ୍ରମେ ଖସିଆସି ମାଳତୀ ନିଜ ଘରକୁ ବାହୁଡି ଯିବାକୁ ଉଦ୍ୟମ କଲା । ବିପର୍ଯ୍ୟସ୍ତ ଅବସ୍ଥାରେ ହଟକେଶ୍ୱର ଜଙ୍ଗଲରେ ବୁଲୁଥିଲା ବେଳେ ମୂଷିକ ଦୈତ୍ୟର ସହଯୋଗ ଲୋଡିଲା । ମୂଷିକ ଦୈତ୍ୟ ସହାନୁଭୂତିର ପ୍ରତିଶ୍ରୁତି ଦେଲେ ବି ଅପରୂପ ଲାବଣ୍ୟରେ ବିମୋହିତ ହୋଇ ମାଳତୀକୁ ପୈଶାଚିକ ଭାବେ ଦେହର ଭୋକ-ଲାଳସାକୁ ଚରିତାର୍ଥ କଲା । ରାବଣ ଓ ଯମରୂପୀ ମୂଷିକ ଦୈତ୍ୟର ମିଳିତ ସମ୍ଭୋଗରେ ମାଳତୀ ଗର୍ଭବତୀ ହୋଇ ମଣିଷ ଶରୀର ଓ ମୂଷା ମୁଣ୍ଡ ପରି ଏକ ଦୈତ୍ୟକୁ ଜନ୍ମ ଦେଲା । ସେହି ମୂଷିକ ଦୈତ୍ୟ ନିଜ ପରାକ୍ରମରେ ବୁଦ୍ଧି ଶୂନ୍ୟ ହୋଇ ଆପଣା ମାଆର ବେକ ମୋଡି ଗିଳି ପକେଇଲା । ପରେପରେ ଭଗବାନ ଶିବଙ୍କୁ ତପସ୍ୟା କଲା । ଦେବଦେବ ମହାଦେବ ଆଶୀର୍ବଚନ ଦେଇ କହିଲେ ଯେ ବିଷ୍ଣୁ ଅଂଶୀ ଦେବତାଙ୍କ ସହ ଯୁଦ୍ଧ କଲେ ମୃତ୍ୟୁ ଅବଶ୍ୟମ୍ଭାବୀ ।



ବର ପ୍ରାପ୍ତି ପରେ ମୂଷିକ ଦୈତ୍ୟର ଅତ୍ୟାଚାର ଭୀଷଣତର ହୁଅନ୍ତେ ସ୍ୱର୍ଗଲୋକରେ ଭାଳେଣି ପଡିଲା । ସମସ୍ତ ଦେବତାଗଣ ବ୍ରହ୍ମାଙ୍କ ଅନୁଗତ ହୋଇ ମହାମାୟୀ ଦୁର୍ଗାଙ୍କ ଆଶ୍ରିତ ଲଭିଲେ । ଦେବୀଦୁର୍ଗା ସମ୍ମତି ପ୍ରଦାନ କଲେ । ମୂଷିକ ଦୈତ୍ୟ ସହ ବିଭିନ୍ନ ଆଳରେ ଯୁଦ୍ଧ କରି ନିରାଶ ହେଲେ । ଆସନ୍ନ ବିପଦ ଜାଣି ଦେବତାଗଣ ପ୍ରଭୁ ରାମଚନ୍ଦ୍ରଙ୍କ ଶରଣାପନ୍ନ ହେଲେ । ଶ୍ରୀରାମଚନ୍ଦ୍ର ନିଜ ରାଜ୍ୟରେ ଶାନ୍ତି ପ୍ରତିଷ୍ଠା ପାଇଁ ମୂଷିକ ଦୈତ୍ୟକୁ ସଂହାର କରିବେ ବୋଲି ଅଙ୍ଗୀକାରବଦ୍ଧ ହେଲେ ।

ଭଗବାନ ମୂଷିକ ଦୈତ୍ୟ ସହ ଯୁଦ୍ଧ ଘୋଷଣା କଲେ । ଭଗବାନଙ୍କ ବିକଟାଳ ରଡି ଶୁଣି ମୂଷିକ ଦୈତ୍ୟ ମାଛ ବେଶରେ ଗୋଦାବରୀ ନଦୀରେ ଆତ୍ମଗୋପନ କଲା । ନିଜକୁ ବେଶୀ ସମୟ ଲୁଚାଇ ରଖିପାରିଲାନି ନଦୀ ଭିତରେ । ବାହାରକୁ ବାହାରିଲା ମାତ୍ରକେ ଭଗବାନ ରାମଚନ୍ଦ୍ର ତା ବେକକୁ ମାଡି ବସିଲେ । ତଥାପି ମୁକୁଳିଗଲା ଦୈତ୍ୟ । କ୍ଷିପ୍ରଗତିରେ ପଳାୟନ କରି ମୂଷିକ ଦୈତ୍ୟପାତାଳପୁର, ସୁତାଳପୁର, ଭୂତାଳପୁର, ମହାତାଳପୁର, ରସାତଳପୁରରେ ଲୁଚି ରହିଲା । ଭଗବାନ ପଶ୍ଚାଧାବନ କରିବାରୁ ଶେଷରେ ମୂଷିକ ଦୈତ୍ୟ ଗନ୍ଧଗିରି ପର୍ବତର ଶରଣାପନ୍ନ ହେଲା ଓ ମୂଷା ରୂପରେ ଗୋଟିଏ ଗାତରେ ଲୁଚିରହିଲା । ଶରଣାର୍ଥୀକୁ ସାହାଯ୍ୟ କରିବା ସୃଷ୍ଟିର ନିୟମ ବୋଲି ଗନ୍ଧଗିରି କହିବା ସହ ଏବଂ ଲକ୍ଷ୍ମୀଙ୍କ ପରାମର୍ଶ ଅନୁଯାୟୀ ପ୍ରଭୁ ରାମଚନ୍ଦ୍ର ସେହି ଗାତର ଦ୍ୱାରଦେଶରେ ଜଗିରହି ଗାତରୁ ମୂଷିକ ଦୈତ୍ୟ ବାହାରିବାକ୍ଷଣି ବଧ କରିବେ ବୋଲି ଅଭୟବାଣୀ ଦେଲେ । ମାତ୍ର ମୂଷିକ ଦୈତ୍ୟ ଗାତରୁ ବାହାରିଲା ନାହିଁ । ମୂଷିକର ଶତ୍ରୁ ଭାବରେ ଭଗବାନ ମାର୍ଜାର ବେଶରେ ଲୁଚିରହିଲେ । ସେଇଦିନଠୁ ନୃସିଂହନାଥ ପୀଠରେ ଭଗବାନ ମାର୍ଜାର ବେଶରେ ପୂଜାପାଇ ଆସୁଛନ୍ତି ।

ସେହିଭଳି ଅନ୍ୟ ଏକ କିମ୍ବଦନ୍ତୀ ସ୍ମରଣ କରାଇଦିଏ ଯେ ଯମୁନା ଓ ହରି କନ୍ଧର ଅଲୌକିକ କାହାଣୀ । ଦିନେ ଯମୁନା ବଣ ଭିତରକୁ ଯାଇ ଫଳମୂଳ ସଂଗ୍ରହ କରୁଥିଲାବେଳେ କନ୍ଦାଗାଡ ଝରଣା ପାଖରେ ଗୋଟିଏ ବେଲଗଛକୁ ପିଟକନ୍ଦା ପାହାଡଟିଏ ମାଡି ରହିଥିଲା । ଖଣତି ସାହାଯ୍ୟରେ ପିଟକନ୍ଦାର ଚେରକୁ ଖୋଜିବା ପାଇଁ ପ୍ରୟାସ କରନ୍ତେ, ସେହି କନ୍ଦରୁ ରକ୍ତ ବାହାରିଲା । ଚକିତ ହେଲା । ମୂର୍ଚ୍ଛା ହୋଇଗଲା ତତ୍‌କ୍ଷଣାତ । ଚେତା ପାଇଲା ପରେ ପ୍ରକୃତିସ୍ଥ ହେଲା । କନ୍ଦାର ଚେର ନିମ୍ନଗାମୀ ଥିଲା । ଜିଜ୍ଞାସାପୂର୍ବକ ଖଣତି ପ୍ରହାର କଲା ଉଲ୍ଲସିତ ହୋଇ ଘରକୁ ଫେରିଗଲା । ସ୍ୱାମୀଙ୍କୁ ସମସ୍ତ ବିଷୟ ବୟାନ କରି ଦୁହେଁ ପୂର୍ବ ସ୍ଥାନକୁ ପ୍ରତ୍ୟାଗମନ କଲେ । ଦେଖିଲେ, ଉକ୍ତ ସ୍ଥାନରେ କଳା ବିରାଡି ବୋବାଉଛି । ନୈପଥ୍ୟରୁ ଶୁଣାଗଲା– ହରିଆ, ମୁଁ ତୁମ୍ଭ ପ୍ରତି ପ୍ରସନ୍ନ ହୋଇଛି । ମୋତେ ନେଇ ଏକ ମନ୍ଦିର ନିର୍ମାଣ କରି ପୂଜା କର । ହରି କନ୍ଧ ଓ ଯମୁନା ଭକ୍ତି ମନରେ କଳା ମୁଗୁନି ପଥରକୁ ଟୋକେଇରେ ରଖି ଘରକୁ ନେଲେ । ବିଭିନ୍ନ ଫଳମୂଳ ଓ କନ୍ଦା ଦେଇ ପ୍ରଭୁଙ୍କୁ ପୂଜା କଲେ । ଏଥିରେ କୌଣସି ତନ୍ତ୍ର, ମନ୍ତ୍ର ବା ଷୋଡଶ ଉପଚାର ନ ଥିଲା । କେବଳ ଥିଲା ଦୁହିଁଙ୍କର ଅହେତୁକ ଭକ୍ତି ନିବେଦନ । ସେହି ମୁଗୁନି ପଥର ହିଁ ନୃସିଂହନାଥ ।

ଯମୁନାର ଭକ୍ତିପୂତ ଆରାଧନା ତଥା ଦେବ ବିଗ୍ରହ ପ୍ରାପ୍ତିର ଅଲୌକିକ ଘଟଣା ପାଟଣାର ମହାରାଜା ବୈଜଲ ଦେବଙ୍କ ଅବଗତି ହେଲାପରେ ରାଜା ରାଣୀଙ୍କ ସହ ଆସି ଦେବ ଦର୍ଶନ କଲେ । ସେମାନେ କୃତାର୍ଥ ମଣିଲେ ନିଜକୁ । ଯମୁନାର ଅନୁରୋଧ– ନୃସିଂହନାଥ ମନ୍ଦିରର ନିର୍ମାଣ ଗନ୍ଧଗିରିର ପାଦଦେଶରେ କରିବାକୁ ଯେଉଁ ଘରେ ଦେବ ବିଗ୍ରହ ପୂଜା ପାଉଥିଲେ । ରାଜା ଆଦେଶ ଦେଲେ । ପୂର୍ଣ୍ଣିମା ଦିନ ମନ୍ଦିର ପ୍ରତିଷ୍ଠା ହେଲା ।

ନୃସିଂହନାଥ ଧର୍ମପୀଠରେ ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀରେ ବୈଶାଖୀ ମେଳା ଅନୁଷ୍ଠିତ ହୁଏ ଯାହାକି ବରଗଡ ଜିଲ୍ଲା ଓ ପଡୋଶୀ ରାଜ୍ୟର ଶ୍ରଦ୍ଧାଳୁ ଭକ୍ତମାନଙ୍କର ମନୋରଞ୍ଜନର ଖୋରାକ । ଶୈବ, ବୈଷ୍ଣବ, ଗାଣପତ୍ୟ, ସୌର, କୌମାର ସମ୍ପ୍ରଦାୟର ଭକ୍ତ ମଣ୍ଡଳୀ ସମବେତ ହୁଅନ୍ତି । ଜପ, ତପ ସହିତ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ । ବୈଶାଖ ଚତୁର୍ଦ୍ଦଶୀ ତିଥି ପ୍ରଭୁଙ୍କ ଜନ୍ମ ଦିନ ହେତୁ ଶ୍ରୀ ଶ୍ରୀ ନୃସିଂହନାଥ ଉପବାସରେ ରହିଥାନ୍ତି ଓ ରାତ୍ରିରେ ପ୍ରଭୁଙ୍କୁ ପାଇଥିବା କନ୍ଧ ସମାଜଙ୍କ ଦ୍ୱାରା କନ୍ଦା ଭୋଗ ଅର୍ପଣ କରାଯାଇଥାଏ ।

ନୃସିଂହନାଥଙ୍କ ପୂଜାବିଧି ନୀତି ମୁତାବକ ହୋଇଥାଏ । ସକାଳ ୫ ଘଟିକା ସମୟରେ ମନ୍ଦିର ଖୋଲାଯାଏ । ଠାକୁରଙ୍କୁ ସ୍ନାନ କରାଯାଏ । ଚୁଡା ଭୋଗ, ଘିଅ, ଖେଚୁଡି ଭୋଗ, ରାଜଭୋଗ ବା ହରିହର ପଙ୍ଗତ ଭୋଗ, ବାଳ ଭୋଗ, ଯାମିନୀ ଭୋଗ ପରେ ପହୁଡ ପଡେ । ଦିବା ୧୨ ଘଟିକା ଠାରୁ ଅପରାହ୍ଣ ୨ଟା ପର୍ଯ୍ୟନ୍ତ ମନ୍ଦିର ବନ୍ଦ ରହେ । ଏହାପରେ ପୁଣି ପୂଜାର୍ଚ୍ଚନା ଓ ଭୋଗଲାଗି ହୋଇ ରାତି ୮ ଘଟିକା ମନ୍ଦିର ବନ୍ଦ ହୁଏ ।

ଛତିଶଗଡର ଗଙ୍ଗାନଦୀ ସଦୃଶ ପାପହାରିଣୀ ଝରଣାରେ ସ୍ନାନ କଲେ ସମସ୍ତ ପାପ କ୍ଷୟ ହୋଇଯାଏ । ବିଶେଷକରି ଚନ୍ଦ୍ରଗ୍ରହଣ ବା ସୂର୍ଯ୍ୟପରାଗ ସମୟରେ ସ୍ନାନ କଲେ ଶହେ ଜନ୍ମରୁ ମୁକ୍ତି ମିଳିଥାଏ । ଗନ୍ଧମାର୍ଦ୍ଦନ ପର୍ବତ ଉପରୁ ଝରି ଆସୁଥିବା ଝରଣାର ନାମ ବିଭିନ୍ନ ସ୍ଥାନରେ କିମ୍ବଦନ୍ତୀ ଅନୁସାରେ ନାମିତ ହୋଇଛି ଓ ଉକ୍ତ ସ୍ଥାନମାନଙ୍କରେ ସ୍ୱତନ୍ତ୍ରତା ରହିଛି । ଯଥା– କପିଳଧାର, ଭୀମଧାର, ପଂଚୁପାଣ୍ଡବଧାର, ସୀତାକୁଣ୍ଡ, ଚାଳଧାର, ଗୋକୁଣ୍ଡ ଘାଟ, ବିନ୍ଧ୍ୟବାସିନୀ ଘାଟ, ତ୍ରିଦେବ ଘାଟ, ପିତୃପିଣ୍ଡ ଘାଟ, ଗଣପତି ଘାଟ, ପାହାଡୀ ଶିବଲିଙ୍ଗ ଘାଟ, ଗରୁଡ ଘାଟ, କବୀର ମଣ୍ଡପ ଇତ୍ୟାଦି ପୁରାଣ ବର୍ଣ୍ଣିତ ବୋଲି କଥିତ ଅଛି । ଏହି ପର୍ବତରେ ହିଂସ୍ର ଜୀବଜନ୍ତୁ ବାସ କରୁଥିଲେ ବି କେବେ କାହାର କ୍ଷତି କରନ୍ତି ନାହିଁ । ପର୍ବତ ଶିଖରରେ ହିଲ ଟପ ଏକ ବିସ୍ତୀର୍ଣ୍ଣ ସମତଳ ଭୂମୀ । ଏଠାରେ ଏକ ରାଜମହଲ କେଉଁ କାଳରୁ ଅଛି, ଏବେ ଏହା ସମସ୍ତଙ୍କର ରହସ୍ୟଘେରରେ । ଏହି ପର୍ବତରେ ଚାଲି ଚାଲି ଶ୍ରଦ୍ଧାଳୁ ଭକ୍ତମାନେ ଅପରପାର୍ଶ୍ୱରେ ଥିବା ହରିଶଙ୍କର ମନ୍ଦିରକୁ ଦର୍ଶନ କରିବାକୁ ଯାଆନ୍ତି । ପଥ ମଧ୍ୟରେ ଏହି ରାଜମହଲରେ ସାମୟିକ ବିଶ୍ରାମ ନେଇଥାନ୍ତି ଏବଂ ଜାଙ୍ଗଲିକ ସୌନ୍ଦର୍ଯ୍ୟ ଉପଭୋଗ କରନ୍ତି । ନିକଟରେ ଥିବା ପୋଖରୀରେ ରାଜାମାନେ ଯୁଦ୍ଧ ସମୟରେ ଆତ୍ମଗୋପନ କରୁଥିଲେ ବୋଲି ଶ୍ରୁତିଗୋଚର ହୁଏ ।

ନୃସିଂହନାଥ କ୍ଷେତ୍ରରେ ମାନସିକ ଗୁଆ ଓ ଅଖଣ୍ଡଦୀପ ସ୍ଥାପନ କରାଯାଏ । ଗୋହତ୍ୟା, ସର୍ପହତ୍ୟା, ବିରାଡି ହତ୍ୟା ଇତ୍ୟାଦି ଦୋଷର ପ୍ରାୟଶ୍ଚିତ ଲାଗି ଏକ ସ୍ୱତନ୍ତ୍ର ବିଚରାଳୟ (ମାର୍ଜରା କେଶରୀ ବିଚରାଳୟ) ରେ ବିଚାର କରାଯାଏ । ଦୋଷୀ ସାବ୍ୟସ୍ତ ବ୍ୟକ୍ତିଙ୍କୁ ଦଣ୍ଡ ସ୍ୱରୂପ ୭ ରୁ ୨୧ ଦିନ ଠାକୁରଙ୍କ ସେବା କରିବାର ଅନୁମତି ଦିଆଯାଏ । ଟ୍ରଷ୍ଟି ତରଫରୁ ବିଚାରପତି ରୂପେ ଜଣଙ୍କୁ ନିଯୁକ୍ତି ଦିଆଯାଇଥାଏ, ଯିଏକି ଉପରୋକ୍ତ ଦୋଷର ବିଚାର କରିଥାନ୍ତି । ବିବାହ କାର୍ଯ୍ୟ ସଂପାଦନା ସହ ପତି–ପତ୍ନୀଙ୍କର ନାମ ପଞ୍ଜିକରଣ ହୋଇଥାଏ ।

୩୨୩୪ ଫୁଟ ଉଚ୍ଚତା ଗନ୍ଧମାର୍ଦ୍ଦନ ପର୍ବତର ଶାନ୍ତ ସୁନ୍ଦର ପରିବେଶ, ଲୋଭନୀୟ ଦୃଶ୍ୟ ଏବଂ ୨୨ଟି ଚିରସ୍ରୋତା ଝରଣାର ଅପୂର୍ବ ଲାବଣ୍ୟ ବିଭିନ୍ନ ପ୍ରାନ୍ତରର ପର୍ଯ୍ୟଟକମାନଙ୍କୁ ଆକର୍ଷଣ କରିବା ସହ ପଶ୍ଚିମ ଓଡିଶାର ସ୍ୱର୍ଗ କହିବାର ତାତ୍ପର୍ଯ୍ୟକୁ ବହନ କରିଥାଏ । ସେହିଭଳି ଶ୍ରୀ ଶ୍ରୀ ନୃସିଂହନାଥ ପୁଣ୍ୟପୀଠର ଆଖ୍ୟାକୁ ସାକାର କରି ସମଗ୍ର ପଶ୍ଚିମ ଓଡିଶାବାସୀଙ୍କ ସଂସ୍କୃତିର ମାପକାଠି ପାଲଟିଛି । ଓଡିଶା ରାଜ୍ୟ ଏବଂ ଅନ୍ୟ ରାଜ୍ୟ ପାଇଁ ଏହା ସଂସ୍କୃତିର ଅମୂଲ୍ୟ ଉପହାର ଅଟେ ।

ପ୍ରକଳ୍ପ ନିର୍ଦ୍ଦେଶକ, ଜଳବିଭାଜିକାଙ୍କ କାର୍ଯ୍ୟାଳୟ
ବରଗଡ – ୭୬୮୦୨୮

❖ ❖ ❖

# ଉତ୍କଳରେ ଦୁର୍ଗାମାଧବ ଉପାସନା

ବୈକୁଣ୍ଠନାଥ ମହାପାତ୍ର

ବଜ୍ରଯାନ ଗ୍ରନ୍ଥ ସାଧନମାଳାର ତାନ୍ତ୍ରିକ ପୀଠ ଉଡ୍‌ଡୀୟାନ, ଶ୍ରୀ ହଟ୍ଟ(ସିଲ୍‌ହଟ), ପୂର୍ଣ୍ଣଗିରି ଓ ଜଳନ୍ଧର ମଧ୍ୟରୁ ଉଡ୍‌ଡୀୟାନ ବା ଓଡ଼ିଶା ଅନ୍ୟତମ। ଉକ୍ତ କ୍ଷେତ୍ର ବିରଜାଙ୍କଠାରୁ ଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ ବିସ୍ତୃତ। ଆଦ୍ୟାଶକ୍ତି ଜଳନ୍ଧରରେ ଜ୍ୱାଳାମୁଖୀ, କାମ ରୂପରେ କାମାକ୍ଷା, ପୂର୍ଣ୍ଣଗିରିରେ ପୂର୍ଣ୍ଣେଶ୍ୱରୀ, କନ୍ୟାକୁମାରୀ ଓ ଉଡ୍‌ଡୀୟାନ ପୀଠରେ ବିମଳା ରୂପରେ ଆରାଧିତା। ଅନ୍ୟତ୍ର ଦୁର୍ଗା ଭୈରବୀ ଓ ଶିବ ଭୈରବ ଆରାଧିତ ହେବା ସମୟରେ ଶ୍ରୀକ୍ଷେତ୍ରରେ ବିମଳା, ଭୈରବୀ ଓ ଭୈରବ ବା ରକ୍ଷକ ରୂପେ ମାଧବ (ଶ୍ରୀଜଗନ୍ନାଥ) ଆରାଧିତ।

**ଧର୍ମ ସମନ୍ୱୟ**

ରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ନିର୍ମାଣ କରି ପ୍ରତିଷ୍ଠା ପାଇଁ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବାକୁ ବ୍ରହ୍ମାଲୋକକୁ ଗଲେ। ସେତେବେଳେ ବ୍ରହ୍ମା ତପସ୍ୟାରତ ଥିବାରୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଅପେକ୍ଷା କରିବାକୁ ପଡ଼ିଲା। ଇତ୍ୟବସରେ ମର୍ତ୍ତ୍ୟରେ ବହୁ ଯୁଗ ଅତିବାହିତ ହୋଇଯାଇଥିଲା ଓ ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ବାଲୁକା ଗର୍ଭରେ ପ୍ରୋଥିତ ହୋଇଗଲା। କାଳାନ୍ତେ ରାଜା ଗାଲ ମାଧବ ବାଲୁକା ମଧ୍ୟରୁ ମନ୍ଦିରକୁ ଆବିଷ୍କାର କରି ତାନ୍ତ୍ରିକ ପଦ୍ଧତିରେ ଭଗବତୀ ବିମଳାଙ୍କର ପୂଜାରାଧନା କଲେ। ବିମଳା ବନଦୁର୍ଗାଙ୍କ ରୂପରେ ଆରାଧିତା ହେଉଥିଲେ। ଇତ୍ୟବସରେ ଇନ୍ଦ୍ରଦ୍ୟୁମ୍ନ(୩ୟ) ବ୍ରହ୍ମାଙ୍କ ସଙ୍ଗେ ମର୍ତ୍ତ୍ୟ ଲୋକରେ ଅବତରଣ କଲେ ଓ ମନ୍ଦିର ନିର୍ମାଣର ବୃତ୍ତାନ୍ତ ବର୍ଣ୍ଣନା କରି ଗାଲମାଧବଙ୍କ ନିକଟରେ ସ୍ୱାଧିକାର ସାବ୍ୟସ୍ତ କଲେ। ତେଣୁ ଉଭୟଙ୍କ ମଧ୍ୟରେ ସଂଘର୍ଷ ଓ ମତାନ୍ତର ସୃଷ୍ଟି ହୋଇଥିବା ସ୍ୱାଭାବିକ। ତେଣୁ ବିଷ୍ଣୁ ଉପାସକ ଗାଲମାଧବଙ୍କ ମଧ୍ୟରେ ଏକ ଧର୍ମ ସମନ୍ୱୟ ସ୍ଥାପନ ପାଇଁ ଚତୁର୍ଭୁଜ ଦୁର୍ଗା(ବିମଳା)ଓ ମାଧବ (ଶ୍ରୀଜଗନ୍ନାଥ)ଙ୍କ ପୂଜାପଦ୍ଧତି ପ୍ରଚଳିତ ହୋଇଥିବା ଅନୁମାନ। ବୈଷ୍ଣବ ଓ ଶାକ୍ତମାନଙ୍କ ମଧ୍ୟରେ ବିଭେଦ ଭାବର ଦୂରୀକରଣ ପାଇଁ ଦୁର୍ଗା ମାଧବ ପୂଜାର ସୃଷ୍ଟି ଓ ପ୍ରଚଳନ। ଅଦ୍ୟାବଧି ଶ୍ରୀମନ୍ଦିରର ଭୋଗ ମଣ୍ଡପର ଉତ୍ତର ପାର୍ଶ୍ୱରେ ଏକପ୍ରସ୍ତର ଖୋଦିତ ବିଗ୍ରହରୁ ମାଧବ (ଶ୍ରୀଜଗନ୍ନାଥଙ୍କ) ସହ ଦୁର୍ଗା(ବିମଳା), ଭୈରବ ଓ ଭୈରବୀ ରୂପରେ ସ୍ଥାପିତ ଓ ଏକଦା ଆରାଧିତ ହେଉଥିବାର ପ୍ରମାଣ ମିଳେ। ଏହିପରି ପ୍ରମାଣ ମଧ୍ୟ କୋଣାର୍କ ପ୍ରତ୍ନଶାଳାର ପ୍ରସ୍ତର ଫଳକରୁ ମିଳିଥାଏ। ପୁନଶ୍ଚ ଶ୍ରୀମନ୍ଦିରର ବାହାର ବେଢ଼ା ଦକ୍ଷିଣ ପଶ୍ଚିମ କୋଣରେ ଭୂପୃଷ୍ଠରୁ କିଛି ଊର୍ଦ୍ଧ୍ୱରେ ଦୁର୍ଗାମାଧବ ମନ୍ଦିର ଦୃଷ୍ଟିଗୋଚର ହୁଏ। ଏଥିରୁ ସ୍ପଷ୍ଟ ପ୍ରମାଣିତ ଯେ ଉତ୍କଳବାସୀ ଦୁର୍ଗାମାଧବ ଉପାସନା ସହ ବହୁ ପ୍ରାଚୀନ କାଳରୁ ପରିଚିତ। ଶ୍ରୀମନ୍ଦିରର ଅଧିକାଂଶ ସେବାୟତ ଗୋଷ୍ଠୀ ଶ୍ରୀକ୍ଷେତ୍ରର ହରଚଣ୍ଡୀ ସାହିରେ ବସବାସ କରନ୍ତି। ଉକ୍ତ ସାହୀ ବହୁ ଦୀର୍ଘ ଓ ମଣିକର୍ଣ୍ଣିକାଠାରୁ ଯମେଶ୍ୱରଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ। ଉକ୍ତ ସାହିର ଏକ କ୍ଷୁଦ୍ରାଂଶ ଏ ପର୍ଯ୍ୟନ୍ତ ଗାଲମାଧବ ପୀଠ ନାମରେ ପରିଚିତ। ଏପରିକି ଚିଠିପତ୍ରରେ ବ୍ୟକ୍ତିବିଶେଷର ସୂଚନା ଦେବା ପାଇଁ 'ଗାଲମାଧବ ପୀଠ ବା ସାହି' ବୋଲି ଉଲ୍ଲେଖ କରାଯାଏ। କେତେକଙ୍କ ମତରେ ଗାଲମାଧବ ରାଜା ଶ୍ରୀକ୍ଷେତ୍ର ଆଗମନ ସମୟରେ ସେଠାରେ ବିଶ୍ରାମ କରିଥିଲେ। କିନ୍ତୁ ଅନୁଭବ ହୁଏ ଗାଲମାଧବଙ୍କ ଦ୍ୱାରା ନିୟୋଜିତ ସେବକଗଣ ଉକ୍ତ ସ୍ଥାନରେ ବସବାସ କରୁଥିଲେ ଓ ପରବର୍ତ୍ତୀ ସମୟରେ ଇନ୍ଦ୍ରଦ୍ୟୁମ୍ନ–ନିୟୋଜିତ ମାଧବ (ଶ୍ରୀଜଗନ୍ନାଥ) ଉପାସକ ବା ସେବକଗଣ ସେଠାରେ ବସତି ସ୍ଥାପନ କଲେ। ଉଭୟଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ, ବୈବାହିକ ଓ ପାରିବାରିକ ସଂପର୍କରେ ଏକ ମିଳିତ ଦୁର୍ଗାମାଧବ ସଂସ୍କୃତିର ସୂତ୍ରପାତ ହେଲା।

ଅନ୍ୟଏକ ବୈଚିତ୍ର୍ୟ ହେଉଛି ଶ୍ରୀଜଗନ୍ନାଥଙ୍କର ଅଧିକାଂଶ ସେବକଙ୍କ ଗୃହରେ ଦୁର୍ଗା(ବିମଳା) ଉପାସ୍ୟା ଦେବୀ ଯଦିଓ ସେମାନଙ୍କ ଇଷ୍ଟଦେବ ଭଗବାନ ଶ୍ରୀଜଗନ୍ନାଥ। ସାଧାରଣତଃ ବିଷ୍ଣୁ ଉପାସକଗଣ ସାତ୍ତ୍ୱିକ ଆହାରି ହେବା ବିଧେୟ ମହାପ୍ରଭୁଙ୍କ ସେବା

(ପାଳି) ଦିନ ସେମାନେ ହବିଷାନ୍ନ ବା ମହାପ୍ରସାଦ ଭକ୍ଷଣ କରନ୍ତି। ଏହା 'ଶକ୍ତି ଓ ଶକ୍ତିମାନ' ଉଭୟ ଉପାସନା ପଦ୍ଧତିର ମିଳନ ସ୍ୱରୂପ।

ଐତିହାସିକ ଓ ସାମାଜିକ ଦୃଷ୍ଟିକୋଣରୁ ଲକ୍ଷ୍ୟ କଲେ ଉତ୍କଳବାସୀଙ୍କର ଦୁର୍ଗାମାଧବ ଅବିସ୍ମରଣୀୟ ଓ ପ୍ରତ୍ୟେକ ଶୁଭକାର୍ଯ୍ୟରେ ପ୍ରତି ଦ୍ୱାରଦେଶରେ ଚତୁର୍ଭୁଜ ଦୁର୍ଗା (ବିମଳା) ଓ ମାଧବ (ଶ୍ରୀଜଗନ୍ନାଥ)ଙ୍କର ପଟ୍ଟଚିତ୍ର ଅଙ୍କା ଯାଏ। ଯାତ୍ରାନୁକୂଳ ସମୟରେ ଦୁର୍ଗାମାଧବଙ୍କୁ ସମସ୍ତେ ସ୍ମରଣ କରନ୍ତି। ବିଶେଷତଃ ଦଶହରା ଦିନ ଦୁର୍ଗାମାଧବଙ୍କ ଦର୍ଶନ ଚିର ମଙ୍ଗଳପ୍ରଦ ଓ ଶ୍ରୀ, ବିଜୟ ଓ ସମୃଦ୍ଧି କାମନା କରିବାରେ ସହାୟକ।

ଭକ୍ତ କବି ସାରଳା ଦାସ ସ୍ୱରଚିତ ମହାଭାରତରେ କେତେକ ସ୍ଥାନରେ ଦୁର୍ଗାମାଧବଙ୍କର ଅପୂର୍ବ ସମନ୍ୱୟ ପ୍ରତିପାଦନ କରିଛନ୍ତି।

**ଶାସ୍ତ୍ରୀୟ ପ୍ରମାଣ**

'ଶିବଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ'ନ୍ତ ଆନନ୍ଦଲହରୀର ପ୍ରଥମ ପାଦରୁ ଶିବ ଓ ଶକ୍ତିଙ୍କ ମଧ୍ୟରେ ଅଭେଦ ସମ୍ପର୍କ ସୂଚିତ ହୋଇଛି। ଶିବ ଓ ଶିବା, ଶକ୍ତି ଓ ଶକ୍ତିମାନ, ପୁରୁଷ ଓ ପ୍ରକୃତି ଏକ ଓ ଅଭିନ୍ନ। ଶିବଙ୍କ ସହ ଶିବା ବା ଦୁର୍ଗାଙ୍କ ସଂଯୋଗ ହେବା ସ୍ୱାଭାବିକ କିନ୍ତୁ ଦୁର୍ଗାଙ୍କ ସହ ମାଧବ (ବିଷ୍ଣୁ)ଙ୍କ ସଂଯୋଗ ସମସ୍ତଙ୍କ ମନରେ ବିସ୍ମୟ ସୃଷ୍ଟି କରେ। ତେବେ ଶିବ, ବିଷ୍ଣୁ, ଦୁର୍ଗା ଓ ଲକ୍ଷ୍ମୀଙ୍କ ମଧ୍ୟରେ ସମ୍ପର୍କ କଣ ?

'ପୁଂଲିଙ୍ଗ ସର୍ବମୀଶାନ ସ୍ତ୍ରୀଲିଙ୍ଗ ଭବତ୍ୟୁମୋ'ରୁ ସଂସାରର ସମସ୍ତ ପୁଂଲିଙ୍ଗ ଶିବ ଅଂଶୀ ଓ ସ୍ତ୍ରୀଲିଙ୍ଗ ଶିବାଅଂଶୀ। ପୁନଶ୍ଚ ନାରଦ ପଞ୍ଚରାତ୍ରରେ 'ଚି୍ ଚିଲ୍ଲକ୍ଷଣ ସର୍ବଂ ରାଧାକୃଷ୍ଣମୟ ଜଗତରୁ ସଂସାରର ସମସ୍ତ ପୁରୁଷ କୃଷ୍ଣଅଂଶୀ ଓ ସମସ୍ତ ସ୍ତ୍ରୀ ରାଧା ଅଂଶୀ ବୋଲି ପ୍ରମାଣିତ। ସ୍କନ୍ଦପୁରାଣରେ ସୁଭଦ୍ରା ଜଗନ୍ନାଥ ଓ ମହାପ୍ରଭୁ ଶ୍ରୀଜଗନ୍ନାଥ ଜଗତର ପିତା ରୂପେ ବର୍ଣ୍ଣିତ।

ଶକ୍ତି ଉପାସକ ସାରଳା ଦାସ ମହିଷାମର୍ଦ୍ଦିନୀ ସାରଳାଙ୍କୁ ପରମ ବୈଷ୍ଣବୀ ଓ ବିଷ୍ଣୁଙ୍କ ବଲ୍ଲଭୀ ରୁପେ ଆଖ୍ୟାୟିତ ହୋଇଛନ୍ତି।

'ଜୟ ଜୟ ସାରଳାଗୋ ବିଷ୍ଣୁର ବଲ୍ଲରୀ।
ଜୟ ଜୟ ସାରଳା ଗୋ ପରମ ବୈଷ୍ଣବୀ।' (ଆଦିପର୍ବ)

ବିଷ୍ଣୁ , ଶିବ ଓ ଶ୍ରୀକୃଷ୍ଣଙ୍କ ପରି ଦୁର୍ଗା, ସୁଭଦ୍ରା, ବିମଳା ଓ ରାଧା ଏକ ଓ ଅଭିନ୍ନ। ଲକ୍ଷ୍ମୀନାରାୟଣ, ଶିବପାର୍ବତୀ, ଦୁର୍ଗାମାଧବ, ରାଧାକୃଷ୍ଣ ଓ ରାମସୀତା ସମସ୍ତେ ପରମ ପୁରୁଷ ଓ ପ୍ରକୃତି ଦେବୀଙ୍କ ଉପାସନା ମାତ୍ର। ଅର୍ଥାତ୍ ମାଧବ ଓ ଶିବ ଏକ ବା ଅଭିନ୍ନ। ଭଗବାନ ବିଷ୍ଣୁ ସ୍ୱମୁଖରେ ଶଙ୍କରଙ୍କୁ ମହାତ୍ମା ବୋଲି ବର୍ଣ୍ଣନା କରିଛନ୍ତି।

ମାର୍କଣ୍ଡେୟ ପୁରାଣ ଓ ଦେବୀ ଭାଗବତରେ ଦେବୀଙ୍କ ୧୦୮ ନାମ ମଧ୍ୟରେ ସୁଭଦ୍ରା ଓ ବିମଳା ନାମ ଦୃଷ୍ଟିଗୋଚର ହୁଏ । ଏକ ଶକ୍ତିରୂପିଣୀ ଭଗବତୀ, ମହାଲକ୍ଷ୍ମୀ ରୂପରେ ବିଷ୍ଣୁଙ୍କର ସେବାରତା, ସ୍ୱର୍ଗରେ ସ୍ୱର୍ଗଲକ୍ଷ୍ମୀ, ରାଜ୍ୟରେ ରାଜଲକ୍ଷ୍ମୀ, ମର୍ତ୍ତ୍ୟରେ ପ୍ରତ୍ୟେକ ଗୃହରେ ଗୃହିଣୀ ଓ ବିଦ୍ୟା, ବୁଦ୍ଧି ଓ ପ୍ରଜ୍ଞା ରୂପିଣୀ ସରସ୍ୱତୀ ରୂପରେ ବାସ କରନ୍ତି।

ଦେବୀ ଭାଗବତାନୁସାରେ ବୃନ୍ଦାବନରେ ଅଧିଷ୍ଠାତ୍ରୀ ଦେବୀ ରାଧା, ମଥୁରାରେ ଦେବକୀ, ଦ୍ୱାରକାରେ ରୁକ୍ମିଣୀ। ତେଣୁ ରାଧାରୂପୀ ଦୁର୍ଗା (ବିମଳା ବା ସୁଭଦ୍ରା)ଙ୍କ ସହ କୃଷ୍ଣରୂପୀ ମାଧବ ବା ଶ୍ରୀଜଗନ୍ନାଥଙ୍କ ମିଳନରେ ଦୁର୍ଗାମାଧବ ଯୁଗଳ ଉପାସନା ବା ଧର୍ମ ସମନ୍ୱୟ ସୃଷ୍ଟି।

**ବୈଷ୍ଣବୀ ବିମଳା ଓ ଦୁର୍ଗାମାଧବ ଉପାସନା ପଦ୍ଧତି**

ଦକ୍ଷ ପ୍ରଜାପତିଙ୍କ ମୁଖରୁ ସ୍ୱାମୀ ନିନ୍ଦା ସହ୍ୟ କରି ନପାରି ସତୀ ଆଚରଣ ପୂର୍ବକ ଯଜ୍ଞକୁଣ୍ଡରେ ଆତ୍ମାହୂତି ଦେଲେ ଓ ତତ୍‌କ୍ଷଣାତ୍ ପ୍ରାଣ ବାୟୁ ଚାଲିଯିବାରୁ ସତୀ ଧରାଶାୟୀ ହେଲେ। ଶଙ୍କର ଯଜ୍ଞସ୍ଥଳୀରେ ଉପସ୍ଥିତ ହୋଇ ସତୀଙ୍କ ଏତାଦୃଶ ଅବସ୍ଥା ଅବଲୋକନ କରି ବ୍ୟାକୁଳ କ୍ରନ୍ଦନ କଲେ ଓ ଶିବଙ୍କ ଅଶ୍ରୁ ଜଳରେ ବୈତରଣୀ ନଦୀର ସୃଷ୍ଟି ହେଲା। ଶଙ୍କର ସତୀଙ୍କ ମୃତଶରୀର ସ୍କନ୍ଧରେ ଧାରଣ କରି ପୂର୍ବାଭିମୁଖୀ ହେଲେ। ବ୍ରହ୍ମା ବିଷ୍ଣୁ ଓ ଶନି ଦ୍ୱାରା ସତୀଙ୍କ ଶରୀର ଖଣ୍ଡବିଖଣ୍ଡ ହୋଇ ଭୂପତିତ ହେଲା ଓ ପ୍ରତ୍ୟେକ ଶରୀରାଂଶରୁ ଶକ୍ତି ପୀଠର ସୂତ୍ରପାତ ହେଲା। କେତେକଙ୍କ ମତରେ ସତୀଙ୍କ ଶରୀର ୪୯ଭାଗ ଓ ଦେବୀ ଭାଗବତାନୁସାରେ ୧୦୮ ଭାଗ ହୋଇ ଭୂପତିତ ହେଲା। ଦେବୀଙ୍କ ରସନା(କେତେକଙ୍କ ମତରେ ପାଦପଦ୍ମ)ର ପତନରେ ବିମଳା ପୀଠର ସୃଷ୍ଟି। ଉଡ୍ଡୀଶ ତନ୍ତ୍ରୋକ୍ତ 'ରସନା ଉତ୍ର ଦେଶେ ଚ ବିମଳା ପୁରୁଷୋତ୍ତମେ' ଶ୍ଳୋକରୁ ବିମଳା ରସନା ପୀଠରୂପେ ପ୍ରତିପାଦିତ। ଏହା ଅଧିକ ଯୁକ୍ତିଯୁକ୍ତ କାରଣ ଶ୍ରୀମନ୍ଦିରରେ ଅନ୍ୟାନ୍ୟ ଦେବଦେବୀଙ୍କର ବାହାର ଦେଉଳି ଭୋଗର ବନ୍ଦୋବସ୍ତ ଥିବାବେଳେ ପରମ୍ପା ବିମଳାଙ୍କର ଏପରି ନାହିଁ ଏବଂ ଜଗନ୍ନାଥ ମହାପ୍ରଭୁଙ୍କ ନୈବେଦ୍ୟାନ୍ନ ଦେବୀଙ୍କୁ ସମର୍ପଣ କରାଯାଏ।

ଅନ୍ୟ ଶକ୍ତିପୀଠ ପରି ଶ୍ରୀମନ୍ଦିରରେ ଶାରଦୀୟ ମହାପୂଜା ଅନୁଷ୍ଠିତ ହୁଏ। ଦୁର୍ଗାମାଧବ ଉପାସନା ଆଶ୍ୱିନ ମାସର କୃଷ୍ଣ ଅଷ୍ଟମୀଠାରୁ ଶୁକ୍ଳ ନବମୀ ୧୭ଦିନ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ପାଳନ

କରାଯାଏ। ଅଷ୍ଟମୀ ଦିନ ଦୁର୍ଗାପୂଜା ନିମିତ୍ତ ଦେବୀ ସୁଭଦ୍ରାଙ୍କୁ ପ୍ରାର୍ଥନା କରାଯାଏ। ଧୂପ ବଢ଼ିବାପରେ ସ୍ୱର୍ଣ୍ଣାଭ ଦୁର୍ଗାମୂର୍ତ୍ତି ଆଜ୍ଞାମାଳ ପାଇ ମାଜଣା ମଣ୍ଡପ ପଲଙ୍କ ଉପରେ ବିଜେହୁଅନ୍ତି। ପଣ୍ଡା,ପଡି, ମୁଦିରସ୍ତ ଓ ଆଚାର୍ଯ୍ୟ ୧୦୮ ଗରା ଜଳ ଦ୍ୱାରା ବନଦୁର୍ଗା ମନ୍ତ୍ରରେ ଦେବୀଙ୍କୁ ଅଭିଷେକ କରନ୍ତି। ଶୀତଳ ଭୋଗ ହୁଏ। ମୁଦିରସ୍ତ ପ୍ରସାଦ ଲାଗି କରନ୍ତି। ପଞ୍ଚୋପଚାର ଭୋଗପରେ ବନ୍ଦାପନା ହୋଇ ମହାଦେବୀ ଭଣ୍ଡାର ଦ୍ୱାରରେ ବିଜେ ହୁଅନ୍ତି। ମାଧବ ଆଜ୍ଞାମାଳ ପାଇ ଭଦ୍ରାସନରେ ଦୁର୍ଗାଙ୍କ ସହ ଏକତ୍ର ମିଳିତ ହୁଅନ୍ତି।

ତତ୍ପରେ ଦୁର୍ଗାମାଧବ ରତ୍ନସିଂହାସନରେ ବିଜେ ହୁଅନ୍ତି ଓ ସୁଭଦ୍ରା ଦେବୀଙ୍କଠାରୁ ଦୁର୍ଗା ଓ ଜଗନ୍ନାଥଙ୍କଠାରୁ ମାଧବ ଆଜ୍ଞାମାଳ ପାଇ ଜୟ ବିଜୟ ଦ୍ୱାର ଦେଇ ଝୁଲଣମଣ୍ଡପ ତଳେ ଥିବା ସୁସଜ୍ଜିତ ପାଲିଙ୍କିରେ ବିଜେ ହୁଅନ୍ତି ।

ବିମଳାଙ୍କ ନିକଟରେ କୋଠଭୋଗ, ପିଷ୍ଟକ, ଥାଳି ଖେଚେଡି ମଣୋହିରେ ବଢ଼ା ହୋଇ ଷୋଡ଼ଶ ଉପଚାରରେ ପୂଜା କରାଯାଏ ଓ ଆଳତି ବନ୍ଦାପନା ପରେ ବିମଳାଙ୍କ ଜଗମୋହନସ୍ଥ ପଲଙ୍କ ଉପରେ ଦୁର୍ଗାମାଧବ ବିଜେ ହୁଅନ୍ତି। ଶୀତଳଭୋଗ ମଣୋହି ପରେ ବନ୍ଦାପନା ହୁଏ। ବିମଳାଙ୍କ ତିନି ଧୂପ ଓ ଜଗନ୍ନାଥଙ୍କ ରାତ୍ରି ଚନ୍ଦନ ଲାଗି ପରେ ବିମାନବଡୁ ବିମାନରେ ଦୁର୍ଗାମାଧବଙ୍କୁ ନିଅନ୍ତି/ ମହାଜନ ଭଣ୍ଡାର ଘରେ ଦୁର୍ଗାମାଧବଙ୍କୁ ବିଜେ କରାନ୍ତି। ପ୍ରଥମ ୮ ଦିନ ଦୁର୍ଗାମାଧବ ବିମଳାଙ୍କ ମନ୍ଦିରକୁ ବିଜେ କରନ୍ତି। ଉପରୋକ୍ତ ମତରେ ଉପାସନା ନୀତି ପାଳିତ ହୁଏ। ନବମୀ ଦିନ ଦୁର୍ଗାମାଧବ ରଥରେ ବସି ଦୋଳମଣ୍ଡପ ସାହି ନାରାୟଣୀଙ୍କ ମନ୍ଦିରକୁ ବିଜେ କରନ୍ତି । ଏହା ଶ୍ରୀକ୍ଷେତ୍ରରେ ଶାକ୍ତ ଗୁଣ୍ଡିଚା ନାମରେ ଅଭିହିତ । ଏଠାରେ କର୍ପୂର ଜଳ ଲାଗି ପରେ ପଲଙ୍କ ଉପରେ ଦୁର୍ଗାମାଧବ ବିଜେ ହୁଅନ୍ତି। ଭୋଗ ବନ୍ଦାପନା ହୁଏ। ଜଗନ୍ନାଥଙ୍କ ରାତ୍ରି ଚନ୍ଦନ ସରିବା ପରେ ବିମାନଗଡୁ ପାଲିଙ୍କିରେ ଦୁର୍ଗାମାଧବଙ୍କୁ ନେଇ ଭଣ୍ଡାର ଦୁଆରେ ବିଜେ କରନ୍ତି। ଏହିପରି ଦଶହରା ପର୍ଯ୍ୟନ୍ତ ଚାଲେ ଓ ୧୬ ଦିନ ପର୍ଯ୍ୟନ୍ତ ଦୁର୍ଗାମାଧବ ଏକତ୍ର ରୁନ୍ଧାହୋଇ ରହନ୍ତି। ଦଶହରା ଦିନ ଜଗନ୍ନାଥ ବଲ୍ଲଭରୁ ଫେରିବା ପରେ ଦୁର୍ଗା ଭଣ୍ଡାର ଗୃହରେ ଓ ମାଧବ ଜଗନ୍ନାଥଙ୍କ ବାମ ଦିଗରେ ( ରତ୍ନ ସିଂହାସନରେ) ବିଜେ ହୁଅନ୍ତି ।

ଆଶ୍ୱିନ ଶୁକ୍ଳ ସପ୍ତମୀ ପର୍ଯ୍ୟନ୍ତ ବିମଳାଙ୍କ ସଙ୍ଖୁଡ଼ି ଭୋଗ ହୁଏ ନାହିଁ। ସପ୍ତମୀ, ଅଷ୍ଟମୀ ଏବଂ ନବମୀରେ ସଙ୍ଖୁଡ଼ି ଭୋଗ ହୋଇ ନିଶାର୍ଦ୍ଧ ପୂଜା ହୁଏ। ଷୋଳପୂଜା ସମୟରେ ନାରୀମାନେ ବିମଳାଙ୍କ ମନ୍ଦିର ଭିତରକୁ ପ୍ରବେଶ କରିପାରନ୍ତି ନାହିଁ।

ଦଶମୀ ଦିନ ଶ୍ରୀଜଗନ୍ନାଥଙ୍କ ବିଜୟ ଉତ୍ସବ ପାଳନ କରାଯାଏ । ଉକ୍ତ ଦିବସ ଦଶହରା ନାମରେ ଲୋକବିଦିତ। ମହାମାୟାଙ୍କ ଉପାସନା ସମୟରେ ଆତ୍ମଗ୍ଳାନି, ଅସୂୟା, ଈର୍ଷା, ଦ୍ୱେଷ, ପରୋକ୍ଷ, ବାକ୍ୟ, ମିଥ୍ୟା, କ୍ରୋଧ, ଅଭିମାନ, ଅହଂକାର ଦଶବିଧ ମାନସିକ ବାଧା ବିନାଶ ପାଇଁ ପ୍ରାର୍ଥନା କରାଯାଇ ଦଶଦୁର୍ଗା ଦେବୀଙ୍କୁ ସମର୍ପଣ କରାଯାଏ ।

ଶ୍ରୀଜଗନ୍ନାଥ ମନ୍ଦିରରେ ଅବକାଶ ପରେ ଚନ୍ଦନ ଲାଗି ହୁଏ। ରାଜାବେଶ ପରେ ଗୋପାଳ ବଲ୍ଲଭ, ସକାଳଧୂପ ଅନୁଷ୍ଠିତ ହୁଏ। ଭଣ୍ଡାର–ଦ୍ୱାର ଦେଶରେ ପୂଜାରେ ବସିଥିବା ଆୟୁଧମାନଙ୍କୁ ସ୍ନାନ କରାଇ ବରୁଣ ପୂଜା କରାଯାଏ। ସହସ୍ର କୁମ୍ଭ ଅଭିଷେକ ହୁଏ। ଘଣ୍ଟା, ଛତା ଓ କାହାଳୀ ସହ ଆୟୁଧ ପଟୁଆର ହୋଇ ତିନିଥର ବେଢ଼ା ପ୍ରଦକ୍ଷିଣ କରି ସିଂହାସନ ବିଜେ ହୁଅନ୍ତି। ବଳଭଦ୍ର ହଳ ଓ ମୂଷଳ, ସୁଭଦ୍ରା ତଡ଼ିଗୀ, ଦାଡି ଓ ମହାପ୍ରଭୁ ଶଂଖଚକ୍ର ଧାରଣ କରିଥାନ୍ତି ।

ଦକ୍ଷିଣ ଗୃହରେ ରାମ, କୃଷ୍ଣ ଓ ମଦନମୋହନ ବୀର ବେଶ ହୁଅନ୍ତି। ଜଗନ୍ନାଥ ଆଳତି ସରିବା ପରେ ରାମ, କୃଷ୍ଣ, ମଦନ ମୋହନ ଓ ଦୁର୍ଗାମାଧବ ରତ୍ନସିଂହାସନରେ ବିଜେ ହୁଅନ୍ତି।

ଉପରୋକ୍ତ ଦେବାଦେବୀ ସକଳ ଶ୍ରୀଜଗନ୍ନାଥଙ୍କଠାରୁ ଆଜ୍ଞାମାଳ ପାଇ ଜଗମୋହନ ଦେଇ ଯାତ୍ରା କରନ୍ତି। ବଟମୂଳେ ଥିବା ପାଲିଙ୍କିରେ ରାମ, କୃଷ୍ଣ ରଥରେ ଦୁର୍ଗାମାଧବ ଓ ବିମାନରେ ମଦନମୋହନଙ୍କୁ ବିଜେ କରାଯାଏ। ଠାକୁରମାନେ ଜଗନ୍ନାଥ ବଲ୍ଲଭ ମହାଖଳା ପଦାକୁ ଯାଆନ୍ତି। ମୁଦିରସ୍ତେ ପ୍ରସାଦ ଲାଗି ଶୀତଳ ଭୋଗ ହୁଏ। ବନ୍ଦାପନା ପରେ ବାହୁଡ଼ା ବିଜେ ହୋଇ ମାଧବ ରତ୍ନ ସିଂହାସନରେ ଜଗନ୍ନାଥଙ୍କ ବାମ ପାର୍ଶ୍ୱରେ ବିଜେ ହୁଅନ୍ତି। ଦୁର୍ଗା ଭଣ୍ଡାର ଗୃହରେ, ରାମ, କୃଷ୍ଣ ଓ ମଦନମୋହନ ଦକ୍ଷିଣ ଗୃହରେ ବିଜେ ହୁଅନ୍ତି। ଉକ୍ତ ବିଜୟା ଉତ୍ସବ ମାଙ୍ଗଳିକ କାଣ୍ଡୋତ୍ସବ ନାମରେ ଅଭିହିତ ।

ଦୁର୍ଗାମାଧବଙ୍କ ଉପାସନା ଶୈବ ଶାକ୍ତ ଓ ବୈଷ୍ଣବଙ୍କ ମଧ୍ୟରେ ସାଂପ୍ରଦାୟିକ ଭେଦଭାବ ଦୂର କରିଥାଏ। ସମସ୍ତ ଊର୍ଦ୍ଧ୍ୱକୁ ଯାଇ ଅବିଭକ୍ତି ବାଦରେ ପ୍ରବେଶ କରିବା ଓ ଐତିହାସିକ ଧର୍ମ ସମନ୍ୱୟ ସ୍ଥାପନ କରିବା ଦୁର୍ଗାମାଧବ ଉପାସନାର ଏକ ପ୍ରଧାନ ଲକ୍ଷ୍ୟ। ଯେଉଁ ଶ୍ରଦ୍ଧାବାନ ବ୍ୟକ୍ତି ଦୁର୍ଗାମାଧବଙ୍କୁ ନିତ୍ୟ ସ୍ମରଣ କରେ, ତାହାର ସର୍ବବିଘ୍ନ ବିନାଶ ହୋଇ ପରମ ପଦ ପ୍ରାପ୍ତି ହୁଏ ।

ନୟାଗଡ଼

# ଧାର୍ମିକ ବିଚାରରେ ଦୀପାବଳି

**ଲକ୍ଷ୍ମୀଚରଣ ସାମନ୍ତରାୟ**

ଶ୍ରଦ୍ଧାର ସହିତ ଅଗଣିତ ଭାରତବାସୀ ଦୀପାବଳି ଉତ୍ସବ ମହାସମାରୋହରେ ପାଳନ କରିଥାନ୍ତି । ମନ୍ତ୍ରଦ୍ରଷ୍ଟା ଋଷିଗଣଙ୍କ ମତରେ ଏହି ମହାନ୍ ପର୍ବ ହେଉଛି ସୌଭାଗ୍ୟ ଲକ୍ଷ୍ମୀ ପ୍ରାପ୍ତିର ମହୋତ୍ସବ । ଦୀପ ହେଉଛି ଅଗ୍ନିର ପ୍ରତୀକ । ପ୍ରତ୍ୟେକ ଶୁଭାନୁଷ୍ଠାନରେ ପରଂବ୍ରହ୍ମଙ୍କ ପ୍ରତୀକ ସ୍ୱରୂପ ଭାରତୀୟ ଜନଜୀବନରେ ଏହା ପ୍ରତିଭାତ । ଭାରତୀୟ ସଂସ୍କୃତିରେ ଦୀପ ଜ୍ୟୋତିକୁ ପାପନାଶକ ଶକ୍ତି ରୂପେ ଉପାସନା କରାଯାଇଛି । ଦୀପ ବିନା କୌଣସି ପବିତ୍ର ଅନୁଷ୍ଠାନର କାର୍ଯ୍ୟ ହୋଇ ନଥାଏ । ଅଗ୍ନି ମାଧ୍ୟମରେ ଉପାସନାର ପ୍ରଚ୍ଛନ୍ନ ମହତ୍ତ୍ୱ ଏହା ମଧ୍ୟରେ ନିହିତ । ପୂଜା ଅନୁଷ୍ଠାନମାନଙ୍କର ଶୁଭାରମ୍ଭ ଦୀପ ପ୍ରଜ୍ୱଳନ ଦ୍ୱାରା ହିଁ ହୋଇଥାଏ । ମହିମାମୟ କାର୍ତ୍ତିକ ମାସର ଅମାବାସ୍ୟାରେ ଗୃହ, ଦେବାଳୟ ପ୍ରଭୃତି ଦୀପାଲୋକରେ ସୁସଜ୍ଜିତ କରିବା ପୂର୍ବକ ଆଲୋକ ଓ ଆନନ୍ଦର ମହାନୁଭବତାରେ ଭକ୍ତ ଉଦ୍‌ବୁଦ୍ଧ ହୋଇଥାଏ ।



ଆର୍ଯ୍ୟ ଋଷିଙ୍କ ମତରେ ଏହି ପୁଣ୍ୟକାଳ ପିତୃଗଣଙ୍କ ଶ୍ରାଦ୍ଧ ନିମିତ୍ତ ମହତ୍ତ୍ୱପୂର୍ଣ୍ଣ, ସୂର୍ଯ୍ୟ କନ୍ୟାରାଶିକୁ ଗମନ ପୂର୍ବକ ଚନ୍ଦ୍ରଙ୍କ ସହିତ ମିଳିତ ହେବାର ସମୟଠାରୁ ଅର୍ଥାତ୍ ମହାଳୟାଠାରୁ ବିଦଂଗତ ମାତୃପିତୃଗତ ସୂକ୍ଷ୍ମ ଶରୀରରେ ଚନ୍ଦ୍ରଲୋକର ଊର୍ଦ୍ଧ୍ୱସ୍ଥିତ ପିତୃଲୋକରେ ବାସ କରିଥାନ୍ତି । ଅର୍ଥାତ୍ ମହାଳୟାଠାରୁ ପୃଥିବୀ ପିତୃଲୋକର ନିକଟବର୍ତ୍ତୀ ହୋଇଥାଏ । ଏହି ସମୟରେ ଆମ ପୂର୍ବପୁରୁଷଗଣ ଅଶରୀରୀ ଭାବରେ ଧରାପୃଷ୍ଠକୁ ଅବତରଣ କରିଥାନ୍ତି । ପରଲୋକଗତ ପୂର୍ବସୂରୀଙ୍କର ଶୁଭାଗମନର ସମ୍ମାନାର୍ଥେ, ଶାସ୍ତ୍ରୋକ୍ତ ବିଧିରେ ମହାଳୟା, ଶ୍ରଦ୍ଧାନୁଷ୍ଠାନ ଓ ପିଣ୍ଡଦାନ ପରେ ଦୀପାବଳି ଅମାବାସ୍ୟାରେ ପୟାଶ୍ରାଦ୍ଧ ସମ୍ପନ୍ନ ପୂର୍ବକ ପିତୃଗଣଙ୍କୁ ସମ୍ମାନ ପ୍ରଦର୍ଶନ କରାଯାଏ । ବେଦାତୀତ ପିତୃମାତୃଗଣ, ସନକାଦି ସପ୍ତ ମନୁଷ୍ୟ, ଭୂତ, ପ୍ରେତ, ରାକ୍ଷସ, ଯକ୍ଷ, ପିଶାଚ, ନଦୀ, ପର୍ବତ, ବୃକ୍ଷ, ଲତା, ପର, ଅପର ସମସ୍ତଙ୍କ ଉଦ୍ଦେଶ୍ୟରେ ସୁମିଷ୍ଟ ପଦାର୍ଥ ସହ ପ୍ରଜ୍ୱଳିତ ଦୀପଦାନ ଉତ୍ସବ ହେଉଛି ପୂର୍ବସୂରୀ ସ୍ମରଣର ମହାନ୍ ପରମ୍ପରା । ଋଷିଗଣ, ଶ୍ରାଦ୍ଧ, ତର୍ପଣ, ଦୀପଦାନ ନିମିତ୍ତ ଆଶ୍ୱିନ ଓ କାର୍ତ୍ତିକ ଏହି ଦୁଇ ମାସକୁ ଉପାସନା କାଳରୂପେ ବର୍ଣ୍ଣନା କରିଯାଇଛନ୍ତି । ଏପରିକି ଯେଉଁମାନେ ମନ୍ତ୍ର ଉଚ୍ଚାରଣ କରିପାରନ୍ତି ନାହିଁ, ସେମାନେ କାଉଁରିଆ କାଠି ଜାଳି ବଡବଡୁଆଙ୍କୁ ସ୍ମରଣ କରିଥାନ୍ତି । ରାତ୍ରରେ ପ୍ରତିଘରୁ ନିଃସୃତ ବଡବଡୁଆଙ୍କ ଉଦ୍ଦେଶ୍ୟରେ ସେମାନଙ୍କ ବଂଶଧର ତଥା ଆତ୍ମୀୟଙ୍କ କଣ୍ଠରୁ ନିବେଦନ, 'ବଡବଡୁଆ ହୋ, ଅନ୍ଧାରରେ ଆସି ଆଲୁଅରେ ଯାଅ ।' କର୍ମକାଣ୍ଡରେ କୁହାଯାଇଛି –

'ପିତୃଲୋକଂ ପରିତ୍ୟଜ୍ୟ ଆଗତ ମେ ମହାଳୟେ,
ଉଜ୍ଜଳଂ ଜ୍ୟୋତିଷାଂ ମାର୍ଗଂ ପ୍ରପଶ୍ୟନ୍ତେ ବ୍ରଜନ୍ତୁ ତେ ।'

ପିତୃଲୋକ ତ୍ୟାଗକରି ମହାଳୟାରେ ଯେଉଁମାନେ ଆସିଥିଲେ, ସେହିମାନେ ଏହି ଆଲୋକିତ ମାର୍ଗ ଦର୍ଶନ କରନ୍ତୁ । ଅନ୍ତଃକରଣର ଶ୍ରଦ୍ଧା ସହିତ ପୂର୍ବପୁରୁଷଙ୍କ ତୃପ୍ତି ନିମିତ୍ତ ଶ୍ରାଦ୍ଧ ତର୍ପଣାଦି କର୍ମ ସମ୍ପାଦନ କରିବା ଦ୍ୱାରା, ପିତୃଗଣ ଆତ୍ମସନ୍ତୋଷ ଲାଭ ପୂର୍ବକ ପୁନର୍ବାର ପିତୃଲୋକକୁ ଫେରିଯାଆନ୍ତି । ସେମାନଙ୍କ ଆଶୀର୍ବାଦ ପରିବାର ପକ୍ଷରେ କଲ୍ୟାଣକର ହୋଇଥାଏ ।

ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ କାର୍ତ୍ତିକ ମାସର ଏକ ସ୍ୱତନ୍ତ୍ରତା ରହିଛି । ଏହି ମାସରେ ପ୍ରାତଃସ୍ନାନ, ଭଗବଦ୍ ଭଜନ, ଦୀପଦାନ, ହବିଷ୍ୟଭୋଜନ ଦୃଷ୍ଟିରୁ ଭାରତୀୟ ଆଧ୍ୟାତ୍ମିକ ସଂସ୍କୃତିରେ ଏହି ପୁଣ୍ୟକାଳ ସର୍ବୋତ୍ତମ ସମ୍ବେଦନଶୀଳ ମୁହୂର୍ତ୍ତ ପ୍ରତ୍ୟେକ ସନ୍ଧ୍ୟାରେ ଆକାଶ ଦୀପ ଜଳାଯାଇ ଆଧ୍ୟାତ୍ମିକ ସାଧନାରେ ବ୍ରତୀ ହେବାର ପରମ୍ପରା ପୁରାଣ ଯୁଗରୁ ପ୍ରଚଳିତ ।

ଦୀପ ହେଉଛି ଜ୍ଞାନର ପ୍ରତୀକ । ଜ୍ଞାନର ଆଲୋକରେ ଭଗବାନଙ୍କ ପ୍ରକାଶ । ଏହା ସତ୍ୟ ଯେ, ଆମେ ଯେଉଁ ଆଲୋକ ପାଇଁ ଦୀପାବଳିରେ ପ୍ରାର୍ଥନା କରୁ, ତାହା ହେଉଛି ପବିତ୍ର ଚେତନାର ଆଲୋକ । କେବଳ ଧ୍ୟାନଦ୍ୱାରା ଏହି ପବିତ୍ର ମହାଜ୍ୟୋତିକୁ ଉପଲବ୍ଧ କରିହେବ । ତେଣୁ ଦୀପାବଳି ମହୋତ୍ସବ ମଣିଷକୁ ଅନ୍ଧକାରରୁ ଆଲୋକକୁ ନେବା ପାଇଁ ସମ୍ମିଳିତ ପ୍ରାର୍ଥନା ମାତ୍ର । ପ୍ରାର୍ଥନା ହୃଦୟକୁ ସୁସ୍ଥ ରଖେ । ମାନସିକ ଶକ୍ତି ବୃଦ୍ଧି କରେ । ଆତ୍ମବିଶ୍ୱାସକୁ ସୁଦୃଢ କରିବାରେ ପ୍ରାର୍ଥନା ହିଁ ଏକ ସରଳ ପଥ ।

ଆମ ଅନ୍ତରରେ ଥିବା ଆଲୋକ ସ୍ୱୟଂବ୍ରହ୍ମ । ସେହି ଆଲୋକର ସନ୍ଧାନ ପାଇଁ ଏହି ମହାନ୍ ତିଥିରେ ପ୍ରାର୍ଥନା କରିବା ଉଚିତ୍ । ନିଜର ଅନୁଭୂତି ମାଧ୍ୟମରେ ଯେକୌଣସି ମନୁଷ୍ୟ ଅନୁଭବ କରିପାରିବ ଯେ, ଦିବ୍ୟଶକ୍ତି ତା' ଭିତରେ ଓ ବାହାରେ ସତତ ସକ୍ରିୟ ରହି ଆସିଛି । ଜୀବନକୁ ବିକଶିତ କରିବା ଦିଗରେ 'ପୂଜା' ଏକ ସରଳ ମାଧ୍ୟମ ପୂଜା ବା ଉପାସନା ଦ୍ୱାରା ମନୁଷ୍ୟର ଦିବ୍ୟଶକ୍ତି ଜାଗ୍ରତ ହୋଇଥାଏ । ସେଥିରୁ ଆସେ ଅନୁଭବ ପ୍ରେରଣା । ଆଲୋକ ମାଳାରେ ସୁସଜ୍ଜିତ ମହୋତ୍ସବରେ 'ଦୀପଂ ଦେହି ଜ୍ୟୋତିଂ ଦେହି' ପ୍ରାର୍ଥନା ଦେବୀଙ୍କ ଉଦ୍ଦେଶ୍ୟରେ ସମର୍ପିତ ।

ଦେବୀଙ୍କୁ ଆବାହନ କରି ପୂଜାଦ୍ୱାରା ତାଙ୍କୁ ସନ୍ତୁଷ୍ଟ କରାଇ ମନୁଷ୍ୟ ନିଜ ହୃଦୟରେ ଥିବା ରଜ ଓ ତମ ଗୁଣଗୁଡ଼ିକୁ ବଳିଦାନ ଦିଏ । ଅଜ୍ଞତାର ଅନ୍ଧକାରରୁ ମୁକ୍ତ ହୁଏ । ମନୁଷ୍ୟ ନିଜର ଅନ୍ତର୍ନିହିତ ଦୈବୀଶକ୍ତିକୁ ବଳବତୀ କରାଇବା ପାଇଁ 'ଦେବୀ'ଙ୍କ ପୂଜା ହେଉଛି ସର୍ବୋତ୍କୃଷ୍ଟ ମାଧ୍ୟମ । ଏହା ହିଁ ଦେବୀ ପୂଜାର ତାତ୍ପର୍ଯ୍ୟ । ଏହା ହିଁ ମାତୃଶକ୍ତିର ଆବାହନ । କାଳୀପୂଜା ଓ ଦୀପାବଳିର ପବିତ୍ର ଉତ୍ସବରେ ଆମର ସେହି ଶକ୍ତିମୟୀଙ୍କୁ ପ୍ରାର୍ଥନା, ଆସୁରିକ ଶକ୍ତି ଲୋପ ପାଉ, ନୂତନ ଜ୍ଞାନାଲୋକ ସୌହାର୍ଦ୍ଦ୍ୟ ରଜ୍ଜୁରେ ସମସ୍ତଙ୍କୁ ବାନ୍ଧି ରଖୁ। ଆମେ ଏହି ପବିତ୍ର ଦିବସରେ ଶାନ୍ତି ଓ ସଂହତିର ଆଲୋକ ପ୍ରାର୍ଥନା କରୁଛୁ ।

ଖାଜା ସାହି
ବ୍ରହ୍ମପୁର– ୭୬୦୦୦୧

❖ ❖ ❖

# ମଧ୍ୟଯୁଗୀୟ ଓଡିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଦର୍ଶନ

**ଡକ୍ଟର ବିନୋଦିନୀ ଦାସ**

ଶ୍ରୀଜଗନ୍ନାଥ ହେଉଛନ୍ତି ଓଡିଆମାନଙ୍କର ପ୍ରାଣସତ୍ତା ଓ ଆତ୍ମା । କେଉଁ ଆବହମାନ କାଳରୁ ତାଙ୍କର ଉପାସନା ଏ ଭୂଇଁରେ ପ୍ରବର୍ତ୍ତିତ ତାହା ଆକଳନ କରିବା ମଧ୍ୟ କଷ୍ଟକର । ଅନେକ ଗବେଷକଙ୍କ ମତରେ ଏହା ହେଉଛି ଶାବରୀ ସଭ୍ୟତା ଓ ଆର୍ଯ୍ୟ ସଭ୍ୟତାର ସମନ୍ୱୟ । ତାଙ୍କର କ୍ଷେତ୍ର ହେଉଛି ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମ କ୍ଷେତ୍ର, ଯେଉଁ କ୍ଷେତ୍ରକୁ କେବଳ ତୀର୍ଥାଟନ ବ୍ୟତୀତ ଅନ୍ୟ ଉଦ୍ଦେଶ୍ୟରେ ଆସିବା ଲାଗି ବାରଣ କରାଯାଇଥିଲା । ତୀର୍ଥ ଯାତ୍ରା ବିନା ଅନ୍ୟ ଉଦ୍ଦେଶ୍ୟରେ ଗମନ କଲେ ପୁନଃ ସଂସ୍କାରର ଆବଶ୍ୟକତା ପଡିବବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି ।

କେତେକ କାରଣ ଯୋଗୁଁ ଓଡିଆର ନାଥ ଶ୍ରୀଜଗନ୍ନାଥଙ୍କୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଦର୍ଶନ କରିବା ସୁଖରୁ ବଞ୍ଚିତ ହେଲେ । ଓଡିଆ ଜନମାନସ ପଟଳରେ ଏକ ତୀବ୍ର ଅଶାନ୍ତ ପରିବେଶ ସୃଷ୍ଟି ହେଲା ।

ଏହି ଘଡିସନ୍ଧି ମୁହୂର୍ତ୍ତରେ ମଧ୍ୟଯୁଗୀୟ ଓଡିଆ ସାହିତ୍ୟିକ ଆକାଶରେ ଯଉଁ ମହାନ୍ ସାରଥୀମାନଙ୍କର ଆବିର୍ଭାବ ଘଟିଲା ତାହା ତତ୍‌କାଳୀନ ଧର୍ମ ଧାରଣାରେ ଆଣିଲା ଏକ ବୈପ୍ଳବିକ ପରିବର୍ତ୍ତନ । ଜଗନ୍ନାଥ ଯେ 'ସାର୍ବଜନୀନ ଦେବତା' ଏହି ବାର୍ତ୍ତାକୁ ନିଜ ନିଜ ସାହିତ୍ୟ ରଚନାବଳୀରେ ସ୍ୱକୀୟ ଠାଣିରେ ସେମାନେ ପ୍ରକାଶ କରିଥିଲେ । ପଞ୍ଚସଖାର ବୟୋଜ୍ୟେଷ୍ଠ କବି ବଳରାମ ଦାସ ତାଙ୍କ ରଚିତ କବିତା 'ଭାବ ସମୁଦ୍ର'ରେ ମୁକ୍ତ କଣ୍ଠରେ ଶୁଣାଇଛନ୍ତି–

'କାହୁଁ ଭିଆଇଲୁ କ୍ଷେତ୍ର ତୋହର, ଦ୍ୱିଜ ଚଣ୍ଡାଳ ଏକ କରୁ ତୁହି
ନାଥତୁ ଶବର ଉଚ୍ଛିଷ୍ଟ ଖାଉ, ବ୍ରହ୍ମ ନିରିମାଲ୍ୟ ତୋର ନ ଖାଉ'

(ଭାବ ସମୁଦ୍ର)

ଜଗନ୍ନାଥ ଯେ କୌଣସି ଏକ ନିର୍ଦ୍ଦିଷ୍ଟ ଜାତିର ଦେବତା ନୁହଁନ୍ତି, ସେ ସବୁରି, ଏ ତଥ୍ୟ ମଧ୍ୟ କବି ସେହି ଭାବ 'ଭାବ ସମୁଦ୍ର' କବିତାରେ ପ୍ରକାଶ କରି ଅଛନ୍ତି –

'ହରି ହୋ– ଜାତି କୁଳ ଦୁଇ ତୋହର ନାହିଁ, ଦ୍ୱିଜ
ଚଣ୍ଡାଳ ଏକ କରୁ ତୁହି ।

ନାଥ ତୁ ଶବର ଉଚ୍ଛିଷ୍ଟ ଖାଉ, ବ୍ରହ୍ମ ନିରିମାଲ୍ୟ
ତୋର ନ ଖାଉ ।' (ଭାବ ସମୁଦ୍ର)

ଶ୍ରୀଜଗନ୍ନାଥ ଯେ ସର୍ବ ଘଟରେ ପରିପୂର୍ଣ୍ଣ ଏବଂ ତାଙ୍କ ପାଖରେ ସମସ୍ତେ ସମାନ ଏହି ବାର୍ତ୍ତା ଜଗନ୍ନାଥଙ୍କର ପରମ ଭକ୍ତ ଶ୍ରୀମଦ୍ ଭାଗବତ ରଚୟିତା ଜଗନ୍ନାଥ ଦାସ ତାଙ୍କ ଦୀକ୍ଷା ସମ୍ବାଦରେ ବ୍ୟାଖ୍ୟା କରିଛନ୍ତି–

'କୀଟ ପତଙ୍ଗ ଚାରି ଖାନି । ଛପନ କୋଟି ଜୀବ ଘେନି ॥
ଯେତେକ କୀଟୁ ବ୍ରହ୍ମ ଯାଏ । ସକଳ ହୃଦେ ତୁ ବିଜୟେ ॥'

(ଦୀକ୍ଷା ସମ୍ବାଦ)

ଏହି ବାର୍ତ୍ତାକୁ ପୁଣି ଦୋହରାଇଛନ୍ତି ଅଚ୍ୟୁତାନନ୍ଦ ଦାସ ତାଙ୍କ ଚଉଷଠି ପଟଳ କାବ୍ୟରେ –

'ଶ୍ୱେତ, ପୀତ, ନୀଳ ଲୋହିତାଦି ବର୍ଣ୍ଣ ଜଗତ ମଧ୍ୟରେ ।
ସେହି ବ୍ରହ୍ମ ଜାଣ ବ୍ୟାପି ରହିଅଛି ସକଳ ସ୍ଥାନରେ ॥
ତାହାଙ୍କର କିଛି ଭେଦାଭେଦ ନାହିଁ କି ଜାତି ଅଜାତି
ସେହି ଅନାଦି ଧାରଣ କରିଅଛନ୍ତି ଅନନ୍ତ ରୂପ ॥'

(ଚଉଷଠି ପଟଳ)

ଶ୍ରୀଜଗନ୍ନାଥ ସମସ୍ତଙ୍କର ଆରାଧ୍ୟ ଦେବତା । ତାଙ୍କ ପାଖରେ କେହି ଶ୍ରେଷ୍ଠ କିମ୍ବା କେହି ନୀଚ ନୁହେଁ । ଏହି ତଥ୍ୟ

ଉପରୋକ୍ତ ପଦ୍ୟାଂଶ ଦୁଇଟିର ସାରାଂଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଗନ୍ନାଥ ଦର୍ଶନର ମୂଳତତ୍ତ୍ୱ ହେଉଛି, 'ମାନବ ସେବାହିଁ ମାଧବ ସେବା' ।

ଜଗନ୍ନାଥ ଦର୍ଶନ ବୁଦ୍ଧ ଦର୍ଶନରୁ ଭିନ୍ନ ନୁହେଁ, ଏହି ତଥ୍ୟଟିକୁ ମଧ୍ୟଯୁଗୀୟ ସାହିତ୍ୟିକଗଣ ପ୍ରତିପାଦିତ କରିଅଛନ୍ତି । ପ୍ରାକ୍ ଚୈତନ୍ୟ ଯୁଗରେ ଓଡିଶାରେ ଦୁଇଗୋଟି ଧର୍ମ ଧାରଣାର ପ୍ରମାଣ ମିଳେ। ଗୋଟିଏ ରାଧାକୃଷ୍ଣଙ୍କୁ କେନ୍ଦ୍ର କରି ବିଶୁଦ୍ଧ ଭକ୍ତି ଧର୍ମ, ଅନ୍ୟଟି ବୁଦ୍ଧରୂପୀ ଜଗନ୍ନାଥଙ୍କ ପ୍ରତି ଜ୍ଞାନ ମିଶ୍ରା ଭକ୍ତି । ସେମାନଙ୍କ ମତବାଦ ଅନୁସାରେ, ଦର୍ଶନ ନିମନ୍ତେ ଶ୍ରୀକୃଷ୍ଣ ବୁଦ୍ଧ ରୂପରେ ଜଗନ୍ନାଥ ନାମରେ ଅଧିଷ୍ଠିତ । ପନ୍ଥା ବିଭିନ୍ନ ହେଲେ ହେ ଜ୍ଞାନ, କର୍ମ ଭକ୍ତି ପ୍ରତ୍ୟେକଟିର ମୌଳିକ ଉଦ୍ଦେଶ୍ୟ ଓ ଲକ୍ଷ୍ୟ ପ୍ରାୟ ସମାନ । ଜ୍ଞାନ ମଣିଷକୁ ସତ୍‌ପଥ ପ୍ରଦର୍ଶନ କରିଥାଏ । ଶ୍ରୀମଦ୍ ଭଗବତ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି–

'ଯଧୋଧ୍ୱଂସି ସମଧୋଗ୍ନି, ଭସ୍ମସାଦ୍ କୁରୁତେର୍ଜ୍ଜୁନ ।
ଜ୍ଞାନଗ୍ନି ସର୍ବ କର୍ମାଣି, ଭସ୍ମସାଦ୍ କୁରୁଥେ ତଥା ।'

ଅର୍ଥାତ ପ୍ରଜ୍ଜ୍ୱଳିତ ଅଗ୍ନି ଯେପରି ଶୁଷ୍କକାଠକୁ ଭସ୍ମୀଭୂତ କରିଥାଏ ସେହିପରି ଜ୍ଞାନଗ୍ନି ସର୍ବ କର୍ମକୁ ଭସ୍ମୀଭୁତ କରିଦିଏ। ମଧ୍ୟଯୁଗୀୟ ସାହିତ୍ୟିକମାନେ ଥିଲେ ମହା ମୁନୀ, ମହା ସନ୍ଥ ସେମାନେ ଜଗନ୍ନାଥଙ୍କ ପାଖରେ ସର୍ବସ୍ୱ ଅର୍ପଣ କରି ତାଙ୍କର ଶରଣାପନ୍ନ ହୋଇଥିଲେ । ସେମାନଙ୍କ ଜ୍ଞାନ ମିଶ୍ରା ଭକ୍ତି ପ୍ରତି ବିଶେଷ ଆକୃଷ୍ଟ ହୋଇଥିବାର ଜଣାପଡେ । ଯୋଗୀ ଦ୍ୱାରକା ଦାସଙ୍କ 'ପରଚେ ଗୀତା' ଏହି ଜ୍ଞାନ ମିଶ୍ରା ଭକ୍ତିର ଜ୍ୱଳନ୍ତ ଉଦାହରଣ–

'ଜ୍ଞାନ ପରମ ଫଳ ସବୁ ସାର, କଷ୍ଟ ପ୍ରୀତି ଅର୍ଥେ କର୍ମ ସୁନ୍ଦର
ସବୁ ଯଜ୍ଞରୁ ଜ୍ଞାନ ଉତ୍ତମ, ସମାପତ ହୁଏ ସକଳ କର୍ମ ॥'
(ପରଚେ ଗୀତା)

ଜ୍ଞାନମିଶ୍ରା ଭକ୍ତିର ଅବତାରଣା କରିବାକୁ ଯାଇ ବଳରାମ ହାସ ତାଙ୍କ ଗୁପ୍ତଗୀତାରେ କହିଛନ୍ତି–

'ଜ୍ଞାନ ଯେ ପରମ ଅଟଇ, ପୂର୍ବେ ଯେ କେହି ନଜାଣଇ
ଯେ ଜ୍ଞାନ ହୋଇଛି ଗୁପତ, ଓଁକାର ଭିତରେ ଏ ତଥ୍ୟ ।।'

(ଗୁପ୍ତ ଗୀତା)

ଅତିବଡ଼ୀ 'ଭାଗବତ ସାର' କାବ୍ୟରେ ଶ୍ରୀ କୃଷ୍ଣଙ୍କ ମୁଖରେ ଜ୍ଞାନର ମହିମା ବର୍ଣ୍ଣନା ହୋଇଅଛି –

'ଜ୍ଞାନ ଅଭ୍ୟାସେ ଅବିରତ । ଚଞ୍ଚଳ ନକରିବ ଚିତ୍ତ ॥
ସମତା ସୃଷ୍ଟି ସତ୍ୟ ଭାଷା । ନିତ୍ୟେ କରିବ ଏଣେ ଆଶା ॥'

X X X

'ଜ୍ଞାନେ ସକଳ ପାପ ନାଶେ । ନିର୍ମଳ ମୁକତି ପ୍ରକାଶେ ॥
ସେ ଜ୍ଞାନ ଦେଇ ମୋ ଚରଣେ । ଭାବେ ଖଟିବ ଭୃତ୍ୟ ପଣେ
ମୋତେ ଭଜନ୍ତି ଜ୍ଞାନୀ ଜନ । ମୁଁ ତାଙ୍କ ଇଷ୍ଟ ପ୍ରିୟ ଧନ ॥
ତୀର୍ଥ ଗମନ, ଜପ, ଦାନ । ଅଶେଷ ଧର୍ମ ଆଚରଣ ॥
ଗୋଟିଏ କୋଟି ବ୍ରତ ଧର୍ମ । ଏ ଆଦି ଯେତେ ପୁଣ୍ୟ କର୍ମ ॥
ନାନା ପ୍ରକାରେ ତପ କରି । ଜ୍ଞାନ କଳାକୁ ନୁହେଁ ସରି ॥'
(ଭାଗବତ ସାର)

ମଧ୍ୟଯୁଗୀୟ କବିଗଣ ଶ୍ରୀଜଗନ୍ନାଥଙ୍କ ଭିତରେ ବୁଦ୍ଧଙ୍କ ଅସ୍ତିତ୍ୱ ସ୍ୱୀକାର କରି ଅଛନ୍ତି । ଏହି ବୌଦ୍ଧ ପରମ୍ପରାର ସଂକେତ ସାରଳା ଦାସଙ୍କର ଓଡିଆ ମହାଭାରତରେ ଉଲ୍ଲିଖିତ ।

କବି ଦୀନକୃଷ୍ଣ ଦାସ ମଧ୍ୟ ତାଙ୍କ ରଚିତ 'ଦେଉଳ ତୋଳା' ପୁସ୍ତକରେ ପ୍ରଭୁଙ୍କ ମାଧମରେ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଶୁଣାଇଛନ୍ତି–

'ଠାକୁର ବୋଇଲେ ରାଜା, ହୋଇଲୁକି ବାଇ
କଳିଯୁଗେ ବସିବୁ, ବଉଦ୍ଧ ରୂପ ହୋଇ ।'

(ଦେଉଳ ତୋଳା)

ଜଗନ୍ନାଥଙ୍କର ବୁଦ୍ଧ ଅସ୍ତିତ୍ୱ ମଧ୍ୟ ବଳରାମ ଦାସଙ୍କର ଭାବ ସମୁଦ୍ରରେ ସ୍ୱୀକୃତ–

'ହରି ହୋ– ମେଳିଖ୍ୟାନ୍ତେ ବୌଦ୍ଧ ରୂପେ ନିସ୍ତାରୁ ,
ବଳିଆ ଦାସର ମାନ ଉଦ୍ଧାରୁ ।' (ଭାବ ସମୁଦ୍ର)

ଶ୍ରୀଜଗନ୍ନାଥ ଯେ ବୁଦ୍ଧ ରୂପରେ ଶ୍ରୀକ୍ଷେତ୍ରରେ ରହି ସିଂହାସନରେ ବିରାଜମାନ ଏକଥା ଶ୍ରୀ ଅଚ୍ୟୁତାନନ୍ଦ ଦାସ ତାଙ୍କ ରଚିତ କବିତାମାନଙ୍କ ମଧ୍ୟରେ ବାରମ୍ବାର ପ୍ରକାଶ କରିଅଛନ୍ତି । ଶୂନ୍ୟସଂହିତାର ଦ୍ୱିତୀୟ ଭାଗର ତ୍ରିଂଶ ଅଧ୍ୟାୟରେ କବି ଶ୍ରୀ ଅଚ୍ୟୁତାନନ୍ଦ ଦାସ ଜଗନ୍ନାଥ ଯେ ବୁଦ୍ଧ ଅବତାର ଏହା ମୁକ୍ତ କଣ୍ଠରେ ଘୋଷଣା କରିଛନ୍ତି ।

ସେହିପରି କୈବର୍ତ୍ତ ଗୀତାରେ ଅଚ୍ୟୁତାନନ୍ଦ ଦାସ ଶ୍ରୀଜଗନ୍ନାଥ ଦାସଙ୍କୁ ବୌଦ୍ଧ ରୂପରେ ଅଶେଷ ପ୍ରାଣୀଙ୍କର ମଙ୍ଗଳକାରୀ ରୂପରେ ଉପସ୍ଥାପନା କରିଛନ୍ତି ।

'ନମଇଁ ଯେ ପ୍ରଭୁ ବୌଦ୍ଧ ଅବତାର ।
ଅଶେଷ ମଙ୍ଗଳ କଲ ପ୍ରାଣୀମାନଙ୍କର ॥'

(କୈବର୍ତ୍ତ ଗୀତା)

ପୁନର୍ବାର ଅଚ୍ୟୁତାନନ୍ଦ ଦାସ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ଶରୀରଧାରୀ ଦାରୁବ୍ରହ୍ମ ଓ କଳ୍କୀ ଅବତାରରେ ଅବତୀର୍ଣ୍ଣ ହେବା ଲାଗି ପ୍ରାର୍ଥନା କରିଅଛନ୍ତି ।

' ଜୟ ଜଗନ୍ନାଥ ଭକତଙ୍କ କାନ୍ତ ଭକତ ବତ୍ସଳ ହରି ।
ବୁଦ୍ଧ ଶରୀର କଳ୍କୀ ଅବତାର ଦାରୁବ୍ରହ୍ମ ରୂପ ଧରି ॥'

(ନୀଳ ଶଇଳ କବିତା)

ଏ କଳିଯୁଗ ପାପଭାରାଗ୍ରସ୍ତ ହୋଇଯିବାରୁ ଭକ୍ତ ଜନଙ୍କ ଉଦ୍ଧାରଣ ନିମନ୍ତେ ଶ୍ରୀଜଗନ୍ନାଥ ବ୍ରହ୍ମ ମଣ୍ଡଳରୁ ବୁଦ୍ଧ ରୂପରେ ବିକାଶଲାଭ କରି ଏ ପୃଥିବୀକୁ ତାରଣ କରିଛନ୍ତି । ଏହିକଥା ଅଚ୍ୟୁତାନନ୍ଦଙ୍କ ସ୍ୱ ରଚିତ ପୁସ୍ତକ 'ଚବିଶ ପଟଳ'ରେ ବର୍ଣ୍ଣିତ ହୋଇଅଛି ।

'ଭକ୍ତକୁ ପଡ଼ିଲା କଷଣ । ଜାଣିଲେ ପ୍ରଭୁ ନାରାୟଣ ॥
ବ୍ରହ୍ମମଣ୍ଡଳୁ ପରକାଶ । ବଉଦ୍ଧ ରୂପରେ ବିକାଶ ॥
କୋଟି ବ୍ରହ୍ମାଣ୍ଡ କଳା ହରି । ବିଜୟ କଲେ ବସୁନ୍ଧରୀ ॥'

(ଚବିଶ ପଟଳ)

ଜଗନ୍ନାଥ ଯେ ଅହିଂସା ଧର୍ମର ପ୍ରତୀକ ଏବଂ ଏହାର ପ୍ରସାର ପାଇଁ ସିଏ ବୁଦ୍ଧ ଅବତାର ଧାରଣ କରି ରହିଛନ୍ତି । ଏହି କଥା କୁହାଯାଇଛି ଅଚ୍ୟୁତାନନ୍ଦଙ୍କ ଚଉଷଠି ପଟଳରେ –

'ଶୁଦ୍ଧଭାବେ ପୁଣି ବୁଦ୍ଧ ଅବତାର ହୋଇ
ଅହିଂସା ଧର୍ମ ପ୍ରଚାର କରିଲ ଗୋସାଇଁ ।'

(ଚଉଷଠି ପଟଳ)

ମଧ୍ୟଯୁଗୀୟ ସାହିତ୍ୟ ସଂରଚନାରେ ପଞ୍ଚସଖାଙ୍କ ଅବଦାନ ଅତୁଳନୀୟ । ପଞ୍ଚସଖା ସାହିତ୍ୟରେ ଅକ୍ଷର ମଧ୍ୟରେ ଜଗନ୍ନାଥଙ୍କ ସତ୍ତା ଓ ଅକ୍ଷରମୟୀ ଆରାଧନା ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ଆରାଧନା କରିଛନ୍ତି । ଅଚ୍ୟୁତାନନ୍ଦ ତାଙ୍କ ରଚିତ ଛୟାଳିଶ ପଟଳରେ ନାମ ଓ ଅକ୍ଷର ଏକ ସଙ୍ଗରେ ଜପ କରିବା ଲାଗି ନିର୍ଦ୍ଦେଶ ଦେଇଛନ୍ତି–

'ଓଁ ହରେରାମ କୃଷ୍ଣ ଶ୍ୟାମ ହ୍ଳାଁ ଶ୍ଳାଁ କ୍ଳାଁ ଦାମ ।
ନନ୍ଦ କନ୍ଦ ଦୀନ ଧର୍ମ ସାଧୁ ମଧୁ କାମ ବ୍ରହ୍ମ ॥'

(ଛୟାଳିଶ ପଟଳ)

ପାଣିପାଦ ବିହୀନ ଜଗନ୍ନାଥଙ୍କୁ ପଞ୍ଚସଖାଗଣ ଶୂନ୍ୟ ରୂପରେ ପରିକଳ୍ପନା କରିଛନ୍ତି ।

ପଞ୍ଚସଖା ସାହିତ୍ୟରେ ଜଗନ୍ନାଥଙ୍କୁ ଶୂନ୍ୟ ପୁରୁଷ ଓ ଶୂନ୍ୟ ଦେହୀ ଭାବରେ ବର୍ଣ୍ଣନା କରାଯାଇଛି । ବଳରାମ ଦାସ କହିଛନ୍ତି ରୂପରେଖ ବିହୀନ ଶୂନ୍ୟ ପୁରୁଷ ଶୂନ୍ୟ ଦେହୀଙ୍କର କି ନାମ ଥାଇପାରେ । ଏଇ ଭକ୍ତମାନେ ତାଙ୍କୁ ନିଜର ଭାବର ନାମ ପ୍ରଦାନ କରିଛନ୍ତି, ଯେପରିକି ଜଗନ୍ନାଥ, ନାରାୟଣ, ନରହରି, ମାଧବ, ମୁରାରୀ, ଅଚ୍ୟୁତ, ରାମ, ଗୋବିନ୍ଦ, ଚକ୍ରଧର, ଦାରୁବ୍ରହ୍ମ ଇତ୍ୟାଦି । ବଳରାମ ଦାସଙ୍କ 'ବିରାଟ ଗୀତା'ର ପ୍ରଥମ ଅଧ୍ୟାୟରେ ଏହା ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରାଯାଇଅଛି ।

'ଯାହାର ରୂପରେଖ ନାହିଁ, ଶୂନ୍ୟ ପୁରୁଷ ଶୂନ୍ୟ ଦେହୀ ।।
ଯାହାର ଅଟେ ଶୂନ୍ୟ ଦେହୀ, ଆବର ନାମ ଥିବ କାହିଁ ।।'

(ବିରାଟ ଗୀତା)

ପଞ୍ଚସଖାଙ୍କର ଶୂନ୍ୟବାଦ ନାଗାର୍ଜୁନଙ୍କ ମୂଳ ଶୂନ୍ୟବାଦଠାରୁ ବହୁ ପରିମାଣରେ ପୃଥକ ଓ ସ୍ୱତନ୍ତ୍ର । ପଞ୍ଚସଖାଙ୍କ ଶୂନ୍ୟରେ ଅସ୍ତିତ୍ୱ ରହିଛି ଏବଂ ଏଥିରେ ରାଧାକୃଷ୍ଣଙ୍କର ନିତ୍ୟଲୀଳା ଆଚାରିତ ହୋଇଅଛି । ପଞ୍ଚସଖା ସାହିତ୍ୟରେ ବର୍ଣ୍ଣିତ ଶୂନ୍ୟ ପୁରୁଷ ବେଦାନ୍ତ ବର୍ଣ୍ଣିତ ବ୍ରହ୍ମ ଏକ ଓ ଅଭିନ୍ନ । ଏହି ଶୂନ୍ୟ ଯେ ସମସ୍ତ ସୃଷ୍ଟି,ସର୍ଜନା ଓ ବିନାଶର ମୂଳ କାରଣ, ବିରାଟ ଗୀତାରେ ବଳରାମ ଦାସ ବ୍ୟାଖ୍ୟା କରିଛନ୍ତି । ଯେ କିଭଳି ମହାଶୂନ୍ୟରୁ ଜଳ, ସ୍ଥଳ, ପାଷାଣ, ଦେବାଦେବୀ ଏବଂ ଛପନ କୋଟି ଜୀବ ଅଲଗା ଅଲଗା ନାମ ସହିତ ସୃଷ୍ଟି ହେଲେ । ଏହି ଅରୂପ ବ୍ରହ୍ମଙ୍କର ଆବାସ ସ୍ଥଳୀ ହେଉଛି ମହାଶୂନ୍ୟ, ଯେଉଁଠାରେ କି ସିଏ ବିରାଟ ରୂପ ଧାରଣ କରି ଏକା ବାସ କରୁଥିଲେ । ସୃଷ୍ଟି କରିବାର ଇଚ୍ଛାରୁ ନିଜ ଭିତରେ ଏକ ଧୂମ୍ର ବର୍ଣ୍ଣରୁ ବିନ୍ଦୁ ମହାଶୂନ୍ୟରୁ ଶୂନ୍ୟକୁ ନିକ୍ଷେପ କଲେ । ଏହି ଧୂମ୍ର ବର୍ଣ୍ଣରୁ ଶକ୍ତିଙ୍କର ଉତ୍ପତ୍ତି ଓ ତହିଁରୁ ଓଁକାରର ଉତ୍ପତ୍ତି । ଏହି ଓଁକାରରୁ ତିନି କୋଟି ଜୀବ ଜନ୍ମ ନେଲେ, ସେମାନେ ହେଲେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ତା'ପରେ ଆସିଲା ଏହି ଜଗତ, ଛପନ କୋଟି ଜୀବ । ସେହି ଶୂନ୍ୟ ସର୍ବଘଟରେ ପୂରିତ । ଶୂନ୍ୟର ଉପସ୍ଥିତି ଯୋଗୁଁ ଏ ଜୀବ ଜଗତ ଚଳ ଚଞ୍ଚଳ, ଏହି ଶୂନ୍ୟ ଶରୀର ମଧ୍ୟରୁ ଚାଲିଗଲେ ତାହା ଜଡ ।

ଜଗନ୍ନାଥ ହେଉଛନ୍ତି ଶୂନ୍ୟ । ସିଏ ହେଉଛନ୍ତି ଷୋଳକଳାରେ ପରିପୂର୍ଣ୍ଣ । ସେ ଅଂଶୀ ଓ ତାଙ୍କଠାରୁ ଉତ୍ପତ୍ତି ଅବତାର । ତାଙ୍କଠାରୁ ଅନେକ ଅବତାରର ଉତ୍ପତ୍ତି । ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତ ବର୍ଣ୍ଣନା କରିଛି–

'ଜଗନ୍ନାଥ ଯେ ଷୋଳକଳା, ତହୁଁ କଳାଏ ନନ୍ଦବଳା ।
କଳାକେ ଷୋଳକଳା କରି, ଗୋପେ ବିହରେ ନରହରି ।।'

(ଜଗନ୍ନାଥ ଚରିତାମୃତ)

ଜଗନ୍ନାଥଙ୍କର ଦାରୁବ୍ରହ୍ମ ହେଉଛି ଶୂନ୍ୟ । ସିଏ ହେଉଛନ୍ତି ପରଂବ୍ରହ୍ମ ଓ ପୂର୍ଣ୍ଣବ୍ରହ୍ମ । ସିଏ ସ୍ରଷ୍ଟା ଏବଂ ସୃଷ୍ଟି ଶକ୍ତି । ସୃଷ୍ଟିର ଉପାଦାନ ଓ ସୃଷ୍ଟିର ପ୍ରଥମ ସ୍ଫୁରଣ । ଅଚ୍ୟୁତାନନ୍ଦଙ୍କର ଶୂନ୍ୟ ସଂହିତା ଏହି ତଥ୍ୟ ବ୍ୟାଖ୍ୟା କରି ଅଛି–

'ଅବତାର ଦଶ ଏହି ଦାରୁ ରୂପ, ଏହି ଦାରୁରେ ସେ ଲୀନ ।
ଈଶ୍ୱର ସାକ୍ଷାତେ ଲୀଳାର ନିମନ୍ତେ, ବିଜେ ରତ୍ନ ସଂହାସନ ।।'

(ଶୂନ୍ୟ ସଂହିତା)

ପୁନଶ୍ଚ ଅଷ୍ଟାଦଶ ଶତାବ୍ଦୀର କବି ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ'ରେ ଜଗନ୍ନାଥଙ୍କୁ ଅବତରୀ ଭାବରେ ଉପସ୍ଥାପନା କରାଯାଇଅଛି–

'କଚ୍ଛପ ମତ୍ସ୍ୟାଦି ଅବତାର ଯେତେକ ।
କରିବାକୁ ଜାତ ଜଗନ୍ନାଥ ଜନକ ।।' (ରସ କଲ୍ଲୋଳ)

ପଞ୍ଚସଖା କବିମାନଙ୍କର କବିତାଗୁଡିକରେ ଶ୍ରୀଜଗନ୍ନାଥ ଶୂନ୍ୟ, ନିର୍ଗୁଣ ଓ ସାକାର ବୋଲି ବର୍ଣ୍ଣନା କରାଯାଇଅଛି । ଶ୍ରୀଜଗନ୍ନାଥଙ୍କୁ ଜଗନ୍ନାଥ ଦାସ ତୁଳାଭିଣା କାବ୍ୟରେ 'ବ୍ରହ୍ମ ଶୂନ୍ୟଜ୍ୟୋତି' ବୋଲି ଆଖ୍ୟାୟିତ କରାଯାଇଅଛି ।

'ଅବ୍ୟକ୍ତ ବ୍ରହ୍ମ ଶୂନ୍ୟଜ୍ୟୋତି, ତହୁଁ ବିନ୍ଦୁ ଉତପତି ।।'

(ତୁଳାଭିଣା)

ଯଶୋବନ୍ତ ଦାସଙ୍କ ପ୍ରେମ ଭକ୍ତି ଗୀତାରେ ଶୂନ୍ୟର ଅବତାରଣା ଭାବାର୍ଥ ଅର୍ଥରେ କରାଯାଇଅଛି ।

'ଦେଖ ଯେ ରତ୍ନ ସଂହାସନ, କୋଟିୟେ ବ୍ରହ୍ମା ବିଷ୍ଣୁମାନ
କୋଟିୟେ ଶାଳଗ୍ରାମ ରୂପେ, ଅଛନ୍ତି ସିଂହାସନେ ଗୋପ୍ୟେ
ଚାରି ପରୁଶେ ଦେବ ପୁଣ, ପାବଛେ ସ୍ୱରୂପରେ ଜାଣ
ଉପରେ ରତ୍ନମୟ ବେଦୀ, ଅଛି ବ୍ରହ୍ମାଣ୍ଡ ଭାଣ୍ଡ ଭେଦୀ ।।'

(ପ୍ରେମ ଭକ୍ତି ଗୀତା)

ଅଚ୍ୟୁତାନନ୍ଦ ଦାସ ତାଙ୍କରି ରଚିତ ପ୍ରାୟ ସମସ୍ତ କାବ୍ୟ ଗୁଡ଼ିକରେ ଶ୍ରୀଜଗନ୍ନାଥଙ୍କୁ 'ଶୂନ୍ୟ' ସମ୍ବୋଧନ କରିଛନ୍ତି –

'ନମସ୍ତେ ମହାଶୂନ୍ୟବାସୀ । ଅଭୟ ମଣ୍ଡଳୁ ପ୍ରକାଶି ।।
ନମସ୍ତେ ପରମବ୍ରହ୍ମ ସ୍ୱାମୀ । ଅଖିଳ ଗୁରୁ ଅନ୍ତର୍ଯ୍ୟାମୀ ।।'

(ଚବିଶ ପଟଳ)

'ଜୟ ମହିମା ଶୂନ୍ୟ ହରି । ଅନ୍ତର ଅରୂପ ବେହାରି ।।
ଜୟ ତୁ ପରମ ପୁରୁଷ । ପୂରି ରହିଛି ପୂର୍ଣ୍ଣ ଯଶ ।।'

(ଆଦି ସଂହିତା)

'ଶୂନ୍ୟ ଶୂନ୍ୟ ଶୂନ୍ୟ ମହାଶୂନ୍ୟ ପରେ ।
ବିରାଜିତ ଶତଦଳ ଦେଶର ମଧ୍ୟରେ ।।'

(ଚଉଷଠି ପଟଳ)

'ତତ୍ୱ ତାରକ ରାମନାମ ମଧୁର ଅନ୍ତରେ ରହିବ ମନ ।
ମନ ଅନନ୍ତ ଶୂନ୍ୟ ଅନନ୍ତ ଶୂନ୍ୟ ସେହି ଜ୍ଞାନୀଙ୍କର ସ୍ଥାନ ।।'

(ବ୍ରହ୍ମ କୁଣ୍ଡଳୀ)

'ଅରୂପ ଠୁଳ ଶୂନ୍ୟ ପରେ । ବିଶ୍ରାମି ସକଳ ଭୂତରେ ।।
ଅରୂପେ ସୃଷ୍ଟି ଥିଲେ ରହି । ଏଥି ଅକର୍ମ ବୋଲି କହିଁ ।।'

(ପରମ ସଂହିତା)

'ପରମ ଶୂନ୍ୟ ସେ ପୁରୁଷ । ଥିଲା ନଥିଲା ପ୍ରାୟ ଦୃଶ୍ୟ ।।
ଅରୂପ ରୂପ ତାର ନାହିଁ, ଏ ଘଟେ ବିହଙ୍ଗେ ଖେଳଇ ।।'

(ପରମ ସଂହିତା)

'ଅଶୂନ୍ୟ ହୋଇଣ ଯେ ଥିଲାକୁ ଏକ ସ୍ଥାନ ।
ଅଦଭୁତ ସ୍ୱରୂପ ହୋଇଲା ଏକ ଶୂନ୍ୟ ।।
ସେହି ଶୂନ୍ୟ ମଧ୍ୟରେ ଯେ ନିରାକାର ସ୍ଥିତି ।
ନିରାକାର ଅଂଗରୁ ପରମ ବ୍ରହ୍ମ ମୂର୍ତ୍ତି ।।'

(ଅଚ୍ୟୁତାନନ୍ଦ ଦାସଙ୍କ ଭଜନ)

'ଶୂନ୍ୟ ପୁରୁଷର ଏତେକ ତେଜ,
ଶୂନ୍ୟ ହୋଇ ଭୋଗ କରଇ ରାଜ୍ୟ ।

ଶୂନ୍ୟ ପୁରୁଷ ଅଲଗେ ରହି,
ଶୂନ୍ୟ ପରେ ଲୀଳା କରୁଛି ରହି ।।' (ଶୂନ୍ୟ ସଂହିତା)

ପୁନଶ୍ଚ, ଦିବାକର ଦାସ ଶ୍ରୀଜଗନ୍ନାଥଙ୍କୁ ଶୂନ୍ୟ ବୋଲି ନିଜସ୍ୱ ଶୈଳୀରେ ପ୍ରକାଶ କରିଅଛନ୍ତି–

'ଈଶ୍ୱର ଉପରେ ଈଶ୍ୱର, ପରମ ପରେ ପରାତ୍ପର
ବ୍ରହ୍ମ ଉପରେ ବ୍ରହ୍ମ ଏହି, କୃଷ୍ଣ ଉପରେ କୃଷ୍ଣ ସେହି
ଅନାଦି ଉପରେ ଅନାଦି, ସର୍ବ କାରଣ ପରସିଦ୍ଧି
ଶ୍ରୀଜଗନ୍ନାଥ ଶ୍ରୀ ମୁରତି, ଏଥୁଁଟି ସର୍ବ ଉତପତି ।।'

(ଜଗନ୍ନାଥ ଚରିତାମୃତ)

ମଧ୍ୟଯୁଗୀୟ ଓଡିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଦର୍ଶନକୁ 'ଭେଦଭାବ, ଛୁଁଆ, ଅଛୁଁଆ ଜାତି ପ୍ରଥାର ବିରୋଧି ଭାବେ' ଚିତ୍ରଣ

କରାଯାଇଅଛି । ଜଗନ୍ନାଥ ଦାସଙ୍କ ରଚିତ 'ବେଦାନ୍ତସାରରେ' ସ୍ୱୟଂ ଶ୍ରୀକୃଷ୍ଣଙ୍କ କଣ୍ଠରେ କୁହାଯାଇଅଛି–

'ମୁହିଁ ନିର୍ମଳ ନିରାଧାରେ । ବସଇ ସକଳ ଶରୀରେ ॥
ସ୍ୱଭାବେ ମୁହିଁ ବିଶ୍ୱରୂପୀ । ବେହୁ ଗଗନ ଯେହ୍ନେ ବ୍ୟାପି ॥
ତେଣୁ ମୁଁ ସର୍ବଭୂତେ ଥାଇ । ପର ଅପର ମୋର ନାହିଁ ॥
ଏ ଘେନି ସକଳ ସମାନେ । ଦେଖନ୍ତୁ ପ୍ରେମ ତତ୍ତ୍ୱ ଜ୍ଞାନେ ॥
ବ୍ରହ୍ମ କ୍ଷତ୍ରିୟ ବଶ୍ୟ ଶୂଦ୍ର । ଚଣ୍ଡାଳ ପତିତ ବା କ୍ଷୁଦ୍ର ।
ସର୍ବ ସମାନ ଦେଖେ ଚିତ୍ତେ । ଶୁଣ କହଇ କିଛି ତୋତେ ॥
ଅନଳ କଣା ବଡ଼ ସାନ । ଅନଳୁ ନୁହଁନ୍ତି ସେ ଭିନ୍ନ ॥'
(ଭାଗବତ ସାର)

ପୁନଶ୍ଚ ବଳରାମ ଦାସ 'ଉଦ୍ଧବ ଗୀତା'ରେ ପ୍ରକାଶ କରିଛନ୍ତି ଯେ ଭକ୍ତମାନଙ୍କର କିଛି ଜାତି ନାହିଁ –

'ଚଣ୍ଡାଳ ହୋଇଣ ଯେବେ ବିଷ୍ଣୁ ଭକ୍ତି କରି ।
କେହୁଣିହିଁ ଜାତି ତାକୁ ନୋହଇଁ ସରି ॥
ବିଷ୍ଣୁ ଭକ୍ତି ଲୋକର ଜାତିରେ କି କାର୍ଯ୍ୟ ।
ଜାତି ବୋଲିବାକୁ ତାହାକୁ ବଡ଼ ଲାଜ ॥' (ଉଦ୍ଧବ ଗୀତା)

ଅଚ୍ୟୁତାନନ୍ଦ ଦାସଙ୍କ ଚଉଷଠି ପଟଳରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି ପ୍ରକୃତ ଜ୍ଞାନ ଅର୍ଜନକାରୀ ନିର୍ଭୟରେ ଏବଂ ବିନା ଘୃଣାରେ ଚଣ୍ଡାଳ ଗୃହରେ ଅନ୍ନ ଭୋଜନ କରିବ । ପୁନଶ୍ଚ ତାଙ୍କ ରଚିତ ଚବିଶ ପଟଳରେ ଏହି ଜାତିପ୍ରଥା ବିରୋଧରେ ସ୍ୱୟଂ ଅନାଦି ବ୍ରହ୍ମଙ୍କ କଣ୍ଠରେ ଘୋଷଣା କରାଯାଇଅଛି ।

'ଯେଣୁ ସକଳ ଜନ ମୋର । ସକଳ ଘଟେ ମୋ ବିହାର ॥
ଯେଣୁ ମୁଁ ସୂକ୍ଷ୍ମ ରୂପ ହୋଇ । ମୋ ବିନୁ ଭିନ୍ନାଭିନ୍ନ ନାହିଁ ॥'

X X X

'ସକଳ ନିଧିରେ ମୁଁ ପୁରୀ । ମୁଁ ସର୍ବ ଭକତ ଅଧିକାରୀ ॥'
(ଚବିଶ ପଟଳ)

ଅଚ୍ୟୁତାନନ୍ଦ ଦାସ ତାଙ୍କ 'ବର୍ଣ୍ଣଟୀକା'ରେ ଉଲ୍ଲେଖ କରି ଅଛନ୍ତି 'କର୍ମରୁ ବର୍ଣ୍ଣର ହିଁ ସୃଷ୍ଟି' ଜାତିର ସୃଷ୍ଟି । 'କର୍ମରୁ ବର୍ଣ୍ଣ ଯେ ସୃଷ୍ଟି ହୋଇଛି କର୍ମ ଛଡ଼ା ଆଉ ନାହିଁ କିଛି ॥' (ବର୍ଣ୍ଣଟୀକା)

ପଞ୍ଚସଖାଗଣ ନିଜକୁ ଶୂଦ୍ର ଭାବରେ ପରିଚିତ କରାଇ ଅଛନ୍ତି । ଯଦିଓ ଅଚ୍ୟୁତାନନ୍ଦ ଦାସ କ୍ଷତ୍ରିୟ ବର୍ଣ୍ଣରେ ଉତ୍ପନ୍ନ ତଥାପି ସେ ନିଜକୁ ଶୂଦ୍ର ବୋଲି ବିବେଚିତ କରି ଗର୍ବ ଅନୁଭବ କରିଅଛନ୍ତି–

'ତିନି ବର୍ଣ୍ଣ ସେବା କରିବା ପାଇଁ ।
ଶୂଦ୍ର ଜାତିରେ ଉତ୍ପନ୍ନ ହୋଇ ॥'

X X X

'ଶୂଦ୍ର ଭାବ ଯେଣୁ ଆମର ମନ ।
ଶୂଦ୍ରବର୍ଣ୍ଣ ବିନୁ ନୋହୁଟି ଆନ ॥
ନାହିଁ ମୋର ବିପ୍ରବର୍ଣ୍ଣେ ଆଶା ।
କ୍ଷତ୍ରୀୟ ବଶ୍ୟରେ ନାହିଁ ଭରସା ॥
ସାନ ହେଲେ ମନ ସରୁଆ ହୋଇ ।
ତହୁଁ ଅଚ୍ୟୁତ ଯେ ଶୂଦ୍ରବର୍ଣ୍ଣ ହିଁ ॥
ଶୂଦ୍ରବର୍ଣ୍ଣରେ ସେବା ପ୍ରାପ୍ତ ହୁଏ ।
ଅହଂକାର ନାହିଁ ଶୂଦ୍ରର ଦେହେ ॥
ତିନି ବର୍ଣ୍ଣେ ମୁକ୍ତି ନାହିଁ ଯେ ଭକ୍ତି
ମୋକ୍ଷ ପଥ କହେ ଦୀନ ଅଚ୍ୟୁତ ॥'(ବର୍ଣ୍ଣଟୀକା)

ଶ୍ରୀଜଗନ୍ନାଥ ଦର୍ଶନରେ 'ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ' ଉପରେ ପର୍ଯ୍ୟାପ୍ତ ଆଲୋଚନା କରାଯାଇଅଛି । ପଞ୍ଚସଖା ସାହିତ୍ୟରେ ପିଣ୍ଡ ବ୍ରହ୍ମାଣ୍ଡକୁ ଏକ ରୂପରେ ଦେଖି ଏଇ ଶରୀରକୁ ଓଲଟ ଓସ୍ତ ବୃକ୍ଷ ରୂପେ କଳ୍ପନା କରାଯାଇଛି ଏବଂ ଏହି ଓଲଟ ବୃକ୍ଷରେ ଲୋଟଣି ପାରାରୂପୀ ଜୀବ ପରମ ମଧ୍ୟ ଖେଳା କରୁଛନ୍ତି । କବି ବଳରାମ ଦାସ ଏହି ପିଣ୍ଡ ମଧରେ ହିଁ ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ରର କଳ୍ପନା କରିଛନ୍ତି–

'ବଡ ଦେଉଳ ବୋଲି ଯାହା । ନିଶ୍ଚୟ ଏ ତୋହର କାୟା ।।
ନନ୍ଦିଘୋଷଟି ଯାହା କହି । ଅର୍ଜୁନ ଏ ତୋହର ଦେହୀ ।।
ନାଭି ହୃଦୟ କଣ୍ଠ ଘେନି । ଏ ତିନି ଅଟଇ ଯେ ପୁଣି ।।
ହସ୍ତ ଅଙ୍ଗୁଠି ଖୁଆ ଯାଏ । ସେ ପୁଣି ଅଷ୍ଟ ଚକ ହୁଏ ।।
ଆବର ଚକଟି କପାଳ । ଏମନ୍ତ ହୋଇଲା ଷୋହଳ ।।
ବଡ ଦାଣ୍ଡଟି ଯାହା କହି । ଅର୍ଜୁନ ତୋର ମୁଖ ସେହି ।
ବାଇଶି ପାହାଚ ଟି ପୁଣ । କଣ୍ଠ ତଳଟି ହେ ଅର୍ଜୁନ ।।'
(ବିରାଟ ଗୀତା)

X X X

'ପିଣ୍ଡ ବ୍ରହ୍ମାଣ୍ଡ ଏକ ମତ । ତୋ ଆଗେ କହି ଦେଲି ସତ୍ୟ ।।
ବ୍ରହ୍ମାଣ୍ଡେ ବୁଡିଣ ନ ମର । ଏ ପିଣ୍ଡ ସର୍ବ ହେତୁ କର ।।'
(ବିରାଟ ଗୀତା)

କବି ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କୁ ମଣିଷର ମୁହଁରେ ହିଁ ଦର୍ଶନ କରିଛନ୍ତି –

'ନାସିକା ସୁଦର୍ଶନ କହି, ଅର୍ଜୁନ ତୋର ମୁଖ ସେହି ।
ନୟନ ଜଗନ୍ନାଥ ଜାଣ, ବଳଭଦ୍ର ଯେ ଶ୍ରବଣ ।।'

(ଗୁପ୍ତ ଗୀତା)

'ପଞ୍ଚଶୂନ୍ୟ' ଯାହା ଏ ବ୍ରହ୍ମାଣ୍ଡ ପରିବ୍ୟାପ୍ତ ତାହାର ସତ୍ତା ବଳରାମ ଦାସ ମଣିଷର ମୁଖ ମସ୍ତକରେ ଅନୁଭୁତ କରିଛନ୍ତି।

'ତାଳୁକୁ କହି ମହାଶୂନ୍ୟ, ଚକ୍ଷୁଟି ଅଟେ ତତ୍ତ୍ୱ ଶୂନ୍ୟ
ନାସାଟି ପ୍ରେମଶୂନ୍ୟ କହି, ଧ୍ୟାନ ଶୂନ୍ୟ କର୍ଣ୍ଣ ଅଟଇ
ମୁଖକୁ କହି ଜ୍ଞାନ ଶୂନ୍ୟ, ଏମନ୍ତ ଜାଣ ପାଞ୍ଚ ଶୂନ୍ୟ ।।'

(ବିରାଟ ଗୀତା)

ଅଚ୍ୟୁତାନନ୍ଦ ଦାସଙ୍କ ରଚିତ 'ପରମ ସଂହିତା' (ଜୀବ ପରମ ଖେଳ)ରେ ଦର୍ଶାଇ ଅଛି ଯେ ପିଣ୍ଡ ବ୍ରହ୍ମାଣ୍ଡ ମଧ୍ୟରେ କିଛି ପ୍ରଭେଦ ନାହିଁ। ଦୁହେଁ ଏକ ଓ ଅଭିନ୍ନ। ଶ୍ରୀଜଗନ୍ନାଥଙ୍କ ସଗୁଣ ଓ ନିର୍ଗୁଣ ରୂପରେ ଅନ୍ତଃ ପ୍ରକାଶ ଓ ବହିଃ ପ୍ରକାଶ–

'ଗୋବିନ୍ଦ ବୁଝ ହେତୁ ଦ୍ୱାରେ । ଏକତ୍ୱ ଭିତର ବାହାରେ ।।
ମୁହିଁ ସକଳ ଦୀକ୍ଷା ଗୁରୁ । ବ୍ରହ୍ମାଣ୍ଡ ପିଣ୍ଡ ମଧ୍ୟେ ମେରୁ ।।'

(ପରମ ସଂହିତା)

ଅନ୍ୟ ଏକ ରଚନା ଛୟାଳିଶ ପଟଳର ଦ୍ୱିତୀୟ ଭାଗର ଅଷ୍ଟବିଂଶ ପଟଳଠାରୁ ଏକତ୍ରିଂଶ ପଟଳ ପର୍ଯ୍ୟନ୍ତ କବି ଅଚ୍ୟୁତାନନ୍ଦ ଦାସ ପିଣ୍ଡ ବ୍ରହ୍ମାଣ୍ଡ ନିର୍ଣ୍ଣୟ, ପିଣ୍ଡ ବ୍ରହ୍ମାଣ୍ଡର ପ୍ରକୃତ ତଥ୍ୟ ନିର୍ଣ୍ଣୟ, ପିଣ୍ଡ ବ୍ରହ୍ମାଣ୍ଡେ ତତ୍ତ୍ୱ ଇନ୍ଦ୍ରିୟ ଓ ମୂଳ ପିଣ୍ଡ ତତ୍ତ୍ୱ ଉପରେ ସବିଶେଷ ଆଲୋଚନା କରିଅଛନ୍ତି । ଅଚ୍ୟୁତାନନ୍ଦଙ୍କ ପ୍ରଶ୍ନର ଉତ୍ତରରେ ସ୍ୱୟଂ ନିରାକାର ଏହି ପିଣ୍ଡ ବ୍ରହ୍ମାଣ୍ଡର ତତ୍ତ୍ୱ ବଖାଣିଛନ୍ତି–

'ଏ ପିଣ୍ଡେ ସକଳ ବ୍ରହ୍ମାଣ୍ଡ । ପୂରି ରହିଛି ଆଦିଖଣ୍ଡ।।'

(ଛାୟାଳିଶ ପଟଳ)

X X X

'ଏ ଜୀବ ଅବିଦ୍ୟା ମୋହେ ବୁଲେ ଏଣେ ତେଣେ ।
କସ୍ତୁରୀ ଖୋଜଇ ମୃଗ ବୁଲି ଏଣେ ତେଣେ।।
ପିଣ୍ଡ ବ୍ରହ୍ମାଣ୍ଡେ ସକଳ ରହି ଅଛି ପୂରି।
ପଟଳ ଭେଦ ତୁ ଶୁଣ ହେତୁ କରି ।।'

(ଛୟାଳିଶ ପଟଳ)

ମୃଗ ଯେପରି ନିଜର ମୂର୍ଖତା ଯୋଗୁଁ ନିଜ ପାଖରେ କସ୍ତୁରୀ ଥାଇ ମଧ୍ୟ କସ୍ତୁରୀ ସନ୍ଧାନରେ ବନ ମଧ୍ୟରେ ଏଣେ ତେଣେ ବୁଲୁଥାଏ ସେହିପରି ଏ ଜୀବ ନିଜର ଅଜ୍ଞାନତା ଯୋଗୁଁ ଜ୍ଞାନ ପାଇବା ଲାଗି ଏଣେ ତେଣେ ହେଉଥାଏ । ତାରି ନିଜ ଭିତରେ ହିଁ ଜ୍ଞାନରୂପୀ ଆଲୋକ ବିଦ୍ୟମାନ ତାହା ସେ ନିଜର ଅଜ୍ଞତା ବଶତଃ ଅନୁଭବ କରିପାରେ ନାହିଁ।

'ଏ ଦେହ ମଧ୍ୟେ ଅଛି ସବୁ । ମିଛେ ତୁ ଏଣୁ ତେଣୁ ଭାବୁ ।।
ତୋ ପିଣ୍ଡ କର ତିନି ଭାଗ । ପାତାଳ ମର୍ତ୍ତ୍ୟ ପୁଣି ସ୍ୱର୍ଗ ।'
(ଛୟାଳିଶ ପଟଳ)

ଏ ଶରୀର ହେଉଛି ବ୍ରହ୍ମାଣ୍ଡର ଆବାସ ସ୍ଥଳୀ । ଏ ଶରୀର ଭିତରେ ରହିଛି ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ । ଏହି ପିଣ୍ଡ ବ୍ରହ୍ମାଣ୍ଡର ସ୍ୱାମୀ ହେଉଛନ୍ତି ଗୋସାଇଁ (ଜଗନ୍ନାଥ)। ଏହି ତତ୍ତ୍ୱ ଅନୁଭବ କରିବା ଲାଗି ସୂକ୍ଷ୍ମ ଜ୍ଞାନର ଆବଶ୍ୟକତା ରହିଛି –

'ବ୍ରହ୍ମାଣ୍ଡରେ ଥିବା କଥା ଆଖିକ ଦିଶୁଛି ।
ପିଣ୍ଡରେ ରହିବା କଥା ଯୋଗୀ ଜାଣୁଅଛି ।।'

X X X

'ପିଣ୍ଡରେ ନଥିବ ଯାହା ବ୍ରହ୍ମାଣ୍ଡରେ ନାହିଁ ।
ଏଣୁ ପିଣ୍ଡ ବ୍ରହ୍ମାଣ୍ଡକୁ ଏକ କରୁଥାଇ ।।'

X X X

'ପିଣ୍ଡ କ୍ଷୁଦ୍ର ବ୍ରହ୍ମାଣ୍ଡଟି ଅଟଇ ବୃହତ ।
ବୃହତ ବ୍ରହ୍ମାଣ୍ଡ ସତ୍ତା ପିଣ୍ଡେ ବିରାଜିତ ।।' (ଛୟାଳିଶ ପଟଳ)

ଖାଲି ଆଖିରେ ଓ ବ୍ରହ୍ମାଣ୍ଡରେ ରହିଥିବା ଆକାଶ, ବାୟୁ, ଅଗ୍ନି, ପର୍ବତ, ନଦୀ, ନାଳ, ଝଡ଼, ବତାସ, ଘୂର୍ଣ୍ଣି ବାତ୍ୟା, ସୁଖ ଦୁଃଖ ଇତ୍ୟାଦି ଦେଖା ଯାଉଅଛି । ଏହାର ସ୍ଥିତି ଯେ ଏଇ ପିଣ୍ଡ ଭିତରେ ରହିଛି ଏହାକୁ କେବଳ ଜ୍ଞାନୀ ବ୍ୟକ୍ତିମାନେ ଅନୁଭବ କରିପାରିବେ । ପୁନଶ୍ଚ ଏଇ ପିଣ୍ଡ ମଧ୍ୟରେ ଯାହା ନାହିଁ ତାହା ମଧ୍ୟ ଏହି ବ୍ରହ୍ମାଣ୍ଡ ମଧ୍ୟରେ ନାହିଁ । ଅଚ୍ୟୁତାନନ୍ଦ ଦାସ କହିଛନ୍ତି ଏ ପିଣ୍ଡକୁ ବ୍ରହ୍ମାଣ୍ଡଠାରୁ ଅଲଗା ଭାବିବା ଉଚିତ ନୁହେଁ । ଏ ପିଣ୍ଡରେ ବିଦ୍ୟମାନ ବ୍ରହ୍ମା, ବିଷ୍ଣୁ ଓ ଶିବ –

'ପିଣ୍ଡକୁ ବ୍ରହ୍ମାଣ୍ଡଠାରୁ ଅଲଗା ନକରି ।
ତତ୍ତ୍ୱ ଭେଦେ ମନମଧ୍ୟେ ଧର ଦୃଢ କରି ।।'

X X X

'ବ୍ରହ୍ମା, ବିଷ୍ଣୁ, ଶିବ ଏହି ତିନିଜଣ ମିଳି ।
ପିଣ୍ଡରେ ରହିଛନ୍ତି ତିନି ରୂପ ଧରି ।।

ବୀର୍ଯ୍ୟରୂପେ ବ୍ରହ୍ମାପୁଣି ବାୟୁରୂପେ ହରି ।
ମନ ରୂପେ ଶିବ ଏହି ହେଉଛନ୍ତି ପୁରି ॥
ପୁଣି ଦୟାଭାବେ ବ୍ରହ୍ମ ହରି ଶୁଦ୍ଧଭାବେ ।
ଅଗ୍ନିଭାବେ ଶିବ ରହିଛନ୍ତି ସର୍ବ ଜୀବେ ॥'
(ଛୟାଳିଶ ପଟଳ, ୨ୟ ଭାଗ)

ମଧ୍ୟଯୁଗୀୟ କବିମାନେ ଥିଲେ ନିର୍ଗୁଣବାଦୀ ଓ ସାକାରବାଦୀ । ଏହି ଅଦ୍ୱୟ ନିର୍ଗୁଣ ବ୍ରହ୍ମକୁ ପରିଚିତ କରାଇବା ଲାଗି ସେମାନେ ସାକାର ଉପାସନାକୁ ମଧ୍ୟ ସ୍ୱୀକାର କରିଛନ୍ତି । ଶ୍ରୀଜଗନ୍ନାଥ ଯଦିଓ ଶୂନ୍ୟ ନିର୍ଗୁଣ ତଥାପି ଭକ୍ତମାନଙ୍କ ପରିତ୍ରାଣ ନିମିତ୍ତ ସେ ସାକାର ରୂପ ଧାରଣ କରିଛନ୍ତି । ଏହି ତତ୍ତ୍ୱକୁ ବ୍ୟାଖ୍ୟା କରିଛନ୍ତି ଅର୍ଜୁନଙ୍କୁ ଶ୍ରୀକୃଷ୍ଣ । ବଳରାମ ଦାସଙ୍କ ରଚିତ ବିରାଟ ଗୀତାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ପଚାରିଛନ୍ତି 'ଯିଏ ଅରୂପ ଶୂନ୍ୟ ପୁରୁଷ, ଶୂନ୍ୟ ଦେହୀ, ଯାହାଙ୍କର ନାମ ନାହିଁ ତାଙ୍କର ଏତେ ନାମ କିପରି ହେଲା ? ଯଥା ଗୋବିନ୍ଦ, କୃଷ୍ଣ, ମାଧବ, ମୁରାରୀ, ଅଚ୍ୟୁତ, ରାମ, ହରି, କେଶବ, ଜନାର୍ଦ୍ଦନ, ଭଗବାନ, ନାରାୟଣ, ଜଗନ୍ନାଥ, ଚକ୍ରଧର, କରୁଣାସିନ୍ଧୁ, ପତିତପାବନ, ଦାରୁବ୍ରହ୍ମ ଇତ୍ୟାଦି' । ଏହି ପ୍ରଶ୍ନର ଉତ୍ତରରେ ଶ୍ରୀକୃଷ୍ଣ କହିଛନ୍ତି ଭକ୍ତମାନେ ମୋର ମାତାପିତା ହୋଇ ଏହି ନାମଗୁଡ଼ିକ ମୋତେ ପ୍ରଦାନ କରିଛନ୍ତି । ଏହାହିଁ ମୋର ସାକାର ରୂପର କାରଣ । ଏହି ନାମ ମାଧ୍ୟମରେ ନିର୍ଗୁଣର ଉପଲବ୍ଧି କରିଥାନ୍ତି । ପରମବ୍ରହ୍ମ ବା ଶୂନ୍ୟ ପୁରୁଷ ସର୍ବବ୍ୟାପି । ଏହି ତତ୍ତ୍ୱ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଉଲ୍ଲେଖିତ ହୋଇଅଛି । ଏହି ତତ୍ତ୍ୱ କଳ୍ପନାରେ ସେ ନିର୍ଗୁଣ ନିରାକାର । କିନ୍ତୁ ଏହି ନିରାକାର ବ୍ରହ୍ମ ସାକାର ରୂପଧରି ସାଧନାର ଦୃଷ୍ଟି ମଧ୍ୟରେ ରହିଛନ୍ତି । ଯେପରି କାଠରେ ଅଗ୍ନି ନିରାକାର ରୂପେ ରହିଅଛି, କାଠ ଘର୍ଷଣରେ ଅଗ୍ନିର ଉତ୍ପତ୍ତି ହୁଏ ଅଗ୍ନି କାଠ ମଧ୍ୟରେ ନିରାକାର ରୂପରେ ଥିଲେ ମଧ୍ୟ ଅଗ୍ନି ସାକାର ରୂପ ନ ଧରିଲେ ସେଥିରେ ରାନ୍ଧି ହେବନାହିଁ । ତେଣୁ ନିରାକାର ବ୍ରହ୍ମଙ୍କୁ ସାକାର ରୂପେ ଆରାଧନା କରିବାକୁ ପଡ଼େ । ଭକ୍ତର ସିଦ୍ଧିଲାଗି ଶୂନ୍ୟ ନିର୍ଗୁଣ ଅରୂପ ବ୍ରହ୍ମ ସାକାର ରୂପ ଧାରଣ କରିଅଛନ୍ତି । ଅଚ୍ୟୁତାନନ୍ଦଙ୍କ ଗୁରୁଭକ୍ତି ଗୀତାରେ ସଗୁଣ, ନିର୍ଗୁଣ ସାଧନାର ଏକ ସୁଖ ସମନ୍ୱୟ କରାଯାଇଅଛି –

'ଶୁଣ ଆହେ ଗୋପସୁତ ଭକତିର କଥା ।
ସଗୁଣ ନିର୍ଗୁଣ ଦୁଇ ଯେତେକ ବ୍ୟବସ୍ଥା ॥
ଦୁଇଯେ ଡେଣାରେ ପକ୍ଷୀ ଉଡ଼ିକରି ଯାଇ ।
ଦୁଇ ଚକ୍ଷୁରେ ସେହି ସଂସାରେ ଖେଳଇ ॥
ଏକ ଯେ ନଥିଲେ କଣା ଦୁଇ ଗଲେ ଅନ୍ଧ ।
ଏଣୁକରି କରି ନିର୍ଗୁଣ ସଗୁଣ ଭେଦ ॥
ଯନ୍ତ୍ର, ମନ୍ତ୍ର, ତନ୍ତ୍ର, ରାଗ ଏହି ଚାରି ଗୁଣ ।
ସଗୁଣ ଯାହାକୁ ବୋଲେ ଏହୁକଥା ଶୁଣ ॥
ଛାୟା ଅବାଡ଼ ଜ୍ୟୋତିଯେ ଏହୁଟି ସମାଧି ।
ଏ ଚାରି ନିର୍ଗୁଣ ବୋଲି ପାରିଲେଟି ସାଧି ॥
ନିର୍ଗୁଣ, ସଗୁଣ ଏ ରସ ଏଥିରେ ପୂରିଛି ପିୟୁଷ ।
ସଗୁଣ କରିବା ଦିଶିବ ନିର୍ଗୁଣ ମନେ ନିବେଶିବ ॥'
(ଗୁରୁଭକ୍ତି ଗୀତା ୨ୟ ଖଣ୍ଡ, ଏକାଦଶ ପଟଳ)

X X X

'ନିର୍ଗୁଣ ସଗୁଣାଦି ମତ, ଭକତ ମାନଙ୍କର ବିତ୍ତ ।
ମାଧୁର୍ଯ୍ୟେ ଐଶ୍ୱର୍ଯ୍ୟେ ଯେ ଅଛି, ଐଶ୍ୱର୍ଯ୍ୟେ ମାଧୁର୍ଯ୍ୟେ ମିଶିଛି ॥'
(ଗୁରୁଭକ୍ତି ଗୀତା ୨ୟ ଖଣ୍ଡ, ପଞ୍ଚଶତ ପଟଳ)

ଏହି ରୂପ ଅରୂପ (ନିର୍ଗୁଣ ଓ ସାକାର)ର ସମନ୍ୱୟତା ଓ ଏହାର ତାତ୍ପର୍ଯ୍ୟ ଅଚ୍ୟୁତାନନ୍ଦ ଦାସଙ୍କ ଅନେକ ଗ୍ରନ୍ଥାବଳୀରେ ମଧ୍ୟ ଉଲ୍ଲେଖ କରାଯାଇଅଛି । ଯଥା– କାଳ ପ୍ରଦୀପ, ଛୟାଳିଶ ପଟଳ, ଭାବନାବର, ତତ୍ତ୍ୱ ବୋଧିନୀ, ଶୂନ୍ୟ ସଂହିତା, ଆଗତ ଭବିଷ୍ୟତ ମାଳିକା ଓ ଅଣାକାର ସଂହିତା ଇତ୍ୟାଦି ।

ମଧ୍ୟଯୁଗୀୟ ସାହିତ୍ୟିକଗଣ ସତ୍ୟ, ଅହିଂସା, ନିଷ୍ଠା, ସାଧୁତା, ସଚ୍ଚୋଟତା, ସଂଯମତା ଓ ମାନବିକତା ଉପରେ ବିଶେଷ ପ୍ରାଧାନ୍ୟ ଦେଇଛନ୍ତି । ଶ୍ରୀଜଗନ୍ନାଥ ଦର୍ଶନ ମାଧ୍ୟମରେ ସେମାନେ ଉପଦେଶ ଦେଇଛନ୍ତି ଯେ ଏ ପ୍ରାଣୀ ଜଗତ ହୀନମନ୍ୟତା, ଈର୍ଷା, ଦ୍ୱେଷ, ପରଶ୍ରୀକାତରତା ଠାରୁ ଦୂରେଇ ରହିବାକୁ । ନିଜର ଆତ୍ମା ମଧ୍ୟରେ ଅନ୍ୟର ଆତ୍ମାକୁ ଉପଲବ୍ଧ କରିବାକୁ । ଏତଦ୍ ବ୍ୟତୀତ ମୂର୍ତ୍ତି ପୂଜା, ତୀର୍ଥାଟନ ଯାଗଯଜ୍ଞଠାରୁ ଦୂରେଇ ରହିବାକୁ ମଧ୍ୟ ପରାମର୍ଶ ଦେଇଛନ୍ତି । ଶ୍ରୀଜଗନ୍ନାଥ ଦାସଙ୍କ ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଦରେ କୁହାଯାଇଛି –

'ଆଶା ବନ୍ଧନେ ଧନ ସଞ୍ଚେ । ମାୟା ସଂକଳ୍ପେ ଦିନ ବଞ୍ଚେ ॥
ପିଣ୍ଡ ପରାଣ ତୃଷ୍ଣା ମାତ୍ରେ । ପଶୁ ହିଂସଇ ହିଂସା ଶାସ୍ତ୍ରେ ॥
ବେଦ ଉଦ୍ଦେଶ୍ୟେ ଜନ୍ତୁମାରି । ପୂଜଇ ନାନା ଯଜ୍ଞକରି ॥
ଦାନ ଦକ୍ଷିଣା ବିଧି ହୀନେ । କୁକର୍ମ କରଇ ଅଜ୍ଞାନେ ॥
ପଶୁମାରଣ ପାପ ଯେତେ । ଦେଖି ନଦେଖଇ ଅଗ୍ରତେ ॥'

X X X

'ନାରୀ ସେବନ ମାଂସ ମଦେ ।
ଲୋକ ବେଭାର ଅନୁବାଦେ ॥

ବେଦ ନ କହେ ଯାହା ମୁଖେ ।
ପ୍ରାଣୀ ତାକରେ ଆତ୍ମାସୁଖେ ।'
'ଯଦ୍ୟପି ଯଜ୍ଞର ବିଧାନ । ମାଂସ ଭକ୍ଷଣ ସୁରାପାନ ॥
ତଥାପି ସୁରା ବେଦ ମତେ । ଆଘ୍ରାଣ କରି ନାସାଗ୍ରତେ ॥
କେବେହେଁ ନ କରିବ ପାନ । ଏ ବିଧି ବେଦର ବିଧାନ ॥
କେବଳ ଯଜ୍ଞେ ପଶୁ ବଧ । ଅନ୍ୟତ୍ର ବଧଟି ପ୍ରମାଦ ॥
ସକଳ ଜୀବେ ନରହରି । ବସଇ ଆତ୍ମା ରୂପ ଧରି ॥
ସମେ ବସଇ ସର୍ବ ଦେହେ । ମୂଢ ନଜାଣେ ମାୟା ମୋହେ ॥
ସ୍ୱଭାବେ ମୃତ୍ୟୁ କଳେବର । ଦେହକୁ ବୋଲଇ ଈଶ୍ୱର ॥'
(ଶ୍ରୀମଦ୍ ଭାଗବତ, ଏକାଦଶ ସ୍କନ୍ଦ, ଷଷ୍ଠ ଅଧ୍ୟାୟ)

ପୁନଶ୍ଚ ଶ୍ରୀକୃଷ୍ଣ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଦରେ ଉଦ୍ଧବଙ୍କୁ ବୁଝାଇ କହିଛନ୍ତି ଯେ ଯେଉଁ ପ୍ରାଣୀ ସତ୍ ଓ ନିର୍ମଳ ହୃଦୟରେ ଏବଂ ସତ୍‌ଚିତ୍ତରେ ମାନ, ଅହଙ୍କାର, ମଦ, ମତ୍ସର, ମୋହ ଲୋଭକୁ ପରିତ୍ୟାଗ କରେ ଏବଂ ସର୍ବଦା ସତ୍ୟ କହୁଥାଏ ଓ ସମସ୍ତ ପ୍ରାଣୀଙ୍କୁ ସମାନ ଦୃଷ୍ଟିରେ ଦେଖୁଥାଏ ଏବଂ ସମସ୍ତ ଜାଳ ମଧ୍ୟରେ ଥାଇ ମଧ୍ୟ ନିରାସକ୍ତ ବା ଉଦାସୀନ ରୁହେ ସେହି ନିତ୍ୟ ଜଗନ୍ନାଥ ପ୍ରାପ୍ତ ହୁଏ ।

'ତେଜିବ ମାନ ଅହଙ୍କାର । ମଦ ମତ୍ସର ଯେ ବିକାର ॥
ସହୃଦ ଭାବେ ଶୁଦ୍ଧ ଚିତ୍ତେ । ନିର୍ମଳ ହୃଦୟ ବିରତେ ॥
ଜ୍ଞାନ ଅଭ୍ୟାସି ଅବିରତ । ଚଞ୍ଚଳେ ନକରିବ ଚିତ୍ତ ॥
ସମତା ଦୃଷ୍ଟି ସତ୍ୟଭାଷା । ନିତ୍ୟେ କରିବ ଏଣେ ଆଶା ॥
ଗଗନ ଯେହ୍ନେ ସର୍ବ ଶୂନ୍ୟ । ସେ ରୂପେ ହୋଇ ଉଦାସୀନ ॥'
(ଶ୍ରୀମଦ୍ ଭାଗବତ, ଏକାଦଶ ସ୍କନ୍ଦ, ଏକାଦଶ ଅଧ୍ୟାୟ)

ଯେଉଁ ବ୍ୟକ୍ତି ଈର୍ଷା ପରାୟଣ ଓ ପରଶ୍ରୀକାତରତା ଯୋଗୁଁ ଅନ୍ୟକୁ ଦୁଃଖ ଓ ନିର୍ଯ୍ୟାତନା ଦିଏ ଏବଂ ଯଜ୍ଞ କରିବା ଛଳରେ ପଶୁ ବଳି ଦିଏ, ଭୂତ ପ୍ରେତମାନଙ୍କୁ ପୂଜାକରେ, ବାସ୍ତବିକ ସିଏ ଜାଣିପାରେ ନାହିଁ ଯେ ନିଜେ ନିଜକୁ ହିଂସା କରୁଛି ଏବଂ ନିଜର ସ୍ୱାର୍ଥସିଦ୍ଧି ଲାଗି ଜୀବମାନଙ୍କୁ ହତ୍ୟା କରୁଥାଏ ତାହାର ଅନ୍ତକାଳରେ ନର୍କ ଗତି ହୁଏ ।

'ପର ପୀଡ଼ନେ ନିତ୍ୟେ ହିଂସା । ଦୁଃଖ ଗହନେ କରେ ଆଶା ॥
ଯଜ୍ଞ ଆରନ୍ତି ବିଧିହୀନେ । ପଶୁମାରଣ ଅବଧାନେ ॥
କଳ୍ପିତ ତୀର୍ଥ ଯଜ୍ଞଛଳେ । ପଶୁକୁ ବଧ କରେ ବଳେ ॥
ପୂଜଇ ଭୂତ ପ୍ରେତଗଣେ । ଆତ୍ମାର ହିଂସା ସେ ନ ମଣେ ॥
ଜୀବ ମାରିଣେ କର୍ମ କରେ । ନରକେ ପଡ଼େ ଅନ୍ତଃକାଳେ ॥'
(ଶ୍ରୀମଦ୍ ଭାଗବତ, ଏକାଦଶ ସ୍କନ୍ଦ, ଏକାଦଶ ଅଧ୍ୟାୟ)

ଶ୍ରୀ ଅଚ୍ୟୁତାନନ୍ଦଙ୍କ 'ଛୟାଳିଶ ପଟଳ'ରେ ସ୍ୱୟଂ ନିରାକାର ଅଚ୍ୟୁତଙ୍କୁ କହିଛନ୍ତି ଯେ ଯିଏ ବ୍ରହ୍ମସତ୍ତାଙ୍କୁ ଅନୁଭବ କରିବାକୁ ଚାହିଁବେ ତାଙ୍କୁ ପର ଆପଣା ଭିତରେ ଭେଦାଭେଦ, ରାଗ, ହିଂସା, ଭଲ ମନ୍ଦ, ଜାତି ଧର୍ମ, କର୍ମକର୍ମାଣି, କୂଟ କପଟ, ବାଦ ଛନ୍ଦରୁ ଊର୍ଦ୍ଧ୍ୱରେ ରହିବାକୁ ପଡ଼ିବ । ପୁନଶ୍ଚ ଶୁଦ୍ଧପୁତ ହୋଇ ପୂଜା, ଜପ, ତପ, ହୋମ ଇତ୍ୟାଦି କରିବା ଅଥବା ମିଛ, ମାୟା ମୋହଗ୍ରସ୍ତ ବ୍ୟକ୍ତି ମଧ୍ୟ ବ୍ରହ୍ମ ସତ୍ତାକୁ ଅନୁଭବ କରି ପାରିବେ ନାହିଁ ।

'ପର ଆପଣାର ରାଗ ହିଂସା ଭଲ ମନ୍ଦ ।
ଜାତି ଧର୍ମ କର୍ମା କର୍ମ କୁଟ ବାଦ ଛନ୍ଦ ॥
ପୂଜା ଜପତପ ହୋମ କିମ୍ବା ଶୁଦ୍ଧପୁତ ।
ସତ ମିଛ ମାୟା ମୋହ ନୁହେଁ ବ୍ରହ୍ମତତ୍ତ୍ୱ ॥'
(ଛୟାଳିଶ ପଟଳ, ପ୍ରଥମଭାଗ, ଦଶମ ପଟଳ)

ସତ୍ୟକୁ କାୟମନ ବାକ୍ୟରେ ବ୍ୟବହାର କରିବା ଲାଗି ନିରାକାର ଅଚ୍ୟୁତଙ୍କୁ ଛୟାଳିଶ ପଟଳର ପ୍ରଥମଭାଗର ଚତୁର୍ଦ୍ଦଶ ପଟଳରେ ନିର୍ଦ୍ଦେଶ ଦେଇଛନ୍ତି । ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିବ ଓ କାହା ସହିତ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବ ନାହିଁ । ନିଜ ପର ମଧ୍ୟରେ ମଧ୍ୟ କୌଣସି ପାର୍ଥକ୍ୟ ରଖିବ ନାହିଁ ।

ମାନସ ପୂଜା ଉପରେ ଗୁରୁତ୍ୱ ଆରୋପଣ କରି ଅଚ୍ୟୁତାନନ୍ଦ ମୂର୍ତ୍ତି ପୂଜାକୁ ବିରୋଧ କରିଛନ୍ତି । ମୂର୍ତ୍ତି ପୂଜା ଅପେକ୍ଷା ଭଗବାନଙ୍କୁ ମନ ମନ୍ଦିରରେ ବସାଇ ପୂଜାକଲେ ଇଷ୍ଟ ଦେବ ସନ୍ତୁଷ୍ଟ ହୋଇ ଥାଆନ୍ତି ।

'ମନ୍ଦିର ଦେବାଳୟ ଘାଟ । ମଣ୍ଡପ କିବା ଚଉବାଟ ॥
ଯତନେ ସଜାଡ଼ି ଦିହୁଡ଼ି । ନାନା ପଦାର୍ଥ ତହିଁ ଭରି ॥
କରନ୍ତି ଅର୍ଥ ବ୍ୟୟ କେତେ । ଭକ୍ତି ନ ଥାଇ ଅନ୍ତର୍ଗତେ ॥
କେବଳ ଆଡ଼ମ୍ବର ସାର । ମୂର୍ଖ ଲୋକଙ୍କର ଏ ବେଭାର ॥'
(ଛୟାଳିଶ ପଟଳ, ପ୍ରଥମ ଭାଗ, ସପ୍ତଦଶ ପଟଳ)

ଦୋଳମୁଣ୍ଡାଇ, କଟକ

❖ ❖ ❖

# ବନ୍ୟପ୍ରାଣୀଙ୍କ ସଂରକ୍ଷଣ ପାଇଁ ଫଳପ୍ରଦ ପଦକ୍ଷେପ

ମାନସ ରଞ୍ଜନ ଖୁଣ୍ଟିଆ

ପ୍ରାଗୈତିହାସିକ ଯୁଗରେ ମାନବର ଜୀବନ ଅରଣ୍ୟ ସମ୍ପଦ ଏବଂ ବନ୍ୟ ପଶୁମାନଙ୍କ ଗହଣରେ ଅତିବାହିତ ହେଉଥିଲା । କ୍ରମଶଃ ମନୁଷ୍ୟ ଘଞ୍ଚ ବନାନୀ ପରିତ୍ୟାଗ କରି ନଦୀକୂଳମାନଙ୍କରେ ବସତି ସ୍ଥାପନ କଲା । ସମୟକ୍ରମେ ସଭ୍ୟତାଲୋକରେ ଆଲୋକିତ ହୋଇ ସେ ଅରଣ୍ୟ ପରିତ୍ୟାଗ କଲା । କିନ୍ତୁ ପଶୁ ପ୍ରବୃତ୍ତିକୁ ପରିହାର କଲା ନାହିଁ । ସଭ୍ୟତାଲୋକରେ ଅନ୍ଧ ହୋଇ କିମ୍ବା ଶୀକାର ପ୍ରିୟତାରେ ପ୍ରଲୁବ୍ଧ ହୋଇ ସେ ବନ୍ୟଜନ୍ତୁଙ୍କୁ ନିଃଶେଷ କରିବାକୁ ବସିଲା । କିନ୍ତୁ ମାନବ ଜାତିର ଅର୍ଥନୀତିକ ପ୍ରଗତି ତଥା ବୈଜ୍ଞାନିକ ଗବେଷଣା ତଥା ପାରିବେଶିକ ସନ୍ତୁଳନ ନିମିତ୍ତ ବନ୍ୟଜନ୍ତୁମାନଙ୍କର ସଂରକ୍ଷଣ ଆଜି ଅତ୍ୟାବଶ୍ୟକ ହୋଇପଡ଼ିଛି ।



ବନ୍ୟଜନ୍ତୁ ସଂରକ୍ଷଣ ଏବଂ ଅରଣ୍ୟ ସମ୍ପଦର ଉପଯୁକ୍ତ ରକ୍ଷଣାବେକ୍ଷଣ ପାଇଁ ସମ୍ରାଟ ଅଶୋକ ପଦକ୍ଷେପ ଗ୍ରହଣ କରିଥିଲେ । ଜୀବହିଂସା ଯେ ମହାପାପ, ଏହା ସେ ବୌଦ୍ଧଧର୍ମ ଗ୍ରହଣ କରିବା ପରେ ମର୍ମେ ମର୍ମେ ଅନୁଭବ କରିଥିଲେ । ଏଥିପାଇଁ ପଶୁବଧକୁ ସେ ସମ୍ପୂର୍ଣ୍ଣ ନିଷେଧ କରିଥିଲେ ।

ଜାତିର ଜନକ ମହାତ୍ମା ଗାନ୍ଧୀ ଥିଲେ ଅହିଂସା ଓ ଜୀବେ ଦୟାର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କ ମତ ଥିଲା, 'A society can be judged by the way it treats its animals. ମଣିଷ ଇତର ପ୍ରାଣୀମାନଙ୍କ ପ୍ରଭୁ ରୂପେ ନିଜକୁ ଭାବିବା ଅନୁଚିତ୍ । ବରଂ ସେମାନଙ୍କ ତ୍ରଷ୍ଟି ରୂପେ ମଣିଷ ସେମାନଙ୍କ ସୁରକ୍ଷା ଓ ସଂରକ୍ଷଣର ଦାୟିତ୍ୱ ନେବା ଜରୁରୀ । ତାଙ୍କ ପୁଣ୍ୟ ଜନ୍ମତିଥି ଅକ୍ଟୋବର ୨ ତାରିଖଠାରୁ ୮ ତାରିଖ ପର୍ଯ୍ୟନ୍ତ ବନ୍ୟପ୍ରାଣୀ ସପ୍ତାହ ପାଳନ କରାଯାଇଥାଏ । ସାରା ଦେଶ ଓ ଆମ ରାଜ୍ୟରେ ଏବେ ୬୧ତମ ବନ୍ୟପ୍ରାଣୀ ସପ୍ତାହ ପାଳନ କରାଯାଉଛି ।

ନଦ, ନଦୀ, ଗିରି, ହ୍ରଦ, ବନ ତଥା ଉପବନ ଭଳି ବିବିଧ ପ୍ରାକୃତିକ ସମ୍ପଦରେ ଋଦ୍ଧିମନ୍ତ ଆମ ରାଜ୍ୟର ପରିବେଶ । ବିବିଧ ବନ୍ୟପ୍ରାଣୀ ଏବଂ ଜୈବବିବିଧତାରେ ପରିପୂର୍ଣ୍ଣ ଆମର ବନାନୀ ତଥା ବନ୍ୟଜୀବ ଆବାସସ୍ଥଳୀ । ପ୍ରାକୃତିକ ପରିବେଶରେ ପରିପୂର୍ଣ୍ଣ ବିସ୍ତୀର୍ଣ୍ଣ ହେନ୍ତାଳ ବନ, ଅଗଣିତ ବିଦେଶାଗତ ପକ୍ଷୀ ଏବଂ ଅଣ୍ଡା ଦେବା ପାଇଁ ସାମୁଦ୍ରିକ ବେଳାଭୂମିକୁ ସୁଦୂର ପ୍ରଶାନ୍ତ ମହାସାଗରରୁ ଆସୁଥିବା ଲକ୍ଷ ଲକ୍ଷ ଅଲିଭ୍ ରିଡ୍‌ଲେ କଇଁଛଙ୍କ ସମାଗମ କେବଳ ଆମ ରାଜ୍ୟରେ ହିଁ ଦେଖିବାକୁ ମିଳିଥାଏ । ଆମ ରାଜ୍ୟରେ

୫୮୧୪୭ ବର୍ଗ କି.ମି. ଜଙ୍ଗଲ ରହିଛି । ରାଜ୍ୟର ଭୌଗୋଳିକ ଆୟତନର ଏହା ୩୧.୪୧ ଶତାଂଶ । ବନ୍ୟଜୀବଙ୍କ ସୁରକ୍ଷା, ସଂରକ୍ଷଣ ତଥା ଅଭିବୃଦ୍ଧି ପାଇଁ ଆମ ରାଜ୍ୟ ସଦାସର୍ବଦା ପ୍ରତିଶ୍ରୁତିବଦ୍ଧ । ବନ୍ୟପ୍ରାଣୀ ତଥା ସେମାନଙ୍କ ଆବାସସ୍ଥଳୀର ସୁରକ୍ଷା, ସଂରକ୍ଷଣ ତଥା ସମୃଦ୍ଧି ପାଇଁ ରାଜ୍ୟରେ ଗୋଟିଏ ଜାତୀୟ ଉଦ୍ୟାନ, ୧୯ଟି ଅଭୟାରଣ୍ୟ, ଗୋଟିଏ ପ୍ରସ୍ତାବିତ ଜାତୀୟ ଉଦ୍ୟାନ, ୨ଟି ବ୍ୟାଘ୍ର ପ୍ରକଳ୍ପ, ଗୋଟିଏ ଜୈବମଣ୍ଡଳ ଓ ୩ଟି ହସ୍ତୀ ପ୍ରକଳ୍ପ ଗଠନ କରାଯାଇଛି । ରାଜ୍ୟର ବନ୍ୟପ୍ରାଣୀ ସୁରକ୍ଷିତ ଅଞ୍ଚଳ ଛଡ଼ା ସଂରକ୍ଷିତ ଜଙ୍ଗଲ, ଖେସରା ଜଙ୍ଗଲ, ଆର୍ଦ୍ରଭୂମି ଏବଂ ଅନ୍ୟାନ୍ୟ ଆବାସଯୋଗ୍ୟ ଅଞ୍ଚଳରେ ମଧ୍ୟ ବନ୍ୟଜୀବମାନେ ବସବାସ କରିଥାଆନ୍ତି ।

ରାଜ୍ୟରେ ବନ୍ୟଜୀବଙ୍କ ପ୍ରାକୃତିକ ଆବାସସ୍ଥଳୀ ବ୍ୟତୀତ ବନ୍ୟଜୀବଙ୍କ ସଂରକ୍ଷଣ ଏବଂ ଅଭିବୃଦ୍ଧି ପାଇଁ ନନ୍ଦନକାନନ ପ୍ରାଣୀ ଉଦ୍ୟାନ ସମେତ ରାଜ୍ୟରେ ୧୨ଟି କ୍ଷୁଦ୍ର, ବୃହତ୍ ପ୍ରାଣୀ ଉଦ୍ୟାନ ପ୍ରତିଷ୍ଠା କରାଯାଇ ବିପଦଗ୍ରସ୍ତ ପ୍ରଜାତି ତଥା ଅନ୍ୟାନ୍ୟ ପ୍ରଜାତିର ବନ୍ୟଜୀବଙ୍କ ସଂରକ୍ଷଣ କରାଯାଉଛି । ନନ୍ଦନକାନନ ପ୍ରାଣୀ ଉଦ୍ୟାନରେ ୪୬ ପ୍ରଜାତିର ବିପଦଗ୍ରସ୍ତ ବନ୍ୟଜୀବଙ୍କ ସମେତ ୧୪୭ ପ୍ରଜାତିର ବନ୍ୟଜୀବଙ୍କ ସଂରକ୍ଷଣ ଏବଂ ଅଭିବୃଦ୍ଧି ପାଇଁ ଫଳପ୍ରଦ ପଦକ୍ଷେପମାନ ନିଆଯାଇଛି । ଘଡ଼ିଆଳ, ମଗର ଓ ମଧୁର ପାଣି କଇଁଛଙ୍କ ସଂରକ୍ଷଣ ଓ ଅଭିବୃଦ୍ଧି ପାଇଁ ଟିକରପଡ଼ାରେ ଘଡ଼ିଆଳ ଗବେଷଣା ଓ ସଂରକ୍ଷଣ କେନ୍ଦ୍ର ସ୍ଥାପନ କରାଯାଇଛି । ସେହିଭଳି କଟକ, ସୁନାବେଡ଼ା, ପାପଡ଼ାହାଣ୍ଡି, ତପ୍ତପାଣି, ହରିଶଙ୍କର, ଗୋପାଳପୁର, କୁଆଁରିଆ ଏବଂ ରାଉରକେଲାରେ ସ୍ଥାପିତ ହରିଣ ପାର୍କ(ମୃଗବିହାର)ଗୁଡ଼ିକରେ ହରିଣ ଜାତୀୟ ବନ୍ୟଜୀବଙ୍କ ସଂରକ୍ଷଣ ଏବଂ ବଂଶବିସ୍ତାର ପାଇଁ ପଦକ୍ଷେପ ନିଆଯାଇଛି । ଢେଙ୍କାନାଳ ଜିଲ୍ଲାର କପିଳାସ ଏବଂ ସମ୍ବଲପୁର ଜିଲ୍ଲାର ମୋତିଝରଣ ବନ୍ୟଜୀବ ସଂରକ୍ଷଣ କେନ୍ଦ୍ରରେ ହାତୀ, ଚିତାବାଘ, ଭାଲୁ, ବାରହା, ହରିଣ ଇତ୍ୟାଦି ବନ୍ୟଜୀବଙ୍କ ସଂରକ୍ଷଣ ଓ ଅଭିବୃଦ୍ଧି ପାଇଁ ପଦକ୍ଷେପ ନିଆଯାଇଛି ।

ରାଜ୍ୟରେ ବନ୍ୟପ୍ରାଣୀଙ୍କ ସୁରକ୍ଷା, ସଂରକ୍ଷଣ ଏବଂ ଅଭିବୃଦ୍ଧି ପାଇଁ ରାଜ୍ୟ ସରକାର ବିବିଧ ପଦକ୍ଷେପ ଗ୍ରହଣ କରିଛନ୍ତି । ଅଣ-ଜଙ୍ଗଲ ଜମିରେ ବନ୍ୟଜୀବଙ୍କ ଆବାସକୁ ଦୃଷ୍ଟିରେ ରଖି ସେହି ଅଞ୍ଚଳଗୁଡ଼ିକୁ ବିକଶିତ କରାଯାଉଛି । ଏଥିପାଇଁ ସ୍ଥାନୀୟ ଜନସାଧାରଣଙ୍କ ଅକୁଣ୍ଠ ସହଯୋଗ ମିଳିଛି । ଜନବସତି ମଧ୍ୟକୁ ହାତୀମାନଙ୍କର ଅନୁପ୍ରବେଶ ରୋକିବା ପାଇଁ ୨୦୧୨-୧୩ ମସିହାରୁ ୧୪ଟି ପାରମ୍ପରିକ ହାତୀ ଚଳପ୍ରଚଳ ପଥ ଚିହ୍ନଟ କରାଯାଇ ବାର୍ଷିକ ୫ କୋଟି ଟଙ୍କା ବ୍ୟୟ ଅଟକଳରେ ଏହାର ସମୃଦ୍ଧି କରାଯାଉଛି । ବନ୍ୟପ୍ରାଣୀଙ୍କ ସୁରକ୍ଷା ଏବଂ ଅଭିବୃଦ୍ଧି ଭଳି ସମ୍ବେଦନଶୀଳ ପ୍ରସଙ୍ଗକୁ ଦୃଷ୍ଟିରେ ରଖି କପିଳାସ, ଭିତରକନିକା ଅଭୟାରଣ୍ୟ ଏବଂ ଗହିରମଥା ସାମୁଦ୍ରିକ ଅଭୟାରଣ୍ୟର ପରିପାର୍ଶ୍ୱରେ ପରିବେଶ ସମ୍ବେଦନଶୀଳ ଅଞ୍ଚଳ ଗଠନ କରାଯାଇଛି ଏବଂ ଅନ୍ୟ ୧୩ଟି କ୍ଷେତ୍ରରେ ପରିବେଶ ସମ୍ବେଦନଶୀଳ ଅଞ୍ଚଳ ଗଠନ ପାଇଁ ପଦକ୍ଷେପ ନିଆଯାଇଛି । ଜନସାଧାରଣଙ୍କର ବନ ଏବଂ ବନ୍ୟପ୍ରାଣୀଙ୍କ ପ୍ରତି ସଦିଚ୍ଛା ଜାଗ୍ରତ ପାଇଁ ତଥା ବନ୍ୟପ୍ରାଣୀ ଆବାସସ୍ଥଳ ସନ୍ନିକଟ ଗ୍ରାମବାସୀଙ୍କର ଜଙ୍ଗଲ ଉପରେ ନିର୍ଭରଶୀଳତାକୁ ହ୍ରାସ କରିବା ପାଇଁ ସାତକୋଶିଆ, ବାଲେଶ୍ୱର, ହୀରାକୁଦ, ରାଜନଗର, କେନ୍ଦୁଝର (ବନ୍ୟପ୍ରାଣୀ), ଚନ୍ଦକା, ନୂଆପଡ଼ା, ପୁରୀ, ଚିଲିକା ଏବଂ ବାମରା ବନଖଣ୍ଡରେ ୩୭ଟି ପରିବେଶ ପର୍ଯ୍ୟଟନ ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି ଏବଂ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ପରିବେଶ ପର୍ଯ୍ୟଟନ ସ୍ଥଳୀରେ ଏହି ପ୍ରକଳ୍ପ କାର୍ଯ୍ୟକାରୀ କରିବା ପାଇଁ ପଦକ୍ଷେପ ନିଆଯାଉଛି ।

ଶିମିଳିପାଳ ବ୍ୟାଘ୍ର ପ୍ରକଳ୍ପ ଅଞ୍ଚଳରେ ସୁରକ୍ଷା ପାଇଁ ସ୍ୱତନ୍ତ୍ର ବ୍ୟାଘ୍ର ସୁରକ୍ଷା ଦଳ ଗଠନ କରାଯାଇ ପ୍ରଥମ ପର୍ଯ୍ୟାୟରେ ୬୩ ଜଣ ବନରକ୍ଷୀ ନିଯୁକ୍ତି ପାଇଁ ପଦକ୍ଷେପ ନିଆଯାଇଛି । ଜଙ୍ଗଲ ସମ୍ପଦର ସୁରକ୍ଷା ତଥା ବନ୍ୟପ୍ରାଣୀ ଶିକାର ରୋକିବା ପାଇଁ ୫୯୯ଟି ସୁରକ୍ଷା ଦଳ ନିୟୋଜିତ ହୋଇଛନ୍ତି । ବିଦ୍ୟୁତ ଆଘାତଜନିତ ହାତୀମୃତ୍ୟୁ ରୋକିବା ପାଇଁ ବିଦ୍ୟୁତ୍ ବିଭାଗ ଓ ବିଦ୍ୟୁତ୍ ବିତରକ କମ୍ପାନୀମାନଙ୍କ ସହିତ ନିୟମିତ ଭାବେ ସମନ୍ୱୟ ବୈଠକମାନ ଅନୁଷ୍ଠିତ ହୋଇ ସମାଧାନର ପନ୍ଥା ନିର୍ଦ୍ଧାରଣ ହେବା ସହିତ ଆଶୁ ପ୍ରତିକାର ପାଇଁ ବିହିତ ପଦକ୍ଷେପମାନ ନିଆଯାଉଛି । ସମ୍ବେଦନଶୀଳ ଅଞ୍ଚଳଗୁଡ଼ିକରେ ବିଦ୍ୟୁତ୍ ସରବରାହ ଭିତ୍ତିଭୂମି ଦୃଢ଼ୀକରଣ କାର୍ଯ୍ୟକ୍ରମ ୨୦୧୩-୧୪ ମସିହାରୁ ଚାଲୁ ରହିଛି ଏବଂ ବିଦ୍ୟୁତ୍ ଆଘାତଜନିତ ହାତୀମୃତ୍ୟୁକୁ ହ୍ରାସ କରାଯାଇ ପାରିଛି । ଟ୍ରେନ୍ ଦୁର୍ଘଟଣାଜନିତ ହାତୀ ମୃତ୍ୟୁ ରୋକିବା ପାଇଁ ରେଳ ବିଭାଗ ସହିତ ନିୟମିତ ଭାବେ ସମନ୍ୱୟ ବୈଠକମାନ ଅନୁଷ୍ଠିତ ହୋଇ ସମସ୍ୟାର କାରଣ ଅନୁଧ୍ୟାନ କରାଯିବା ସହିତ ନିରାକରଣ ପାଇଁ ପଦକ୍ଷେପମାନ ନିଆଯାଇ ଏହାକୁ ଯଥାସମ୍ଭବ ପ୍ରତିହତ କରାଯାଇ ପାରିଛି ।

ବନ୍ୟପ୍ରାଣୀ ଉପଦ୍ରବ ଯୋଗୁଁ ଲୋକଙ୍କ ମୃତ୍ୟୁ କ୍ଷେତ୍ରରେ ଅନୁକମ୍ପା ରାଶିର ପରିମାଣ ୨ ଲକ୍ଷ ଟଙ୍କାରୁ ୩ ଲକ୍ଷ ଟଙ୍କାକୁ

ବୃଦ୍ଧି କରାଯାଇଛି ଏବଂ ଅକର୍ମଣ୍ୟ ବ୍ୟକ୍ତିଙ୍କ କ୍ଷେତ୍ରରେ ଅନୁକମ୍ପା ରାଶିର ପରିମାଣ ୭୫ ହଜାର ଟଙ୍କାରୁ ୧ ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଛି । ସେହିଭଳି ହାତୀ ଉପଦ୍ରବଜନିତ ଗୃହନଷ୍ଟ କ୍ଷେତ୍ରରେ କ୍ଷତିଗ୍ରସ୍ତଙ୍କୁ ବିଜୁ ପକ୍କାଘର ଯୋଜନାରେ ଗୃହ ଆବଣ୍ଟନ ପାଇଁ ପଦକ୍ଷେପ ନିଆଯାଇଛି ଏବଂ ବନ୍ୟପ୍ରାଣୀଙ୍କ ଦ୍ୱାରା କ୍ଷତିଗ୍ରସ୍ତ ଲୋକଙ୍କର ବନ୍ୟପ୍ରାଣୀଙ୍କ ପ୍ରତି ପ୍ରତିଶୋଧମୂଳକ ମନୋଭାବ ଉଦ୍ରେକ ନ ହେବା ପାଇଁ ତୁରନ୍ତ ଅନୁକମ୍ପା ରାଶି ପ୍ରଦାନର ବ୍ୟବସ୍ଥା କରାଯାଉଛି ।

ବନ୍ୟଜୀବ ଯଥା– କୁମ୍ଭୀର, ଅଲିଭ୍ ରିଡ୍‌ଲେ ସାମୁଦ୍ରିକ କଇଁଛ, ଡଲ୍‌ଫିନ୍, କୃଷ୍ଣସାର ମୃଗ, ହାତୀ ଏବଂ ବିଦେଶାଗତ ପକ୍ଷୀଙ୍କ ସଂଖ୍ୟା ବୃଦ୍ଧି ହୋଇଥିବାର ୨୦୧୪–୧୫ରେ ହୋଇଥିବା ଆକଳନରୁ ଜଣାପଡ଼ିଛି । ବନ୍ୟପ୍ରାଣୀ ସଂସ୍ଥାର ଆନ୍ତରିକ ଉଦ୍ୟମ, ଫଳପ୍ରଦ ପଦକ୍ଷେପ, ଜନସଚେତନତାର ଜାଗରଣ ଏବଂ ଜନ ସହଯୋଗ ଯୋଗୁଁ ଏହା ସମ୍ଭବ ହୋଇପାରିଛି । ବନ୍ୟଜୀବଙ୍କ ସୁରକ୍ଷା, ପରିଚାଳନା ଏବଂ ସଂରକ୍ଷଣ କ୍ଷେତ୍ରରେ ସକ୍ରିୟ ସହଯୋଗ କରିବା ପାଇଁ ଆମ ରାଜ୍ୟରେ ବନ୍ୟଜୀବ ଆବାସସ୍ଥଳୀ ସନ୍ନିକଟ ଗ୍ରାମଗୁଡ଼ିକରେ ବନ ସଂରକ୍ଷଣ ସମିତି ଏବଂ ପରିବେଶ ଉନ୍ନୟନ କମିଟିମାନ ଗଠନ କରାଯାଇଛି । ୧୨ ହଜାରରୁ ଊର୍ଦ୍ଧ୍ୱ ବନ ସଂରକ୍ଷଣ ସମିତି ଏବଂ ୫୧୨ଟି ପରିବେଶ ଉନ୍ନୟନ ସମିତି ବନ୍ୟଜୀବ ତଥା ସେମାନଙ୍କ ଆବାସସ୍ଥଳୀର ସୁରକ୍ଷା ଦିଗରେ ବନ ବିଭାଗକୁ ସକ୍ରିୟ ସହଯୋଗ ପ୍ରଦାନ କରୁଛନ୍ତି ।

ବନ୍ୟପ୍ରାଣୀ ଏବଂ ମନୁଷ୍ୟ ପରସ୍ପରର ପରିପୂରକ ଏବଂ ପ୍ରାଣୀଜଗତର ଶ୍ରେଷ୍ଠଜୀବ ମନୁଷ୍ୟ ହିଁ ପ୍ରାଣୀମାନଙ୍କ ସୁରକ୍ଷା କବଚ । ମନୁଷ୍ୟ ସମାଜର ସ୍ଥିତି ତଥା ବିକାଶ ପାଇଁ ବନ ତଥା ବନ୍ୟପ୍ରାଣୀମାନଙ୍କର ସ୍ଥିତି, ସୁରକ୍ଷା, ସଂରକ୍ଷଣ ଏବଂ ସମୃଦ୍ଧି ଏକାନ୍ତ ଭାବେ ଆବଶ୍ୟକ । ଏହାର ଗୁରୁତ୍ୱ ଉପଲବ୍ଧି କରି ଆମ ପୂର୍ବପୁରୁଷମାନେ ଜଙ୍ଗଲକୁ ଦେବଭୂମି ଏବଂ ବନ୍ୟପ୍ରାଣୀଙ୍କୁ ଦେବାଦେବୀଙ୍କ ବାହନ ହିସାବରେ ବିବେଚନା କରି ଏସବୁର ସୁରକ୍ଷା ପାଇଁ ଯତ୍ନଶୀଳ ଥିଲେ । ମାତ୍ର ପରିବର୍ତ୍ତିତ ପରିସ୍ଥିତିରେ ବହୁ ବନ୍ୟପ୍ରାଣୀ ଆଜି ନିଶ୍ଚିହ୍ନ ଓ ବିରଳ । ସୁତରାଂ ସେମାନଙ୍କ ସୁରକ୍ଷା ଓ ସଂରକ୍ଷଣ ନିମନ୍ତେ ଜନସଚେତନତା ତଥା ଜନସହଯୋଗ ଏକାନ୍ତ ଜରୁରୀ ।

ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ବନ୍ୟପ୍ରାଣୀ ସଂରକ୍ଷଣ ବିଶେଷ କରି ବନ୍ୟଜନ୍ତୁଙ୍କୁ ମରଣ ମୁଖରୁ ସୁରକ୍ଷା ଦେବା ଦିଗରେ ଉଲ୍ଲେଖନୀୟ ଭୂମିକା ନିର୍ବାହ କରିଥିବା ମୟୂରଭଂଜ ଜିଲ୍ଲାର ଶତ୍ରୁଘ୍ନ ରାଉତଙ୍କୁ ୨୦୧୪–୧୫ ବର୍ଷ ପାଇଁ ରାଜ୍ୟସ୍ତରୀୟ ବିଜୁ ପଟ୍ଟନାୟକ ବନ୍ୟପ୍ରାଣୀ ସଂରକ୍ଷଣ ପୁରସ୍କାରରେ ସମ୍ମାନିତ କରିଛନ୍ତି । ଶତ୍ରୁଘ୍ନ ରାଉତ ଆମ ସମସ୍ତଙ୍କ ପାଇଁ ଆଦର୍ଶ ।

ଆସନ୍ତୁ, ଆମେ ସମସ୍ତେ ବନ୍ୟପ୍ରାଣୀଙ୍କ ସୁରକ୍ଷା, ସଂରକ୍ଷଣ, ଅଭିବୃଦ୍ଧି ପାଇଁ ଆମର ପ୍ରତିଶ୍ରୁତିବଦ୍ଧତାକୁ ସହୃଦୟତାର ସହିତ ପାଳନ କରିବା ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ

❖ ❖ ❖

# ଗଞ୍ଜାମର ସାଂସ୍କୃତିକ ପରମ୍ପରାରେ ଦଣ୍ଡନାଟ

ସୁଧାଂଶୁ ଶେଖର କର

ସଂସ୍କୃତି ପ୍ରତ୍ୟେକ ଜାତିର ଜାତୀୟ ସ୍ୱାତନ୍ତ୍ର୍ୟର ସ୍ମାରକୀ ଅଟେ । ତେଣୁ ଭାରତର ସଂସ୍କୃତି, ଐତିହ୍ୟ ଓ ପରମ୍ପରାରେ ଅନ୍ୟ ଦେଶ ତୁଳନାରେ ଅନେକ ସ୍ୱତନ୍ତ୍ରତା ଓ ବିଶେଷତ୍ୱ ପରିଲକ୍ଷିତ ହୋଇଥାଏ । କେଉଁ ଆବହମାନ କାଳରୁ ସଂସ୍କୃତି ସହିତ ଧର୍ମର ନିବିଡ ସମ୍ପର୍କ ରହିଛି । ଭାରତୀୟମାନଙ୍କ ହୃଦୟରେ ଧାର୍ମିକ ଚିନ୍ତାଧାରାର ସ୍ରୋତଟି ଅବିରତ ଧାରାରେ ବୋହି ଚାଲିଥାଏ । ବିଭିନ୍ନତା ମଧ୍ୟରେ ଏକତା ଭାରତୀୟ ସଂସ୍କୃତିରୁ ନୀତିଶିକ୍ଷା ମିଳେ । ଭାରତୀୟ ସାଂସ୍କୃତିକ ପରମ୍ପରାରେ ଅତି ପ୍ରାଚୀନ କାଳରୁ ଧାର୍ମିକ ଚେତନା, ସଂସ୍କୃତି, ପରମ୍ପରା, ଐତିହ୍ୟରେ ଓଡ଼ିଶା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ଆସିଅଛି ।

ଓଡିଶା ଆମ ରାଜ୍ୟର ଅଧିକାଂଶ ଗ୍ରାମରେ ବିଭିନ୍ନ ଶୈଳୀରେ ଲୋକନୃତ୍ୟ ବିଦ୍ୟମାନ । ଏଥି ମଧ୍ୟରେ 'ଦଣ୍ଡନାଟ' ସବୁଠାରୁ ପ୍ରାଚୀନ ଏବଂ ଜନପ୍ରିୟ । ବିଶେଷତଃ 'ଦଣ୍ଡନାଟ' ଗଞ୍ଜାମ, ଗଜପତି, ପୁରୀ, ଢେଙ୍କାନାଳ, ସମ୍ବଲପୁର, ବଲାଙ୍ଗିର, ଫୁଲବାଣୀ ଓ କୋରାପୁଟରେ ଅଧିକ ପରିପୁଷ୍ଟ । ଦଣ୍ଡନାଟର ପରଂପରା ପ୍ରାଚୀନ କାଳରୁ ଅଦ୍ୟାବଧି ଲୋକ ସମାଜରେ ଏକ ଦୃଢ ଆସ୍ଥାନ ପ୍ରତିଷ୍ଠା କରିପାରିଛି । ଏହାପ୍ରତି ଜନତା ତଥା ଦର୍ଶକଙ୍କର ଭୟ, ଭକ୍ତି ଓ ଉତ୍କଣ୍ଠା ଏତେଦୂର ଜଡିତ ଯେ ଏହି ପରମ୍ପରାକୁ ସହଜରେ ପରିତ୍ୟାଗ କରିହୁଏ ନାହିଁ । ଏହା ବ୍ୟତୀତ ସମାଜର ଶିକ୍ଷିତ, ଅଶିକ୍ଷିତ ତଥା ବ୍ରାହ୍ମଣଠାରୁ ଶୂଦ୍ର ଯାଏଁ ପ୍ରତ୍ୟେକଙ୍କ ଏଥିପ୍ରତି ଶ୍ରଦ୍ଧା ଓ ସମ୍ମାନ ଅତୁଟ ରହିଅଛି । କିନ୍ତୁ ସମସ୍ତ ଜିଲ୍ଲାମାନଙ୍କ ମଧ୍ୟରୁ 'ଗଞ୍ଜାମ' ଜିଲ୍ଲାର ଦଣ୍ଡନାଟ ଅଧିକ ନିଘା ଓ ନିଷ୍ଠାରେ ଆବଦ୍ଧ । ସମ୍ପ୍ରତି ଗଞ୍ଜାମ ଜିଲ୍ଲାର ସାଂସ୍କୃତିକ ପରିଧିର କ୍ଷେତ୍ର ଆକଳନ ପ୍ରସଙ୍ଗଭିତ୍ତିକ । ପ୍ରାକୃତିକ ଶୋଭାରେ ବିମଣ୍ଡିତ ଗଞ୍ଜାମ, ଏହାର ଅନ୍ତଃ ସୌନ୍ଦର୍ଯ୍ୟ ପ୍ରତି ସ୍ରଷ୍ଟାମାନସ ସର୍ବଦା ପ୍ରଲୁବ୍ଧ । ପ୍ରକୃତିର ଏଇ ଅଫୁରନ୍ତ ରୂପରାଶିକୁ ଉଜ୍ଜୀବିତ କରିବା ପାଇଁ ସ୍ପନ୍ଦିତ ହୋଇଛି ଶିଳ୍ପୀର ନିହାଣ, କବିର ଲେଖନୀ ଓ କଳାକାରର ପ୍ରତିଭା । ଫଳତଃ ଗଢିଉଠିଛି ଶିଳ୍ପ ଓ ଭାସ୍କର୍ଯ୍ୟ, ସୃଷ୍ଟି ହୋଇଛି ଚିତ୍ର ସଂଭାର, ବିଭିନ୍ନ ଗ୍ରନ୍ଥ ଓ କଳା ପ୍ରତିଷ୍ଠାନ । ଏହି ଅଞ୍ଚଳର କଳା, ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଲୋକନାଟକ, କବିବର ଚିନ୍ତାମଣି ମହାନ୍ତିଙ୍କୁ ବିଶେଷଭାବେ ପ୍ରଭାବିତ କରିଅଛି, ଯାହା ଫଳରେ ଘୁମୁସର କାବ୍ୟରେ ଲେଖିଛନ୍ତି–

ସାହିତ୍ୟେ ଉତ୍କଳ ନନ୍ଦନ ପ୍ରତୁଲ ଗଞ୍ଜାମ ତହିଁରେ ପାରିଜାତ ଫୁଲ ।
ଶଶାଙ୍କ ମଣ୍ଡଳୀ ଉତ୍କଳ ଧରଣୀ ଗଞ୍ଜାମ ତା'ମଧ୍ୟେ ପୂର୍ଣ୍ଣ ନିଶାମଣି ।

ଲୋକସଂସ୍କୃତିର ଅସୀମ ବିସ୍ତୃତି ମଧ୍ୟରୁ ଲୋକନାଟକର ସାମାଜିକ ଆବେଦନ ଅବିସମ୍ବାଦିତ । ଲୋକକଳା, ଲୋକଗୀତ, ଲୋକଗାଥା, ଲୋକଜୀବନ, ଲୋକନୃତ୍ୟ ପ୍ରଭୃତିର ସମାବେଶରେ ଲୋକନାଟକ ଏକ ପ୍ରଭାବଶାଳୀ ଯୌଥକଳା । ଏହା ସୁସଂସ୍କୃତ ଅବା ଅଭିଜାତ ନାଟକ ନୁହେଁ । ବୌଦ୍ଧିକ ଚିନ୍ତାଧାରା କିମ୍ବା ସାମନ୍ତୀୟ ରୁଚିବୋଧର ପ୍ରତିବିମ୍ବ ଭାବେ ଲୋକନାଟକ ପରିଚୟ ପ୍ରକାଶ କରିନଥାଏ । ବରଂ ଧୂଳିମାଟିର ଲୋକସମାଜ ଓ ଲୋକଜୀବନର ସ୍ୱଚ୍ଛନ୍ଦ ସ୍ୱାଭାବିକ ଜୀବନଧାରାକୁ ଲୋକନାଟକ ରୂପାୟନ କରିଥାଏ । ଏଥିରେ ସାମୂହିକ ଜୀବନର ଦୁଃଖ ସୁଖ ଉଲ୍ଲାସ ଉଦ୍‌ବେଗ ସମସ୍ୟା ଓ ସମାଧାନ, ନୀତି ଓ ଅନୀତିର ଦ୍ୱନ୍ଦ୍ୱାତ୍ମକ ଚିତ୍ର ପ୍ରକଟିତ ହୋଇଥାଏ । ପୁନଶ୍ଚ ଜାଗ୍ରତ କରିଥାଏ ସାଂସ୍କୃତିକ ଚିତ୍ରପରଦାରେ ନାଟ୍ୟ ରୂପରେଖରେ ବାସ୍ତବିକ ଜୀବନର ସାମାଜିକ ଭିତ୍ତିଭୂମି । ବହୁ ସମାଲୋଚକ, ଆଲୋଚକ, ଗବେଷକ ଓ ତତ୍ତ୍ୱଦର୍ଶୀଙ୍କ ମତରେ ଲୋକନାଟକକୁ ଗାଥାଶ୍ରିତ ଲୋକନାଟକ, ମାହାତ୍ମ୍ୟ ଲୋକନାଟକ, ସଂସ୍କୃତିଭିତ୍ତିକ ପୌରାଣିକ ଲୋକନାଟକ ଏପରି ତିନୋଟି ଶ୍ରେଣୀରେ ବିଭକ୍ତ କରିଛନ୍ତି । ଅପର ପକ୍ଷରେ ଅନ୍ୟ କେତେକ ଆଲୋଚକ ଲୋକନାଟକକୁ ଲୀଳାନାଟ୍ୟ, ନାଟକ ଓ ନାଟ, ନାଚ ଓ ନୃତ୍ୟ ଭାବରେ ବିଭକ୍ତ କରିଥାନ୍ତି, କେବଳ ଗଞ୍ଜାମ ଜିଲ୍ଲା ଏହି ନାଟ୍ୟଶ୍ରେଣୀରେ ଅନ୍ତର୍ଭୁକ୍ତ । ଲୀଳାନାଟ୍ୟ ମଧ୍ୟରେ ରାମଲୀଳା,

କୃଷ୍ଣଲୀଳା, ରାସଲୀଳା, ଗୋପଲୀଳା, ରାଧାପ୍ରେମ ଲୀଳା ଓ ଭାରତ ଲୀଳା, ନାଟକ ଓ ନାଟ ମଧ୍ୟରେ ପ୍ରହ୍ଲାଦ ନାଟକ, ରାମନାଟକ, କୀଚକବଧ ନାଟକ, ମହୀରାବଣବଧ ନାଟକ, କଂଶବଧ ନାଟକ, ଜଳନ୍ଧରବଧ ନାଟକ। ଅନ୍ୟନାଟକ ହେଲା– ଦାସକାଠିଆ, ସଖୀନାଟ, କଣ୍ଢେଇନାଟ, ଓଷାକୋଠି, ଜାନୁଘଣ୍ଟ, ହରିକଥା, ଧୋବାନାଟ, ଭୂତକେଳି, ଘୁଡୁକିନାଟ ଇତ୍ୟାଦି। ନାଚ ଓ ନୃତ୍ୟ ମଧ୍ୟରେ ପାଇକ ନାଚ, ରଣପା ନାଚ, ଚଢେୟା ନାଚ, ବାଘ ନାଚ, କେଳା ନାଚ, କଳାଘୋଡ଼ା ନାଚ, କାଠି ନାଚ, ଯୋଡି ଶଙ୍ଖ, ଘଣ୍ଟନୃତ୍ୟ, ସମର ନୃତ୍ୟ ଇତ୍ୟାଦି ତେଣୁ କୁହାଯାଇପାରିବ ଓଡିଆ ଲୋକ ନାଟକର ଜନ୍ମସ୍ଥଳୀ 'ଗଞ୍ଜାମ'। ସମ୍ପ୍ରତି ପ୍ରାସଙ୍ଗିକ କ୍ଷେତ୍ରରେ 'ଗଞ୍ଜାମ' ଦଣ୍ଡନାଟର ତାତ୍ତ୍ୱିକ ବିଶ୍ଳେଷଣ ଆଲୋଚନାର ଗୁରୁତ୍ୱପୂର୍ଣ୍ଣ ଦିଗ ।

ଓଡିଆ ଆଧାତ୍ମିକ ପରମ୍ପରାରେ ଶିବ ଉପାସନା ଏକ ପ୍ରମୁଖ ସ୍ଥାନ ଅଧିକାର କରିଅଛି। ଭାରତୀୟ ଦର୍ଶନରେ ଶିବ ହେଉଛନ୍ତି ସଂହାରକର୍ତ୍ତା । ରୁଦ୍ର ଭାବରେ ପରିକଳ୍ପିତ ଶିବ ଅଖଣ୍ଡ ବରପ୍ରଦାନକାରୀ ଏକ ଦେବତା। ଶିବଙ୍କୁ ତୁଷ୍ଟକରି ଅସାଧ୍ୟ ସାଧନ କରାଯିବା ବିଶ୍ୱାସ ଲୋକଙ୍କ ଚିତ୍ତରେ ଚିର ଜୀବିତ। ଏପରି ଏକ ବିଶ୍ୱାସର ପରିଧିରେ ଶିବ ଉପାସନା ଦ୍ୱାରା ବରସିଦ୍ଧ କରିବାର ଆଶା ଦଣ୍ଡନାଟ ବିକାଶରେ ପ୍ରମୁଖ ସ୍ଥାନ ଗ୍ରହଣ କରିଥାଏ । 'ଦଣ୍ଡନାଟ'ର ବିଭିନ୍ନ ଅର୍ଥ ଥିଲେ ସୁଦ୍ଧା ଏହାର ମୁଖ୍ୟ ଅର୍ଥ ହେଉଛି 'ଶରୀର ସାଧନା' । ଯାହା– ଯମ, ନିୟମ, ବିଭିନ୍ନ ଆସନ, ବ୍ୟାୟାମ, କୁସ୍ତି ମାଧ୍ୟମରେ ଶରୀରକୁ ନିୟୋଜିତ କରିଥାନ୍ତି। କଠୋରରୁ କଠୋର ଦଣ୍ଡଦ୍ୱାରା ଶରୀରକୁ ଦଣ୍ଡିତକରି ଈଶ୍ୱରକୃପା ପ୍ରାପ୍ତିର ଦୃଢବିଶ୍ୱାସ ଦଣ୍ଡୁଆଙ୍କ ମନରେ ଦାନା ବାନ୍ଧିଥାଏ। ଏହାଙ୍କର ଉପାସ୍ୟ ଦେବାଦେବୀ ଶିବ ଓ କାଳୀ। ଶିବଙ୍କ ରୀତିନୀତିରେ ପୂଜା ଓ କାଳୀଙ୍କ ମହିମା ପ୍ରଚାର ଉପାସନାର ଆଭିମୁଖ୍ୟ। 'ଶିବ' ସାତ୍ତ୍ୱିକ ପୂଜାର ଅଧିକାରୀ ହୋଇଥିବାବେଳେ 'କାଳୀ' ତାମସିକ (ରକ୍ତ, ମାଂସ,ବଳୀ) ପୂଜା ର ଅଧିକାରିଣୀ। କିନ୍ତୁ ଏହି ଦଣ୍ଡଯାତ୍ରାରେ 'ଶିବ–ଶକ୍ତି' ଯୁଗଳ ସାତ୍ତ୍ୱିକ ପୂଜା ରୀତିନୀତିରେ ପୂଜିତ। ମହାବିଷୁବ ସଂକ୍ରାନ୍ତିର ଠିକ୍ ବାରଦିନ ପୂର୍ବରୁ ଦଣ୍ଡୁଆମାନଙ୍କର ପଦଯାତ୍ରାର ଶୁଭାରମ୍ଭ ଓ ପୁଣ୍ୟ ବିଷୁବ ସଂକ୍ରାନ୍ତି ଏହି ଦଣ୍ଡଯାତ୍ରାର ଅନ୍ତିମ ଦିବସ। ମାନସପଟରେ ଅସୀମଚିନ୍ତା ଚେତନାକୁ ଜାଗ୍ରତକରି ପୂର୍ବ ପ୍ରସ୍ତୁତି ସ୍ୱରୂପ ଭକ୍ତିପୂତ ଭାବରେ ଦଣ୍ଡ, ଛତ୍ର, ପ୍ରଭା, ଚାମର, ଧ୍ୱଜା, ପିଂଛମୁଠି, ତୂରୀ, ଗିନି, ଘଣ୍ଟ, ବୀଣା, କାହାଳୀ, ଚମ୍ପାବଢ଼, ପାଶ, ଝୁଣାଦାନୀ ଆଦି ଯାବତୀୟ ମାନସିକ ସରାମ ଧରି ଦଣ୍ଡ ସମ୍ମିଳନୀରେ ଯୋଗଦେଇଥାଏ ଭକ୍ତ ଦଣ୍ଡୁଆ। ଦଣ୍ଡୁଆ ଦଳର ଦଳପତି (ପାଟଭୋକ୍ତା) କାମନାଗୃହରେ କାମନାଘଟ ସ୍ଥାପନା କରି ମଣିମାଙ୍କ ପୂଜାର ବିଧିବିଧାନରେ ସମସ୍ତ ଭୋକ୍ତାଙ୍କୁ ଶୁଦ୍ଧିକରି ତିନିକ୍ଷୟ ଉପବୀତ ଦ୍ୱାରା ଦୀକ୍ଷିତ କରାଇଥାଏ। ଯାହା କୌଣସି ଶାସ୍ତ୍ରୀୟ ବିଧିବିଧାନର ଅନୁକ୍ରମିଣ ହୋଇନଥାଏ। ବାଛ–ବିଚାର, ଉଚ୍ଚ–ନୀଚ, ଭେଦ–ଭାବ, ବଡ–ସାନ, ଧନୀ–ଗରିବ ଆଦି ଭାବନାକୁ ତ୍ୟାଗ କରି ସମନ୍ୱୟ ଚିନ୍ତାଧାରାର ଐକିକତା ସଙ୍କଳ୍ପରେ ଆବଦ୍ଧ କରିଥାଏ। ପୁନଶ୍ଚ ସ୍ଥାନ ବିଶେଷ ଦେବୀଙ୍କ ଅପାର ମହିମା, ଗୁଣ, ଗାରିମା ଓ ଅସୀମ ଶକ୍ତିର ପ୍ରତିଭା ପାଟଭୋକ୍ତା, ଅଙ୍କ ଭୋକ୍ତାଙ୍କୁ ଅବଗତ କରାଇଥାଏ। ଏହାସତ୍ତ୍ୱେ ଭକ୍ତିର ଅବମାନନାରେ ଦେବୀଙ୍କ କ୍ରୋଧର ପ୍ରଚଣ୍ଡତାର ଫଳ ସମ୍ପର୍କରେ ସତର୍କତା ଅବଲମ୍ବନ କରାଇଥାଏ। ଯାହା ଆତ୍ମସଂଯମତା, ଅବଚେତନକୁ ଚେତନ ଓ ଶୃଙ୍ଖଳା ସୃଷ୍ଟି କରିବାର ଏକ ମାର୍ଗ ହୋଇଥାଏ। ପରିଶେଷରେ ମଣିମାଙ୍କ ଆଦେଶ କ୍ରମରେ ପାଟଭୋକ୍ତାଙ୍କ ଦିଗ୍‌ଦର୍ଶନରେ ପ୍ରଭାଧାରଣକାରୀଙ୍କ ସହିତ ଶିବ–ଶକ୍ତିଙ୍କ ଯୁଗଳମୂର୍ତ୍ତି ଧରି ପାଟଭୋକ୍ତା, ଢୋଲିଆ, ବୀଣାକାର, ଝୁଣାକ୍ଷେପଣକାରୀ, ଘଣ୍ଟ, ଗିନି, କାହାଳୀ, ତୂରୀ, ଝାଂଜ ବଜାଇ ସାଧାରଣଭୋକ୍ତାଙ୍କ ହରିବୋଲଧ୍ୱନି ସହ ମା' କାଳୀଙ୍କ ଜୟଧ୍ୱନି ମିଶ୍ରିତ ଶବ୍ଦରେ ଆଞ୍ଚଳିକ ପରିକ୍ରମାରେ ପଦଯାତ୍ରା ଆରମ୍ଭ କରନ୍ତି। ଚମ୍ପାବଢ଼ରେ ସଂଯୋଗ ଅଗ୍ନି, ଝୁଣାଦାନୀରୁ ଆକାଶ ମାର୍ଗକୁ କ୍ଷେପଣ ହେଉଥିବା ଅଗ୍ନି ହୋଳା, ଦଣ୍ଡୁଆଙ୍କ ହୁଳହୁଳି ଶବ୍ଦ , ରକ୍ତବର୍ଣ୍ଣ ତ୍ରିକୋଣ ଧ୍ୱଜାର ଫରଫର, କଷବସ୍ତ୍ରରେ ସୁସଜ୍ଜିତ ଭୋକ୍ତାସମୂହ ଓ ଢୋଲବାଦ୍ୟର ତାଳେ ତାଳେ ଦଣ୍ଡୁଆ ହସ୍ତରେ ହଲୁଥିବା ମୟୂରପୁଚ୍ଛର ରୂପ ବୈଭବ ସମଗ୍ର ଅଞ୍ଚଳରେ ଏକ ଧାର୍ମିକ ପରିବେଶ ସୃଷ୍ଟି କରିଥାଏ। ପୂର୍ବରୁ ଆମନ୍ତ୍ରଣ କରିଥିବା ଭକ୍ତର ଗୃହ ଅଭିମୁଖେ ଯାତ୍ରା ଆରମ୍ଭ କରିଥାନ୍ତି। ଦଣ୍ଡୁଆଗୋଷ୍ଠୀ ଆସିବାର ସମ୍ୟକ୍ ସୂଚନା ପାଇ ପୂର୍ବପ୍ରସ୍ତୁତି ଥିବା ଭକ୍ତ, ପୂର୍ଣ୍ଣକୁମ୍ଭ, ଫୁଲ, ଚନ୍ଦନ, ସିନ୍ଦୁର, ଧୂପ, ଦୀପ, ଝୁଣା, ଦୁବ, ବରକୋଳି ପତ୍ର, ନଡିଆ, କଦଳୀ ଆଦି ପୂଜା ସାମଗ୍ରୀ ସଜାଡି ରଖିଥାଏ। ପ୍ରଥମେ ପାଟଭୋକ୍ତା ସମେତ ତେର ଭୋକ୍ତାଙ୍କ ଶୁଦ୍ଧ ଜଳରେ ପାଦ ପ୍ରକ୍ଷାଳନ ପରେ ବନ୍ଦାପନା କରିଥାଏ। ପାଟଭୋକ୍ତା ଯଜମାନର ଗୃହ ସମ୍ମୁଖରେ ଧ୍ୱଜଦଣ୍ଡ, ମୟୂରଚନ୍ଦ୍ରିକା, ଦୀପ, ଧୂପ, ସ୍ଥାପନ କରି ପୁଷ୍ପଦେଇ ସାମାନ୍ୟ ପୂଜା କରି ପଦେ ଅଧେ ଶିବ ଓ କାଳୀଙ୍କର ମହିମା ପ୍ରଚାରର ଛାନ୍ଦ ବୋଲିଥାଏ। ପରିଶେଷରେ ଦଳବଳ ଘେନି ଚାଲିଯାଏ ଏକ ନିର୍ଜନ ସ୍ଥାନକୁ ବା ତୋଟଗଞ୍ଜାମାଳକୁ। 'ଶିବ–ଶକ୍ତି' ନିର୍ଜନ ସ୍ଥାନର ଅଧିବାସୀ, ସମସ୍ତ ଦଣ୍ଡୁଆଙ୍କ ଉପାସ୍ୟ ଦେବଦେବୀ 'ଶିବ–ଶକ୍ତି' ହୋଇଥିବା ହେତୁ ନିର୍ଜନ ସ୍ଥାନରେ ଆସ୍ଥାନ ଜମାଇ ସାଧନା କରିବା ଶ୍ରେୟ ମଣିଥାନ୍ତି ।

ସମୟସ୍ରୋତରେ ମଧ୍ୟାହ୍ନରେ ଭୋକ୍ତାମାନେ 'ଶିବ–ଶକ୍ତି(କାଳୀ)'ଧରି ତୂରୀ, ଗିନି, ଘଣ୍ଟ, ବୀଣା, କାହାଳୀ, ଢୋଲ

ବଜାଇ ଧୂଳିଦଣ୍ଡ ଉଦ୍ଦେଶ୍ୟରେ ଯଜମାନର ଗୃହ ସମ୍ମୁଖରେ ଉପସ୍ଥିତ ରହନ୍ତି । ସୂର୍ଯ୍ୟଙ୍କ ପ୍ରଚଣ୍ଡ ଉତ୍ତାପରେ ଦଣ୍ଡଭୋକ୍ତାମାନେ ନିର୍ବିକାର ଚିତ୍ତରେ ପର୍ଯ୍ୟାୟକ୍ରମେ ଧୂଳିଦଣ୍ଡର ଅଭିନୟ ପ୍ରଦର୍ଶନ କରିଥାନ୍ତି। ବିଶେଷତଃ ଧୂଳିଦଣ୍ଡ କୃଷିକର୍ମ ଭିତ୍ତିକ। ତଳେଗଡିବା, ଚନ୍ଦନଛେରା ଦେବା, ଭୂମିପୂଜା, ଭୂମି ସମତଳ କରିବା, ଚାଷ ଉପଯୋଗୀ ଜମି ପ୍ରସ୍ତୁତ, ଭୂମିଚାଷ କରିବା, ବୀଜବପନ କରିବା, କୂଅ ଖୋଳିବା, ଜଳ ମଡାଇବା, ଖତ ଓ ସାରଦେବା, ଘାସ ବାଛିବା, ଧାନ ଅମଳ କରିବା, ଘୁଟଣା ଧରିବା, ଧାନ କୁଟିବା, ଶିବଙ୍କ ପାଇଁ ମନ୍ଦିର ତୋଳିବା, ପ୍ରତିଷ୍ଠା ଆଦି କର୍ମ ଧୂଳିଦଣ୍ଡରେ ଅଭିନୀତ ହୁଏ। ଗୋଟିଏ ପର୍ଯ୍ୟାୟ କୃଷିକର୍ମ ସରିବା ପରେ ଦଣ୍ଡପରିଚାଳକ ମଝିରେ ମଝିରେ ଈଶ୍ୱରଙ୍କ ମହିମା ପଦ୍ୟ ଆକାରରେ ସୂଚାଉ ଥାଏ। ଯାହା–

ହେ ଋଷିପୁତ୍ରେ... 'ଅଇଲେ ଈଶ୍ୱର, ଦେଇଗଲେ ବର
ଆନସେବା ଛାଡି ଏହି ସେବା କର,

ଏ ସେବା କଲେ କି ଫଳ ହୁଏ ? ଉଷୁନା ଧାନ ଗଜାହୁଏ,
ଶୁଖିଲା କାଠ କଞ୍ଚାହୁଏ,

ଅନ୍ଧ ଚକ୍ଷୁଦାନ ପାଏ, ଅପୁତ୍ରିକ ପୁତ୍ରପାଏ,' ଇତ୍ୟାଦି......

ଜୟଜୟ ମା' କାଳୀରଦ୍ର ମଣିକି ଭଜ ହେ' ଏହା ପ୍ରତ୍ୟେକ ଅଭିନୟର ଶେଷରେ କହି ଗୋଟିଏ ପର୍ଯ୍ୟାୟ ଶେଷ କରନ୍ତି। ଏଥିରୁ ଅସମ୍ଭବକୁ ସମ୍ଭବ କରିବାର ଶକ୍ତି, ଅଦୃଶ୍ୟକୁ ଦୃଶ୍ୟ ହେବାର ଶକ୍ତି, ଅରୂପକୁ ରୂପଦେବାର ଶକ୍ତି ଏହି ଅଲୌକିକ ମହିମାର ଅଧିକାରୀ କେବଳ ଶିବ ଓ ଶକ୍ତି ଯାହା ପ୍ରତିପାଦିତ। ଧୂଳିଦଣ୍ଡ ସହିତ ପଲ୍ଲୀ ଜୀବନ ଓତଃପ୍ରୋତଭାବେ ଜଡିତ। ଅନେକ ହାସ୍ୟରସାତ୍ମକ ନିଖୁଣ ସାମାଜିକ ଚିତ୍ର ଏଥିରେ ଉପନୀତ ହୁଏ। ଯେପରିକି ସ୍ୱାମୀ ସ୍ତ୍ରୀର କଳହ, ନିମ୍ନ ଜାତିର ବିବାହ, ସନ୍ତାନ ଜନ୍ମଠାରୁ ନାମକରଣ ପର୍ଯ୍ୟନ୍ତ ବିଧିବିଧାନ ଏଥିରେ ବିଦିତ ହୋଇଥାଏ। ଏହାସତ୍ତ୍ୱେ ଧୂଳିଦଣ୍ଡ ବିଭବରେ ଅଗ୍ନି ଭକ୍ଷଣ, କଣ୍ଟାରେ ଶୟନର ଅଭିନୟ ଦେଖାଇଥାନ୍ତି। ସାଂପ୍ରତିକ ପରିସ୍ଥିତିରେ ଏହି ଦୃଶ୍ୟ ପ୍ରାୟତଃ ଦୁଷ୍ପ୍ରାପ୍ୟ। ଏହି ଅଧ୍ୟାୟର ପୂର୍ଣ୍ଣତା ପରେ ପାଣିଦଣ୍ଡର ଅଭିନୟ ପ୍ରଦର୍ଶନ କରିବା ନିମନ୍ତେ ପୋଖରୀ ବା ନଦୀ କୂଳକୁ ଯାତ୍ରା କରନ୍ତି। ସମ୍ପ୍ରତି ଏହାର ସମ୍ୟକ୍ ଆଲୋଚନା ପ୍ରସଙ୍ଗଭିତ୍ତିକ ।

ଏଠାରେ ଯାବତୀୟ ନିତ୍ୟକର୍ମ ଶେଷ ହୁଏ। ଛଅ ଅଙ୍ଗୁଳି ବିଶିଷ୍ଟ ଆମ୍ରପଲ୍ଲବ ଦ୍ୱାରା ଦନ୍ତଶୋଧନ କରିଥାନ୍ତି। ଆୟୁର୍ବେଦ ଶାସ୍ତ୍ର ଅନୁଯାୟୀ ଏହାଦ୍ୱାରା ମୁଖରୁ ଦୁର୍ଗନ୍ଧ ଦୂରହୁଏ ଏବଂ ମୁଖ ଗହ୍ୱରର ରୋଗ ଜୀବାଣୁ ବିନଷ୍ଟ ହୋଇଥାନ୍ତି। ଉତ୍ତପ୍ତ ଶରୀରକୁ ଶାନ୍ତ କରିବା ନିମନ୍ତେ ଜଳକ୍ରୀଡା କରିଥାନ୍ତି। ଏହି କାର୍ଯ୍ୟ ସମ୍ପାଦନ ହେଉଥିବାବେଳେ ଢୋଲ, ମହୁରୀ, ଝା, ବାଦ୍ୟର ତୀବ୍ର ଝଙ୍କାର ସହ 'ଜୟ ଜୟ ମା' କାଳୀ ରଦ୍ରମଣି' କି ଭଜ ହେ ଶବ୍ଦ, ଭାବ ଓ ଭକ୍ତିଭରା କଣ୍ଠରେ ଉଚ୍ଚାରଣ କରିଥାନ୍ତି। ସ୍ନାନପରେ କୂଳରେ ବାଲିନିର୍ମିତ ଶିବଲିଙ୍ଗରେ ହରଗୌରୀଙ୍କୁ ଆବାହନ କରି ସାମାନ୍ୟ ପୂଜାକର୍ମ କରାଯାଇଥାଏ। ଏଥିରେ ମଧ୍ୟ ଗ୍ରାମ୍ୟଜୀବନର ଚିତ୍ରଶୈଳୀ ପରିସ୍ଫୁଟ ହୁଏ । ଏହି ବିଧିର ପରିସମାପ୍ତି ପରେ ପୂର୍ବପରି ଢୋଲଆଦି ବାଦ୍ୟବାଜଣା ବଜାଇ ଆସ୍ଥାନ ନିକଟକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି। ଏଠାରେ ସେମାନେ ଲିଆ ଓ ଗୁଡ଼ ସହିତ ଆବଶ୍ୟକ ସ୍ଥଳେ ଜଳ ମିଶାଇ ହରଗୌରୀଙ୍କୁ ଅର୍ପଣ କରି ପ୍ରସାଦ ସେବନ କରିଥାନ୍ତି। କିନ୍ତୁ ସ୍ନାନପରେ ଲିଆଗୁଡ ଭକ୍ଷଣକରିବା, ତେଲ ନଲଗାଇବା, କେଶର ଯତ୍ନ ନନେବା, ଦେହ ସଫା ନକରିବା (ସାବୁନ ଦ୍ୱାରା), ଲୁଗା ସଫା ନକରିବା, ଅଫୁଟା ଅସିଝା ଖାଇବା, ଗୃହମଧ୍ୟକୁ ନଯିବା, ତେରଦିନ ନିଘାନିଷ୍ଠାରେ ରହିବା ଆଦି ଦଣ୍ଡୁଆସମୂହଙ୍କ ଯାବତୀୟ ଲକ୍ଷଣ ଅଶୁଭ କର୍ମ ବା ମୃତାଶୌଚ ବିଧିରେ ପ୍ରାୟ ଲକ୍ଷ୍ୟ କରାଯାଇଥାଏ। ଭଗବାନ ଶିବ ଓ କାଳୀ ଶ୍ମଶାନର ଦେବତା ସଂସାରର ଯାବତୀୟ ଅଶୁଭ ଲକ୍ଷଣ ଏହାଙ୍କଠାରେ ମଙ୍ଗଳଦାୟକ। ତେଣୁ ଦଣ୍ଡଭୋକ୍ତା ସମୂହଙ୍କ ଆରାଧ୍ୟ ଦେବାଦେବୀ ଶିବ ଓ କାଳୀ, ଫଳତଃ ଏହି ସମସ୍ତ ଲକ୍ଷଣ ଦଣ୍ଡୁଆ ନିକଟରେ ଅତ୍ୟନ୍ତ ଶୁଭପ୍ରଦ। ଅଧୁନା ଅରଣ୍ୟଦଣ୍ଡର ସମ୍ୟକ୍ ଆଲୋଚନା ବିଧିସଙ୍ଗତ।

ଭଗବାନ ଶିବ ନିକାଞ୍ଚନ ସ୍ଥାନର ଅଧିବାସୀ ହେତୁ ଦଣ୍ଡୁଆସମୂହ ଏଭଳି ନିର୍ଜନ ସ୍ଥାନରେ ରହିବାକୁ ଭଲ ପାଇଥାନ୍ତି। ଏଭଳି ଅବସ୍ଥାନ ତେରଦିନରେ ତେରଟି ସ୍ଥାନରେ ହୋଇଥାଏ। ସନ୍ଧ୍ୟା ଆଳତୀ ପରେ ଦଣ୍ଡୁଆଙ୍କ ଭୋଜନ ନିମିତ୍ତ ଅହ୍ୟାରେ ଚମ୍ପାବଢ଼ ଦ୍ୱାରା ଅଗ୍ନି ସଂଯୋଗ କରାଇ ପାକ ପସ୍ତୁତ କରାଯାଇଥାଏ। ଗୋଡ଼ି ବିହୀନ ଅରୁଆ ଚାଉଳ, କଞ୍ଚା କଦଳୀ, ଅକଟା ପରିବା, ଅବଟା ମସଲା, ଅଭଜା ଡାଲି ଆଦି ପଦାର୍ଥ ଦ୍ୱାରା ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ ହୋଇଥାଏ। ନିଶାର୍ଦ୍ଧରେ ଢୋଲ ବାଦ୍ୟ ବାଦନ ସମୟରେ 'ଜୟ ଜୟ ମା' କାଳୀ ରଦ୍ରମଣି' କି ଭଜ ହେ ଶବ୍ଦ, ଭାବ ଓ ଭକ୍ତିଭରା କଣ୍ଠରେ ଉଚ୍ଚାରଣ କରି ଭୋଜନ କରିଥାନ୍ତି। ଭୋଜନ ସମୟରେ କୌଣସି ଆପତ୍ତିଜନକ ପଦାର୍ଥ ବାହାରିଲେ, ତୁରନ୍ତ ପରିତ୍ୟକ୍ତ ହୁଏ । ଯଦି କୌଣସି ଦଣ୍ଡୁଆ ନିୟମ ବର୍ହିଭୂତ କିଛି କାର୍ଯ୍ୟ କରନ୍ତି ତେବେ ଦଣ୍ଡିତ ହେବାର ବିଶେଷ ଭୟ ଥାଏ। ପାଟଭୋକ୍ତା ଓ ଅଗ୍ନିଦଣ୍ଡଧାରୀ ଅନ୍ନଭୋଜନ କରନ୍ତି ନାହିଁ । କିନ୍ତୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଲୋକଆଳୟରୁ ଦୂରରେ ରହି କଷ୍ଟରେ ପୀଡ଼ିତ ଶରୀରକୁ ବିଶ୍ରାମ ଓ ମାନସିକ

ଶାନ୍ତି ପାଇବା ନିମନ୍ତେ ପ୍ରାକୃତିକ ପରିବେଶରେ ଆସ୍ଥାନ ଶରୀର ପକ୍ଷରେ ହିତକାରକ । ତେଣୁ ଦଣ୍ଡୁଆ ନିର୍ଜନ ସ୍ଥାନକୁ ଆପଣେଇ ଥିବା ବିଶ୍ୱାସଯୋଗ୍ୟ। ଏହା ସତ୍ତ୍ୱେ ଖାଦ୍ୟପେୟର ଅନିୟମିତତା ହେତୁ ଏଭଳି ଖାଦ୍ୟପଦାର୍ଥ ସ୍ୱାସ୍ଥ୍ୟପକ୍ଷେ ହିତକାରକ ହେବା ବିଶେଷ ସମ୍ଭାବନା ରହିଥାଏ। ସମ୍ପ୍ରତି ଦଣ୍ଡଭୋକ୍ତାଙ୍କ ଅଗ୍ନିକ୍ରୀଡ଼ା ବା ଅଗ୍ନିଦଣ୍ଡ ସମ୍ପର୍କରେ ଆଲୋଚନା ଗ୍ରହଣୀୟ। ବନଦଣ୍ଡର ପରବର୍ତ୍ତୀ ପର୍ଯ୍ୟାୟ ଅଗ୍ନିଦଣ୍ଡ।

ଦଣ୍ଡଭୋକ୍ତାମାନଙ୍କ ମହୁରୀ, ଘଣ୍ଟ, ତୂରୀ, କାହାଳୀ ଆଦି ବାଦନକୁ ତାଳଦେଇ, ଢୋଲିଆ କାଳୀପ୍ରଭା ଧାରଣ କାରି ଦଣ୍ଡୁଆକୁ ଢୋଲର ତାଳେତାଳେ ନଚାଇ ନଚାଇ ଆଣିଥାଏ। ଅନ୍ୟ କେତେକ ଦଣ୍ଡୁଆ ଦୁଇହାତରେ ଦୁଇଟି ହୁତାସନ ଅଗ୍ନିଦାନି ଧରି ଶରୀରର ଚତୁଃର୍ଦ୍ଦିଗ ଘର୍ଷଣ କରିବାର ଅଭିନୟ ପ୍ରଦର୍ଶନ କରିଥାନ୍ତି। ତା'ସାଙ୍ଗକୁ ପାଟଦଣ୍ଡୁଆ ସହ ଅନ୍ୟ କେତେ ଦଣ୍ଡୁଆ ଗୋଟିଏ ହାତରେ ଅଗ୍ନିଦାନି ଓ ଅନ୍ୟ ହସ୍ତରେ ଝୁଣାଧରି କୌଶଳ କ୍ରମେ ଆକାଶ ମାର୍ଗକୁ ଝୁଣାଅଗ୍ନି କ୍ଷେପଣ କରିଥାନ୍ତି। ଯାହା ଭୂଗର୍ଭଠାରୁ ଲମ୍ୱି ଶୂନ୍ୟ ମାର୍ଗରେ ଏକ ବିରାଟକାୟ ଭୟଙ୍କର ଅଗ୍ନିହୋଳା ସୃଷ୍ଟି ହୋଇଥାଏ। ଏହି ସମୟରେ ଭୋକ୍ତାଙ୍କ ଭକ୍ତି କଣ୍ଠରୁ ଜୟ ଜୟ ମା' କାଳୀ ରୁଦ୍ର ମଣିକି ଭଜ ହେ' ଧ୍ୱନି ବାରମ୍ବାର ନିନାଦିତ ହୁଏ । ଅଗ୍ନିର ପ୍ରଚଣ୍ଡତାରେ ଭୋକ୍ତାଙ୍କ ଜୀବନ ବିପଦପୂର୍ଣ୍ଣ ଥାଏ। ମନେହୁଏ, ମଣିମାଙ୍କ ଅପାର କରୁଣାରୁ ଭୋକ୍ତାଙ୍କ ନିଷ୍ଠା ଓ ଭକ୍ତିରେ ଅଗ୍ନି ପରାଜୟ ସ୍ୱୀକାର କରିବାର ଜଣା ପଡିଅଛି। ଏତତ୍ ପରେ ଚଢେୟା ପ୍ରସଙ୍ଗ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ ।

ଦଣ୍ଡନାଟର ଏକ ମୁଖ୍ୟ ଚରିତ୍ର ହେଲା ଚଢେୟା। ଗଞ୍ଜାମ ଅଞ୍ଚଳର ଦଣ୍ଡନାଟରେ କେବଳ ବୀଣାକାର, ଢୋଲିଆ, ଚଢେୟା ଏବଂ କେତେକ ପାଳିଆଧାରକ ଦଣ୍ଡୁଆ ରଙ୍ଗମଞ୍ଚରେ ପଦାର୍ପଣ କରିଥାନ୍ତି। ବୀଣାକାରର ଈଶ୍ୱରଙ୍କ ଗୁଣକୀର୍ତ୍ତନ ପରେ ଢୋଲିଆର ଢୋଲବାଦନ ତାଳେ ତାଳେ ଚଢେୟା ନୃତ୍ୟ କରେ। ଏହାର ନୃତ୍ୟ ଈଶ୍ୱରଙ୍କ ତାଣ୍ଡବ ନୃତ୍ୟର ଅନୁକୃତ ବୋଲି ମନେ କରାଯାଏ। ଚଢେୟା ଏକ ବଣର ଅଧିବାସୀ ହେତୁ ଆଦିବାସୀମାନଙ୍କ ଭଳି ଏହାର ବେଶଭୂଷଣ ସୁସଜ୍ଜିତ ଥାଏ । ପଦଯୁଗଳେ ଘାଗୁଡିମାଳ, କାଛା ସହିତ ଜଙ୍ଘିଆ, ପଗଡିରେ ବିଭିନ୍ନ ପକ୍ଷୀର ପର, କର୍ଣ୍ଣରେ କୁଣ୍ଡଳ ସହିତ ବେକରେ ପୋହଳା ମାଳିର ହାର, ହାତରେ ପାଶ ଆଦି ସୁଶୋଭିତ। ଈଶ୍ୱରଙ୍କ ଅଭିଶାପ ହେତୁ ଚଢେୟା ବଣରେ ପକ୍ଷୀବଧ ନିଷିଦ୍ଧ ଭାବିଥାଏ। ଦଣ୍ଡନାଟର ଏହି ଚରିତ୍ର ମାଧ୍ୟମରେ ଈଶ୍ୱରଙ୍କ ମହିମା ପ୍ରଚାର ଦେଖାଦେଇଥାଏ। ଚଢେୟାଣୀର ଅନୁରୋଧକୁ ରକ୍ଷାକରି ବଣରେ ମୟୂର, କୋଇଲି ଆଦି ପକ୍ଷୀକୁ ବଧକରି ମୃତ୍ୟୁମୁଖରେ ପଡିବା ଏବଂ ଶିବଙ୍କ ଆଶୀର୍ବାଦରୁ ପୂର୍ଣ୍ଣଜନ୍ମ ଲାଭକରିବା ନୃତ୍ୟମାଧ୍ୟମରେ ଚଢେୟା ପରିବେଷଣ କରେ। ଚଢେୟା ଚରିତ୍ର ପରି ବୀଣାକାର ଚରିତ୍ରଟି ମଧ୍ୟ ଏକ ପ୍ରମୁଖ ଚରିତ୍ର। ବାମହାତରେ କାମଦେବଙ୍କ ପୁଷ୍ପଧନୁ ଏବଂ ଡାହାଣ ହାତରେ ବେତ ବା ପୁଷ୍ପଶର ଧରିଥାଏ। ଦଣ୍ଡନାଟରେ ପାଟଭୋକ୍ତା, ଦଣ୍ଡୁଆ ତଥା ସର୍ବସାଧାରଣଙ୍କ ମଧ୍ୟରେ ଏକ ସମନ୍ୱୟ ସେତୁର ଭୂମିକା ନିର୍ବାହ କରେ ବୀଣାକାର।

ଉପରୋକ୍ତ ସମସ୍ତ ଆଲୋଚନାରୁ ଜଣାଯାଏ, ଭାରତରେ ପ୍ରତ୍ୟେକ ଯାତ୍ରା ଓ ନୃତ୍ୟ ଗୋଷ୍ଠୀ କୌଣସି ଏକ ଧର୍ମ–ଧାରଣାକୁ ଭିତ୍ତିକରି ଗଢି ଉଠିଥାଏ। ସମାଜସ୍ଥିତ ନରନାରୀଙ୍କୁ ଆରାଧ୍ୟ ଦେବାଦେବୀଙ୍କ ପ୍ରତି ଆକୃଷ୍ଟ କରିବା ଏସବୁର ଲକ୍ଷ୍ୟ। ତେଣୁ ଶିବ–ଶକ୍ତି(କାଳୀ)ଙ୍କ ପ୍ରତି ଲୋକଙ୍କ ବିଶ୍ୱାସକୁ ଦୃଢୀଭୂତ କରିବା ଦଣ୍ଡନାଟର ପ୍ରାଥମିକ ଲକ୍ଷ୍ୟ। ଦଣ୍ଡନାଟରେ ଜାତିବର୍ଣ୍ଣ ନିର୍ବିଶେଷରେ ଲୋକ ଅଂଶଗ୍ରହଣ କରିଥିବା ସ୍ପଷ୍ଟ ପରିଦୃଷ୍ଟ। ସମସ୍ତ ପ୍ରକାର କୁପ୍ରବୃତ୍ତି ପରିତ୍ୟାଗ କରି ନିବିଷ୍ଟ ଚିତ୍ତରେ ଈଶ୍ୱରଙ୍କଠାରେ ଶରଣାପନ୍ନ ହୋଇ ଏକାର୍ଣ୍ଣବର୍ତ୍ତୀ ପରିବାର ସହିତ ଜୀବନଯାପନ କରିବା ସମାଜକୁ ନୀତିଶିକ୍ଷା ଦେଇଥାଏ। ଖାଦ୍ୟପେୟ ଦୃଷ୍ଟିରୁ ବିଚାର କଲେ ଦଣ୍ଡନାଟରୁ ଅନେକ କିଛି ଶିକ୍ଷା ମିଳିଥାଏ। ସାତ୍ତ୍ୱିକ ଆହାର ଶରୀରକୁ ସୁରକ୍ଷା ଦିଏ। ସୂର୍ଯ୍ୟଙ୍କ ପ୍ରଚଣ୍ଡ ତାପରେ ଭୂମିରେ ଶୟନ ବିଭିନ୍ନ ପ୍ରକାର ଚର୍ମରୋଗ ଦୂର ହେବାର ସମ୍ଭାବନା ଥାଏ। କାଳୀଙ୍କ ଠାରେ ପଶୁବଳି ପ୍ରୟୋଗର ଉଚ୍ଛେଦ 'ଦଣ୍ଡନାଟ' ପ୍ରୟାସ ଜାରି ରଖିଥାଏ। ଶକୁନ ଶାସ୍ତ୍ର ସାମାଜିକ ଜୀବନ ସହ ଓତଃପ୍ରୋତ ଭାବରେ ଜଡିତ। ତେରସଂଖ୍ୟା, ତେରଦିନ ଯାତ୍ରା, ବିରାଡ଼ିମୁଖ ଦର୍ଶନ ଆଦି ଅଶୁଭର ପ୍ରତୀକ ବୋଲି କୁହାଯାଇଅଛି। ଏହି ଅନ୍ଧବିଶ୍ୱାସ ବିରୋଧରେ ଦଣ୍ଡନାଟ ବିଭିନ୍ନ ଉଦାହରଣ ମାଧ୍ୟମରେ ଜନସଚେତନତା ସୃଷ୍ଟି କରିବା ପ୍ରୟାସ କରୁଛି। ଏପରି ବିଭିନ୍ନ ନୀତି ଶିକ୍ଷାରୁ ସୁସ୍ଥ ଓ ଶୃଙ୍ଖଳିତ ସମାଜ ଗଠନ କରିବାରେ ଦଣ୍ଡନାଟ ମୁଖ୍ୟ ଭୂମିକା ଗ୍ରହଣ କରିଅଛି। ସାମ୍ପ୍ରତିକ କ୍ଷେତ୍ରରେ ଦଣ୍ଡନାଟର ବହୁଳ ପ୍ରଚାର ଓ ପ୍ରସାର ଗଞ୍ଜାମରେ ଦେଖା ଦେଇଅଛି। ତେଣୁ କଳା ଓ ସଂସ୍କୃତିର ପ୍ରଗତି ପଥରେ ଗଞ୍ଜାମର ନାମ ଇତିହାସରେ ଚିରସ୍ମରଣୀୟ ହୋଇ ରହିଛି ।

---

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ (ଓଡିଆ ବିଭାଗ)
ଭଞ୍ଜବିହାର– ୭୬୦୦୦୭

# ଶ୍ରୀଜୀଉଙ୍କ ଦେବୋତ୍‌ଥାପନ ଯାତ୍ରା

ନଗେନ୍ଦ୍ର ନାଥ ପଟ୍ଟନାୟକ

ମହାପୁଣ୍ୟ ତଥା ପବିତ୍ର ମାସ କାର୍ତ୍ତିକ ମାସଟି ହେଉଛି ଭଗବତ ଉପାସନା, ଓଷାବ୍ରତ ଏବଂ ପରମାତ୍ମା ଜାଗୃତିର ମାସ । କାୟିକ, ବାଚନିକ ତଥା ମାନସିକ ସ୍ତରରେ କଳୁଷ ଅବା ଆବିଳତା ମୁକ୍ତ ରହି ଆଚମନପୂର୍ବକ ବ୍ରତ ଯେଉଁ ମାସରେ କରାଯାଏ, ତାହା ହେଉଛି ଏହି ଶ୍ରେଷ୍ଠ କାର୍ତ୍ତିକ ମାସ । ଏଥିପାଇଁ କାର୍ତ୍ତିକ ମାସର ମାହାତ୍ମ୍ୟ ବିଷୟରେ ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି–

'ନ କାର୍ତ୍ତିକ ସମୋ ମାସୋ ନ କୃତଂ ସମଂ ଯୁଗଂ ।
ନ ବେଦ ସଦୃଶଂ ଶାସ୍ତ୍ରଂ ନ ତୀର୍ଥଂ ଗଙ୍ଗାୟା ସମଂ ।'

କୁମାର ପୂର୍ଣ୍ଣିମା ପରେ ଆରମ୍ଭ ହୁଏ ଏହି କାର୍ତ୍ତିକ ବ୍ରତ । ତେବେ କତିପୟ ଭକ୍ତ ଶ୍ରଦ୍ଧାଳୁ ଏହି ବ୍ରତକୁ ଏକାଦଶୀ ତିଥିରୁ ପାଳନ କରୁଥିବାର ଦେଖିବାକୁ ମିଳେ । କାରଣ ଏହି ତିଥିରୁ ହିଁ ଲାଗି ରୁହେ ଶ୍ରୀମନ୍ଦିରରେ ମହାପ୍ରଭୁଙ୍କଠାରେ ଏକ ସ୍ୱତନ୍ତ୍ର ଭୋଗ ବାଲଧୂପ । ଏହି ବ୍ରତକୁ ଅତ୍ୟନ୍ତ ନିଷ୍ଠାର ସହିତ ପାଳନ କରୁଥିବା କାର୍ତ୍ତିକ ବ୍ରତଧାରୀ, ଶ୍ରଦ୍ଧାଳୁ, ଅନେକ ସ୍ତ୍ରୀ ପୁରୁଷ ସକଳ ପାପରାଶିରୁ ମୁକ୍ତ ହୋଇ ମହାପୁଣ୍ୟ ଅର୍ଜନ କରିବା ସହିତ ବିଷ୍ଣୁ ଲୋକ ପ୍ରାପ୍ତ ହୋଇଥାନ୍ତି ।

ବର୍ଷସାରା ଶ୍ରୀମନ୍ଦିରରେ ଭିନ୍ନଭିନ୍ନ ପର୍ବପର୍ବାଣି, ଯାନିଯାତ୍ରା, ଉତ୍ସବ ମହୋତ୍ସବ ଆଚରିତ ହୋଇ ଆସୁଥିଲେ ବି କାର୍ତ୍ତିକ ମାସରେ ପାଳିତ ହେଉଥିବା ଯାତ୍ରା ବାସ୍ତବରେ ଅବର୍ଣ୍ଣନୀୟ । କାରଣ ଏହି ମାସଟି ବିବେଚିତ ହୁଏ ଜୀବାତ୍ମା ସହିତ ପରମାତ୍ମା ମିଳନର ମାସ ରୂପେ । ଦିବ୍ୟ, ସାତ୍ତ୍ୱିକ ତଥା ପାରମାର୍ଥିକ ପରିବେଶ ସୃଷ୍ଟି କରୁଥିବା ଏହି ମାସରେ କାର୍ତ୍ତିକ ବ୍ରତ ଆଚରିତ ହେବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କ ଦର୍ଶନ, ମହାପ୍ରସାଦ ସେବନ, ନାନାଦି ରୀତିନୀତି, ବେଶ, ଆଳତି ଦର୍ଶନ କରିବାର ସୌଭାଗ୍ୟ ଲଭନ୍ତି କାର୍ତ୍ତିକ ବ୍ରତଚାରୀ ଅର୍ଥାତ ଭକ୍ତଶ୍ରଦ୍ଧାଳୁ ଧର୍ମାତ୍ମାମାନେ । ଏ ପୁଣ୍ୟ ମାସରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପାଳିତ ହୁଏ ବିଭିନ୍ନ ମହୋତ୍ସବ, ଯାହାକି ଠାକୁରଙ୍କ ନିତିଦିନିଆ ପରମ୍ପରାଠୁ ସମ୍ପୂର୍ଣ୍ଣ ରୂପେ ନିଆରା । କାର୍ତ୍ତିକ ମାସରେ ଶ୍ରୀଜଗନ୍ନାଥଙ୍କର ପ୍ରଥମ ନୀତି ଅନୁଷ୍ଠିତ ହୁଏ ମଙ୍ଗଳ ଆଳତୀ ରାତ୍ରର ଶେଷ ପ୍ରହରରେ । ମହାପ୍ରଭୁଙ୍କୁ ଅର୍ପଣ କରାଯାଏ ବାଲଧୂପ ନୈବେଦ୍ୟ । ଶ୍ରୀଜୀଉମାନେ ସୁସଜ୍ଜିତ ହୁଅନ୍ତି ରାଧାଦାମୋଦର ବେଶରେ । ଅନୁଷ୍ଠିତ ହୁଏ ବାଲଧୂପ ନୀତି । ସାଧାରଣତଃ ଏହି ବାଲଧୂପରେ ନଡିଆ, କୋରା,ବୋଭ ଭାଜିଆ, ଅଦା, ଖଇ, ଖୁଦି, ଚାଉଳିଆ, ସେଓ, କମଳା, କଦଳୀ, କାକୁଡି, ପଇଡ ଆଦି ଭୋଗ ଲାଗି କରାଯାଇଥାଏ । ପରମ୍ପରା ମୁତାବକ ବାଲଧୂପ କାଳରେ ବାଦ୍ୟସଂଗୀତ ଗାନ ସହିତ ରାଧାକାନ୍ତ ମଠ ତରଫରୁ ସଂକୀର୍ତ୍ତନର ବନ୍ଦୋବସ୍ତ କରାଯାଏ ।

ଆଷାଢ ଶୁକ୍ଳ ଏକାଦଶୀ ତଥା ହରିଶୟନ ଏକାଦଶୀ ଦିନ ଶ୍ରୀବିଗ୍ରହମାନେ ଶୟନ ଲାଗି ଉଦ୍ଦିଷ୍ଟ ଠାକୁରଠାକୁରାଣୀ ପଲଙ୍କ ଶେଯରେ ନିଦ୍ରାଗତ ହେବା ପରେ ଆଷାଢ ଶୁକ୍ଳ ଦ୍ୱାଦଶୀ ଦିନ ପକ୍ଷୀନ୍ଦ୍ର ଗରୁଡ ଶୟନ କରନ୍ତି ଶ୍ରୀଜଗନ୍ନାଥଙ୍କ ପଲଙ୍କ ତଳେ । ହରିଶୟନ ଏକାଦଶୀଠୁ ଆରମ୍ଭ ହୋଇଥିବା ଅଶୁଦ୍ଧି କାଳ ଚାତୁର୍ମାସ୍ୟା ବ୍ରତର ଅନ୍ତ ଘଟେ ଦେବ ଉତ୍‌ଥାପନ ଏକାଦଶୀ ଦିବସରେ । ଅର୍ଥାତ, ଏହି ଅନ୍ତିମ ପାବନ ଦିବସରେ ହିଁ ନିଦ୍ରାଭଂଗ ହୁଏ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର । ସକାଳଧୂପଠାରୁ ଶୁଭାରମ୍ଭ ହୋଇ ଏକାଦଶୀ ନୀତି ସାଙ୍ଗକୁ ବଡସିଂହାର ଧୂପଯାଏ ସବୁ ନୀତିକାନ୍ତି, ରୀତିନୀତି ସମାପନାନ୍ତେ ଶ୍ରୀଜୀଉଙ୍କ ମହାସ୍ନାନ ପୂଜା ହୁଏ ଏହି ଦେବୋତ୍‌ଥାନ ଏକାଦଶୀ ଦିନ । ଖଟଶେଯ ଘର ଓ ଶୟନ ପେଡି ନୀତି ଅନୁଯାୟୀ ଠାକୁରମାନଙ୍କ ପ୍ରାର୍ଥନା ପରେ ଅର୍ପଣ କରାଯାଏ ଆଳତୀ ଓ ପୁଷ୍ପାଞ୍ଜଳି । ରୂପାରେ ନିର୍ମିତ ତିନୋଟି ଥାଳିରେ ଠାକୁର ତ୍ରୟଙ୍କୁ ବିଜେ କରାଇ ଅଣାଯାଏ ମହାସ୍ନାନ ସ୍ଥଳକୁ । ସେଠାର ଥାପିତ ଖଟୁଲିରେ ଉପବେଶନ କରାଇ ଅନୁଷ୍ଠିତ ହୁଏ ମହାସ୍ନାନ ପର୍ବ । ତତ୍‌ପରେ ଶ୍ରୀଜୀଉ ତ୍ରୟଙ୍କୁ ସିଂହଦ୍ୱାରକୁ ନିଆଯାଇ ବିଜେ

କରାଯାଏ ତିନି ବାଡରେ । ପୃଥକ ପୃଥକ ତିନୋଟି ରୂପା ପିଙ୍ଗଣରେ ଚନ୍ଦନ ପ୍ରଲେପନ ସହ ସବାଙ୍ଗନୀତି ସଂପନ୍ନ ହୁଏ । ପୁନଶ୍ଚ, ନୂତନ ପରିଧାନ ତଥା ପୁଷ୍ପ ଲାଗି ହେବା ଉତାରେ ଦେବୋତ୍ଥାପନ ଠାକୁର ତିନି ବିଗ୍ରହ ଅବା ଶ୍ରୀଜୀଉ ତ୍ରୟଙ୍କୁ ଆଭୂଷିତ କରାହୁଏ ବହୁମୂଲ୍ୟ ଅଳଙ୍କାରରେ । ବଡସିଂହାର ବଲ୍ଲଭଭୋଗ ଅର୍ପଣ ପରେ ଦେବୋତଥାପନ ତିନିଠାକୁରଙ୍କୁ ନିଆଯାଏ ଭଣ୍ଡାର ଗୃହକୁ । ତତ୍‌ପରେ ଶ୍ରୀଜୀଉମାନଙ୍କୁ ଆଳତି ସହ ବନ୍ଦାପନା କରାଯାଏ ବଡସିଂହାର ଧୂପ ଓ କର୍ପୂରାଦି ସୁଗନ୍ଧିତ ଦ୍ରବ୍ୟରେ । ପରେ ପରେ ଶୟନରତ ଠାକୁର ଠାକୁରାଣୀଙ୍କୁ ପୁଷ୍ପ, ବିଭିନ୍ନ ଦୁର୍ଲଭ ସ୍ୱର୍ଣ୍ଣାଳଙ୍କାର, ସୁବର୍ଣ୍ଣ କିଆ, ସୁବର୍ଣ୍ଣ ଶ୍ରୀପୟର, ଶ୍ରୀଭୁଜ ଆଦିରେ ସୁଶୋଭିତ କରାଯାଇ ଠିଆକିଆ ଅବା ଲକ୍ଷ୍ମୀ ନାରାୟଣ ବେଶ ଅନୁଷ୍ଠିତ ହୁଏ ।

ଦେବ ଉତ୍‌ଉଥାପନ ଦିନ ଶ୍ରୀଜୀଉଙ୍କଠାରେ ସ୍ୱତନ୍ତ୍ର ରୀତିନୀତି ଆଚରିତ ହେଉଥିଲେ ମଧ୍ୟ ନିତିଦିନ ଠାକୁରଙ୍କଠାରେ ଲାଗି ହେଉଥିବା ଭୋଗ ତୁଲ୍ୟ ଉକ୍ତ ଦିନ ବି ଛଅ ଥର ଭୋଗ ନୈବେଦ୍ୟ ଅର୍ପଣ କରାଯାଏ ।

୧– ଗୋପାଳବଲ୍ଲଭ ଭୋଗ (ଖୁଆମଣ୍ଡା, ନଡିଆ, କୋରା, କଦଳୀ, ଦହି, ଲହୁଣୀ, ଖଣ୍ଡସାକର ଓ ଋତୁକାଳୀନ ଫଳ) – ସକାଳେ ନଅଟା

୨–ସକାଳଧୂପ ବା ରାଜଭୋଗ (ପୁଠାପୁଳି, ହଂସବଲ୍ଲଭ, ବଡକାନ୍ତି, ସାନକାନ୍ତି, ଏଣ୍ଡୁରୀ, ମାଠପୁଳି, କାକତୁଆ, ଝିଲି, ଦେଶୀଆଳୁ, କଦଳୀ ଭଜା, ଅଦାପାଚେଡି, ବୁନ୍ଦିଆ ଇତ୍ୟାଦି) ତିନିଠାକୁରଙ୍କୁ ସରା, କୁଡୁଆ ଓ ଓଳିରେ ବଢାଯାଇଥାଏ– ସକାଳ ଦଶଟା

୩– ଭୋଗମଣ୍ଡପ ଭୋଗ ବା ଛତ୍ର ଭୋଗ( ଅନ୍ନ, ଡାଲି, ଡାଲମା, ମହୁର, ବେସର, ଶାଗ, ପୋଟଳ, ରସା, ଖଟା ଇତ୍ୟାଦି)– ଦିନ ଏଗାରଟା

୪– ଦ୍ୱପହର ଧୂପ ( ବିଭିନ୍ନ ଅନ୍ନ, ସାକର, କଦମ୍ବା, ମାଠପୁଳି, ଆରିସା, ତ୍ରିପୁରୀ, କାକରା , ମନୋହର, ପିଠାମରିଚି, ଲଡୁ, ସରପଣା, ଦହି, ଦୁଧ ଗଜା ଆଦି )–ଦିନ ସାଢେ ବାରଟାରୁ ଗୋଟାଏ ମଧ୍ୟରେ ।

୫–ସନ୍ଧ୍ୟା ଧୂପ( କଂଚନପୁଳି, ଟାକୁଆ, ମାଠପୁଳି, ଭୋଗପିଠା, ଗୋଟାଳି, କାକାରା, ଖୁରୁମା, ଅମାଲୁ, ଚଢେଇନେଦା, ପଖାଳ ଇତ୍ୟାଦି) – ସନ୍ଧ୍ୟା ସାତଟାରୁ ଆଠଟା ଭିତରେ ।

୬–ବଡସିଂହାର ଧୂପ ( ମିଠାପଖାଳ, ସୁଆର ପିଠା, ଖିରୀ, ସରପୁଳି, କଦଳୀ ଭଜା, କାଂଜି ଆଦି)– ରାତି ଏଗାରଟା ପନ୍ଦର ମିନିଟରେ ।

ଭୋଗମଣ୍ଡପ ଭୋଗ ଲାଗି ହେଉଥିବା ବେଳେ ଦ୍ୱିପହର ଧୂପ ଓ ସନ୍ଧ୍ୟାଧୂପ ଉତାରେ ଭକ୍ତମାନେ ଆବଶ୍ୟକତା ମୁତାବକ ଏକାଧିକ ଭୋଗ ଅର୍ପଣ କରାଯାଏ ।

ଗୋପାଳବଲ୍ଲଭ ଭୋଗ ଓ ଭୋଗମଣ୍ଡପ ଭୋଗ ଭିନ୍ନ, ଅନ୍ୟସବୁ ଭୋଗ ଶ୍ରୀବିଗ୍ରହଙ୍କୁ ରତ୍ନବେଦୀ ତଳେ ପୋଖରିଆ ମଧ୍ୟରେ ଲାଗି କରାଯାଏ । ପୂଜାପଣ୍ଡା ମୁରୁଜରେ ଗାରକାଟି ପ୍ରସ୍ତୁତ କରନ୍ତି ପୋଖରିଆ । ସେଇ ମୁରୁଜ ଭିତରେ ଭୋଗ ବାଢନ୍ତି ଶ୍ରୀମନ୍ଦିରର ସୁଆରମାନେ। କଲାହାଟ ଦ୍ୱାର ତଥା ପ୍ରଥମ କାଠ କିଳିଣୀ ମଧ୍ୟରେ ଅଣସର ପିଣ୍ଡି ଅବା ବଲ୍ଲଭ ପିଣ୍ଡିରେ ଅର୍ପଣ କରାଯାଏ ଗୋପାଳବଲ୍ଲଭ ଭୋଗ । ଭୋଗମଣ୍ଡପ ଭୋଗ ଅର୍ପଣ କରାଯାଏ ଗରୁଡ ଖମ୍ବ ପଶ୍ଚାତରେ ଥିବା ଭୋଗ ମଣ୍ଡପରେ । ଠାକୁରମାନଙ୍କଠାରେ ଗୋପାଳବଲ୍ଲଭ ଭୋଗ ଓ ଭୋଗମଣ୍ଡପ ଭୋଗ ଅର୍ପଣ ନୀତି ତଥା ବଡ ସିଂହାର ଧୂପଦାନ ପଂଚ ଉପଚାରରେ ଅନୁଷ୍ଠିତ ହେଉଥିବାବେଳେ ଅନ୍ୟ ଭୋଗସବୁ ଲାଗି ହୁଏ ଷୋଡଶ ଉପଚାରରେ।

ଏହି ପରମ ପୁଣ୍ୟ ମାସରେ ରହସ୍ୟମୟ ଦାରୁବ୍ରହ୍ମ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦେବୋତ୍ଥାପନ ଯାତ୍ରା ସଂଦର୍ଶନ କଲେ ମନୁଷ୍ୟର ମୋକ୍ଷପ୍ରାପ୍ତିର ମାର୍ଗ ଉନ୍ମୁକ୍ତ ହୋଇଥାଏ । ସେ ଆଉ ମାୟାର ମୋହଫାସରେ ବାନ୍ଧିହୋଇ ରୁହେ ନାହିଁ । ଏହା ହିଁ ହେଉଛି ସେଇ ବୈଚିତ୍ର୍ୟମୟ କୈବଲ୍ୟନାୟକ ଶ୍ରୀଜଗନ୍ନାଥଙ୍କ ଅପାର ମହିମା। ଏହି ଦର୍ଶନ ଦ୍ୱାରା ମନୁଷ୍ୟର ମୋହମୟୀ ନିଦ୍ରା ବିନଷ୍ଟ ହୋଇ ଭଗବତ ଶାନ୍ତି ପ୍ରାପ୍ତ ହୋଇଥାଏ ବୋଲି ବିଶ୍ୱାସ କରାଯାଏ ।

ଜିଲ୍ଲା କୋଷାଗାର ଅଧିକାରୀ,ପୁରୀ

❖ ❖ ❖

# ଓଡ଼ିଆ ଲୋକ ନାଟକରେ ଦୁଆରୀ ଚରିତ୍ର: ଏକ ବିଶ୍ଳେଷଣ

ଡକ୍ଟର ବିରଂଚି ସାହୁ

ଦୁଆରୀ ଚରିତ୍ରଟି ବିଶେଷକରି ଲୋକ ନାଟକ କ୍ଷେତ୍ରରେ ଅନେକ ଦିନରୁ ପ୍ରଚଳିତ। ସଂସ୍କୃତ ନାଟକ ବାଟଦେଇ ଓଡ଼ିଆ ନାଟକ କ୍ଷେତ୍ରରେ ପ୍ରବେଶ ଲାଭ କରିଛି। ଦୁଆରୀ ଗୋଟିଏ ନିମ୍ନସ୍ତରର ଚରିତ୍ର। କିନ୍ତୁ ଏହି ଚରିତ୍ରଟି ମାଧ୍ୟମରେ ଦର୍ଶକ, ଶ୍ରୋତା ଆନନ୍ଦ ବିଭୋର ହୋଇ ଉଠନ୍ତି, କ୍ଳାନ୍ତି ଅପନୋଦନ କରିଥାନ୍ତି। ନାଟକରେ ଦୁଆରୀ ଚରିତ୍ରଟିଏ ରହିବା ନିତାନ୍ତ ଆବଶ୍ୟକ ଥିଲା ତତ୍କାଳୀନ ସମୟରେ। ଦୁଆରୀଟିଏ ଯେତେବେଳେ ରଙ୍ଗମଞ୍ଚକୁ ଓହ୍ଲାଇ ଆସୁଥିଲା, ସେତେବେଳେ ଦର୍ଶକ ସମାଜଙ୍କ ମନରୁ ବିଷାଦ ଟିକକ ଲିଭି ଯାଉଥିଲା। କାନ୍ତ କବି ଲକ୍ଷ୍ମୀକାନ୍ତ ମହାପାତ୍ର ଏ ସଂପର୍କରେ ଉଲ୍ଲେଖ କରିଛନ୍ତି ଆମ ଦେଶରେ ପ୍ରଚଳିତ ଯାତ୍ରା, ଲୀଳା ଓ ସୁଆଙ୍ଗ ଆଦିରେ ଦୁଆରୀ ରଖିବାର ରୀତି ଥିଲା। ଯେଉଁ ଦଳର ଦୁଆରୀ ଯେତେ ସରସ ଅଭିନୟ କରିପାରୁଥିଲା, ସେହି ଯାତ୍ରା ଦଳର ଖ୍ୟାତି ସେତେ ଅଧିକ ପ୍ରଚାରିତ ହେଉଥିଲା। ତା'ର ରୂପ ଥିଲା କୌତୁହଳୋଦ୍ଦୀପକ। ଦେଖିଲାମାତ୍ରେ ହସର ଢେଉ ଆପେ ଆପେ ଦର୍ଶକମାନଙ୍କ ପାଖରୁ ଆସୁଥିଲା। କଥା କଥାରେ ବିଭିନ୍ନ ଢଗ–ଢମାଳିର ଆଶ୍ରୟ ନେଉଥିଲା। ଅନେକ ଅଶ୍ରାବ୍ୟ କଥା ମଧ୍ୟ ଦର୍ଶକମାନଙ୍କ ସମ୍ମୁଖରେ ପେସ୍ କରୁଥିଲା। ଦୁଆରୀ ସଂପର୍କରେ ଓଡ଼ିଆ ନବସମ୍ବାଦର ମନ୍ତବ୍ୟ ଥିଲା ଏହିପରି, ମଞ୍ଚକୁ ରାଜା ଆସିଗଲା ପରେ, ଦୁଆରୀ ରାଣୀଙ୍କ ପଣତ କାନିଧରି ବାହାରୁଥିଲା, ଆଖିରେ ଛ'ପଇସିଆ ନେଳି ଚଷମା, ହାତରେ ତା'ର ଖଣ୍ଡେ ବେତ। ସେ ରାଜାଙ୍କ ସମ୍ମୁଖରେ ରାଣୀଙ୍କ କାନି ଧରି ନାଚକରେ। ତା'ର ବାଚିକ ଅଭିନୟ ନୁହେଁ। ରାଣୀଙ୍କ ରୂପ ଯୌବନର ଅସଙ୍ଗତ ବର୍ଣ୍ଣନା ଶସ୍ତା ହାସ୍ୟରସର ଖୋରାକ ଯୋଗାଏ। ସେ ରାଜାଙ୍କୁ ଅଶ୍ଳୀଳ ଭାଷାରେ ଗାଳିଦେଲା ବେଳେ ରାଜା ଓ ରାଣୀତ ହସନ୍ତି, ଦର୍ଶକମାନେ ମଧ୍ୟ ହସୁଥାନ୍ତି। ନାଟକର ମୁଖ୍ୟ ରସ ହେଉଛି ହାସ୍ୟରସ ଓ କରୁଣରସ। ଯଦିଓ ଦୁଇଟାଯାକ ପରସ୍ପର ଅଲଗା। କାରଣ ହାସ୍ୟଦ୍ୱାରା ସାମାଜିକମାନେ ଉତ୍‌ଫୁଲ୍ଲ ହେବାବେଳେ କରୁଣରସର ସଞ୍ଚାର ଦ୍ୱାରା ଦର୍ଶକ, ଶ୍ରୋତାମାନେ ଦୁଃଖରେ ଅଧିର ହୋଇ ଉଠନ୍ତି। ହାସ୍ୟରସର ସୃଷ୍ଟି ପାଇଁ ନାଟକର ଆଦିମ ଅବସ୍ଥାରୁ ପ୍ରଚେଷ୍ଟା କରାଯାଇଛି। ସଂସ୍କୃତ ନାଟକରେ ବିଦୂଷକ, ଇଂରାଜୀ ନାଟକରେ କ୍ଲାଉନ ଓ ବଫନ୍ ଚରିତ୍ର ପରି ଓଡ଼ିଆ ଯାତ୍ରା, ଗୀତିନାଟ୍ୟ, ଗୀତାଭିନୟରେ ଦୁଆରି ଚରିତ୍ରର ଅବତାରଣା କରାଯାଇଛି।

ଦୁଆରୀ ଚରିତ୍ର ଏପରି ଏକ ଚରିତ୍ର ଯାହାକୁ ସମସ୍ତ ଯାତ୍ରା ନାଟ୍ୟକାରମାନେ ପ୍ରାୟ ସେମାନଙ୍କର ଗୀତିନାଟ୍ୟମାନଙ୍କରେ ଅବତାରଣା କରାଇଛନ୍ତି। ଦୁଆରୀ ଚରିତ୍ର ମାଧ୍ୟମରେ ନାଟ୍ୟକାର ସାମାଜିକ ସଚେତନତା ସୃଷ୍ଟି କରିଥାନ୍ତି। ଏହା ଅନ୍ୟ ଚରିତ୍ର ତୁଳନାରେ ନଗଣ୍ୟ ହେଲେ ମଧ୍ୟ ଏହାର ଏକ ସ୍ୱାତନ୍ତ୍ର୍ୟ ଅଛି। ଏହି ସ୍ୱାତନ୍ତ୍ର୍ୟଟି ହେଉଛି ଦର୍ଶକମାନଙ୍କୁ କିଛି ସମୟ ପାଇଁ ଆନନ୍ଦର ଖୋରାକ ଯୋଗାଇ ଉତ୍‌ଫୁଲ୍ଲ କରି ରଖିବା। ତା'ର ବେଶଭୂଷା ନିହାତି ହାସ୍ୟାସ୍ପଦ। ହାସ୍ୟରସର ପ୍ରାଚୁର୍ଯ୍ୟ ଯାତ୍ରାର ଅନ୍ୟ ଏକ ପ୍ରଧାନ ବିଶେଷତ୍ୱ। ବ୍ୟଂଗ, ବିଦ୍ରୂପ, ଶ୍ଲେଷ, କଟାକ୍ଷ, ଆକ୍ଷେପୋକ୍ତି, ଲାଳିକା ଓ ଭାଷା ବିକୃତି ଆଦି ବିଭିନ୍ନ ଉପାୟରେ ହାସ୍ୟରସ ସୃଷ୍ଟି କରାଯାଇଥାଏ। ହାସ୍ୟରସ ସୃଷ୍ଟିପାଇଁ ଏଥିରେ କେତେ ପ୍ରକାର ଚରିତ୍ରର ଅବତାରଣା କରାଯାଇଥାଏ। ହାସ୍ୟରସ ସୃଷ୍ଟି ପାଇଁ ଏଥିରେ କେତେ ପ୍ରକାର ଚରିତ୍ରର ଅବତାରଣା କରାଯାଇଥାଏ। ଏହାର ପ୍ରକାରଗୁଡିକ ହେଲା– ଦୂତ, ଦୁଆରୀ, ଝାଡୁଦାର, ଚୌକିଦାର, କଳହରତ ସ୍ୱାମୀ, ସ୍ତ୍ରୀ, ନିଦ୍ରିତ ପ୍ରହରୀ, ଭୀରୁସୈନିକ, ପଳାତକ ନାଗରିକ। କେତେକ ଗୀତିନାଟ୍ୟରେ ହାସ୍ୟରସ ସୃଷ୍ଟି ନିମିତ୍ତ ମୂଳ କଥା ବସ୍ତୁ ସଂଗେ ଗୋଟିଏ ଗୋଟିଏ ଫାର୍ଶ ବା ପ୍ରହସନ ମଧ୍ୟ ଯୋଡି ଦିଆଯାଇଥାଏ। ହାସ୍ୟରସ ସୃଷ୍ଟି ନିମିତ୍ତ ସ୍ଥଳବିଶେଷରେ ଯୁଗ୍ମ ନୃତ୍ୟର ଅବତାରଣା ମଧ୍ୟ କରାଯାଇଥାଏ । ଅର୍ଥାତ୍ ଗୀତିନାଟ୍ୟକୁ ସରସ ସୁନ୍ଦର କରି ଦର୍ଶକମାନଙ୍କ ମଧ୍ୟରେ ଏକ ଆନନ୍ଦର ଜୁଆର ଖେଳାଇବା

ନାଟ୍ୟକାରଙ୍କ ଉଦ୍ଦେଶ୍ୟ। କେବଳ ହାସ୍ୟରସ ସୃଷ୍ଟି ପାଇଁ ନୁହେଁ ପରନ୍ତୁ ଦର୍ଶକମାନଙ୍କ ମଧ୍ୟରେ ସମାଜ ସଚେତନତା ଉପରୋକ୍ତ ଚରିତ୍ରମାନଙ୍କ ସାହାଯ୍ୟରେ କରାଯାଇଥାଏ। ହାସ୍ୟରସର ଆବଶ୍ୟକତା ଯାତ୍ରା–ଗୀତିନାଟ୍ୟମାନଙ୍କର ରହିଥିବା ଜରୁରୀ ଯେମିତି ସାଂପ୍ରତିକ ଯାତ୍ରା ଦଳରେ କମେଡିଆନମାନଙ୍କର ଆବଶ୍ୟକ ଥିବାର ଯେ କେହି ଲକ୍ଷ୍ୟ କରିପାରିବେ। କାରଣ, ହାସ୍ୟରସ ନାଟକର ଗୋଟିଏ ମୁଖ୍ୟ ଅଂଶ। ନାଟକରେ ସାମାଜିକ ଆବେଦନ ଯାହା ଥାଉନା କାହିଁକି ମନୋରଂଜନ ଏହାର ପ୍ରଥମ ଓ ପ୍ରମୁଖ ଆବଶ୍ୟକତା। କର୍ମକ୍ଳାନ୍ତ ଜୀବନରେ ସାମାନ୍ୟ କେତେ ଘଣ୍ଟା ଯାତ୍ରା ଅଭିନୟ ଦେଖିବା ଦ୍ୱାରା ସେମାନଙ୍କ ମନରେ ସାମାନ୍ୟ ଆନନ୍ଦ ଜାତହୁଏ। ପରିଶ୍ରମକୁ ଭୁଲିଯିବା ପାଇଁ ସେ ଯାତ୍ରା, ଅଭିନୟ ଦେଖିଥାଏ। ମନକୁ ଆନନ୍ଦ ବିଭୋର କରିବାପାଇଁ ସେ ଯାତ୍ରା ଦେଖିଥାଏ। ହାସ୍ୟରସ ମାଧ୍ୟମରେ ସେ ଅଧିକ ମନୋରଞ୍ଜନ କରିଥାଏ। ହାସ୍ୟରସ ସୃଷ୍ଟିପାଇଁ ଦୁଆରୀ, ସୂପକାର ଓ ସ୍ତ୍ରୀ ପୁରୁଷର ଫାର୍ଶ ସଙ୍ଗେ ସଙ୍ଗେ ବିଦୂଷକ ଚରିତ୍ରର ଅବତାରଣା କରାଯାଉଥିଲା। ପ୍ରତ୍ୟେକ ଯାତ୍ରା ସୁଆଙ୍ଗରେ ପ୍ରାୟ ଫାର୍ଶ ସଂଯୋଜିତ ହୋଇଥାଏ। ବିଷୟବସ୍ତୁ ସହିତ ଏହାର କୌଣସି ସଂପର୍କ ନଥାଏ। କେବଳ ହାସ୍ୟରସ ସୃଷ୍ଟି ଓ ବିଶ୍ରାମ ପାଇଁ ଏହା ଉଦ୍ଦିଷ୍ଟ। ଉନ୍ନତ ଧରଣର ନାୟକ ନାୟିକା ମୁହଁରେ ରୁଚିହୀନ ଅତ୍ୟନ୍ତ ଗାଉଁଲି ସଂଳାପ ଯୋଗକରି ଯାତ୍ରା ଲେଖକଗଣ ହାସ୍ୟରସ ସଞ୍ଚାର କରିବାକୁ ମଧ୍ୟ ଚେଷ୍ଟା କରିଛନ୍ତି। ତେଣୁ ଯାତ୍ରା, ଗୀତିନାଟ୍ୟ ବା ନାଟକର ମୁଖ୍ୟ ଆବେଦନ ହେଉଛି ହାସ୍ୟରସ। ଯେଉଁଠି ଯାତ୍ରାର ପରିବେଷଣ ଶୈଳୀ ନିମ୍ନ ମାନର ହୋଇଯାଏ, ନତୁବା ଦର୍ଶକମାନେ କ୍ଳାନ୍ତି ଅନୁଭବ କରି ଉଠନ୍ତି ବା ଦର୍ଶକମାନଙ୍କ ମଧ୍ୟରେ ହୋ ହାଲ୍ଲା ସୃଷ୍ଟି ହୁଏ, ସେତିକିବେଳେ ମଞ୍ଚକୁ ପେସ୍ ହୁଅନ୍ତି ହାସ୍ୟରସ ସୃଷ୍ଟିକାରୀ ବ୍ୟକ୍ତି। ସେ ହେଉ ଦୁଆରୀ, ଦୂତ ବା ଯେ କୌଣସି। କିନ୍ତୁ ଦୁଆରୀ ପ୍ରାୟତଃ ମୁଖ୍ୟ ହାସ୍ୟ ଉଦ୍ରେକକାରୀ ଚରିତ୍ର। 'ସାମାଜିକ ଚରିତ୍ର ମଧ୍ୟରେ ଦୁଆରୀ ପ୍ରଧାନ। ସେ ସାମାନ୍ୟ ଦ୍ୱାର ଜଗୁଆଳୀ ମାତ୍ର ହେଲେ ବି ତାର ଭୂମିକା ଗୁରୁତ୍ୱପୂର୍ଣ୍ଣ। ସେ ଉଚ୍ଚ ପାହ୍ୟାକୁ ଚାଟୁକରେ ନାହିଁ '। 'ହିତଂ ମନୋହାରିତ ଦୁର୍ଲଭଂବଚଃ' ରେ ତା'ର ଗଭୀର ବିଶ୍ୱାସ। ତେଣୁ ମଧୁର ଅସତ୍ୟ କହେ ନାହିଁ। ସେ ତୀକ୍ଷ୍ଣବାକ୍ ଟିକିଏ ବାଚାଳ, ସେ ରାଜାଙ୍କର ବୟସ ବିଦୂଷକ ନୁହେଁ, ସେ ରଙ୍ଗ ରସର ଆଧାର, ଜଣେ ହାସ୍ୟ ରସିକ, ବ୍ୟଙ୍ଗକାରୀ ସେ ଲୋକ ସମାଜର ଅନାଚାର, ଦେଶର ଦୁସ୍ଥିତି ନିଜର ଦୁରବସ୍ଥା ଗୀତରେ, ବିଚିତ୍ର ଅଙ୍ଗଭଙ୍ଗୀ ଚିତ୍ରଣ କରେ। ତା'ର ଚିତ୍ର କରୁଣ, ଯଦିବା ବ୍ୟଂଗାତ୍ମକ, ବ୍ୟଂଗ ହିଁ କରୁଣତାକୁ ଗଭୀରତର କରେ। ଦୁଆରୀ ଲୀଳାର ସର୍ବଶ୍ରେଷ୍ଠ ଆକର୍ଷଣ ସେ ଜନତାକୁ ମନ୍ତ୍ରମୁଗ୍ଧ କରି ରଖେ, ଯଦିବା ଲୀଳାରେ ସେ ଅତିରିକ୍ତ ଦ୍ୱାରୀ ନଥିଲେ ଲୀଳାର ଅଙ୍ଗହାନୀ ହୁଅନ୍ତା ନାହିଁ – କିନ୍ତୁ ଏହା ନୀରସ ହୁଅନ୍ତା। ଅତିକ୍ରିୟା ତା'ର ଦୋଷ। ସେ ଅତିରିକ୍ତ ମାତ୍ରାରେ ଅଂଗଭଂଗୀ କରେ, ବ୍ୟଂଗ କଲାବେଳେ ପାତ୍ର ପାତ୍ରୀର ବିବେଚନା ରଖେନାହିଁ। ନାଟକର ପ୍ରାଥମିକ ଅବସ୍ଥା ବେଳେ ଦୁଆରୀ ଚରିତ୍ରର ପ୍ରଚଳନ ଅଧିକ ଥିଲା। ରାୟଗୁରୁ, ଧ୍ରୁବ ବାରି, ମାଗୁଣି ସାହୁ, ଗୋପାଳ ଦାଶ, ବୈଷ୍ଣବ ପାଣି, ଦ୍ୱାରିକା ନାଥ ମହାପାତ୍ର ଆଦି ଲୋକନାଟ୍ୟକାରଙ୍କ ଲେଖାରେ ପ୍ରାଥମିକ ଭାବେ ଦୁଆରୀ ଚରିତ୍ରର ଅବତାରଣା କରାଯାଇଛି। ପରେ ଏହି ଦୁଆରୀ, ଦୂତ ବା ଡଗରରେ ପରିଣତ ହୋଇଛି। ଯଦିଓ ଏମାନଙ୍କର କାର୍ଯ୍ୟ ସମାନ। ନାମରେ ଭିନ୍ନ କିନ୍ତୁ କାର୍ଯ୍ୟରେ ଏକ । ହାସ୍ୟ ରସର ଉଦ୍ରେକ କରିବା ଏମାନଙ୍କର ମୁଖ୍ୟ କାମ ହେଲେ ମଧ୍ୟ ସାମାଜିକ ଦୃଷ୍ଟିରୁ ଏମାନେ ଅନେକ କାର୍ଯ୍ୟ କରିଥାନ୍ତି। ବୈଷ୍ଣବ ପାଣିଙ୍କ ନାଟକରେ ଦୁଆରୀ ହୋଇଛି, କର୍ତ୍ତବ୍ୟନିଷ୍ଠ କର୍ମଚାରୀ। କର୍ତ୍ତବ୍ୟ ପ୍ରଥମେ। ତେଣୁ ସେ ସମାଲୋଚନା କରିଛି, ସେ ବ୍ୟଙ୍ଗ ମଧ୍ୟ କରିଛି। ଦୁଆରୀର ବିକୃତ ରୂପ, ବିକୃତ ପୋଷାକ, ବିକୃତ ଅଙ୍ଗଭଙ୍ଗୀ, ବିକୃତ ସ୍ୱର ହସର ତୋଫାନ ସୃଷ୍ଟି କରେ। ତା'ର ଅପ୍ରାକୃତିକ କାର୍ଯ୍ୟ କଳାପ ମଧ୍ୟ ହସର ଝଡ ସୃଷ୍ଟି କରେ। ଦୁଆରୀ ଚରିତ୍ର ଯାତ୍ରା ଗୀତିନାଟ୍ୟରେ ନିମ୍ନସ୍ତରର ହେଲେ ହେଁ ଏହାର ଏକ ସ୍ୱାତନ୍ତ୍ର୍ୟ ରହିଛି। ରାଜା, ଜମିଦାର, ରାଣୀ ଆଦି ଚାରିତ୍ରିକ ଗୁଣ ତୁଳନାରେ ଏ ମଧ୍ୟ କମ୍ ନୁହେଁ। ସେ ଯାହା ହେଉନା କାହିଁକି ନାଟକରେ ଦୁଆରୀ ଚରିତ୍ରର ଅବତାରଣା ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ସମୟର ଗଡ୍‌ଡାଳିକା ପ୍ରବାହରେ ଲୋକ ନାଟକ ବାଟ ଦେଇ ଆଧୁନିକ ନାଟକରେ ମଧ୍ୟ ହାସ୍ୟରସର ବ୍ୟବହାର କରାଯାଉଛି। ସେମାନଙ୍କର ଗୁଣାବଳୀ ବା ଚାରିତ୍ରିକ ଗୁଣ ଯାହା ସାଂପ୍ରତିକ ନାଟକ ପରିପ୍ରେକ୍ଷୀରେ କମେଡିଆନମାନଙ୍କର କାର୍ଯ୍ୟ ମଧ୍ୟ ସେଇଆ। ହସେଇବା, ମଜେଇବା, ରସେଇବା । ତେଣୁ 'ଦୁଆରୀ' ସେତେବେଳର ଚରିତ୍ର ନିଶ୍ଚିତ ଭାବେ ଏକ ପ୍ରଭାବଶାଳୀ ଚରିତ୍ର ମନେହୁଏ।

**ସହାୟକ ଗ୍ରନ୍ଥସୂଚୀ**

୧.କାନ୍ତ ସାହିତ୍ୟ ମାଳା / ପ୍ରଥମ ଖଣ୍ଡ, ପ୍ରକାଶ ୧୯୬୪/ ପୃ.୫୨୪।

୨.ଓଡିଆ ସାହିତ୍ୟରେ ହାସ୍ୟରସ/ ଡଃ କୁଳମଣି ରାଉତ / ପ୍ରକାଶକ: ଓଡିଶା ସାହିତ୍ୟ ଏକାଡେମୀ / ପୃ.୪୫୪।

୩.ଓଡିଆ ଯାତ୍ରା ଓ ଲୋକନାଟ୍ୟ ପରିକ୍ରମା / ଡଃ କୁଞ୍ଜ ବିହାରି ଦାଶଙ୍କ ପ୍ରବନ୍ଧ / ବୁକସ୍ ଏଣ୍ଡ ବୁକସ୍/ ପୃ୭୧୪।

ଅଧ୍ୟାପକ, ଓଡିଆ ବିଭାଗ

ଆର୍.ଡି.ଏସ୍. ଡିଗ୍ରୀ ମହାବିଦ୍ୟାଳୟ, କୁଣ୍ଡାବାଇ, ମୟୂରଭଂଜ

# ୩୫ତମ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା

**ଗୁରୁକଲ୍ୟାଣ ମହାପାତ୍ର**

ଦୀର୍ଘ ୩୪ ବର୍ଷ ହେଲା ଭାରତର ରାଜଧାନୀ ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା ଅନୁଷ୍ଠିତ ହୋଇ ଏକ ଇତିହାସ ସୃଷ୍ଟି କରିଛି । ଭାରତ ଓ ଭାରତ ଅନ୍ତର୍ଗତ ବିଭିନ୍ନ ପ୍ରଦେଶମାନଙ୍କର ବ୍ୟବସାୟିକ ଓ ବାଣିଜ୍ୟିକ ସଫଳତାର ଏକ ଉଲ୍ଲେଖନୀୟ ନିଦର୍ଶନ ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ଚଳିତ ବର୍ଷ ମଧ୍ୟ ଏହି ନଭେମ୍ବର ୧୪ରୁ ୨୭ ତାରିଖ (୨୦୧୫) ପର୍ଯ୍ୟନ୍ତ ୧୪ ଦିନଯାକ ମହାଡମ୍ବରରେ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା ନୂଆଦିଲ୍ଲୀ ଅନ୍ତର୍ଗତ ପ୍ରଗତି ମଇଦାନଠାରେ ହେବାକୁ ଯାଉଛି । ତେବେ ଚଳିତ ବର୍ଷ ଏହି ଆଇ.ଆଇ.ଟି.ଏଫ୍– ୨୦୧୫ ବା ୨୦୧୫ ବାଣିଜ୍ୟ ମେଳାର ଥିମ୍ ବା ବିଷୟବସ୍ତୁ ରହିଛି 'ଭାରତରେ ତିଆରି' ବା 'Make in India' । ବିଗତ ୧୯୮୦ ମସିହାରୁ ଆରମ୍ଭ ହୋଇଥିବା ଏହି ବିରାଟ ବାଣିଜ୍ୟ ମେଳାଟି ପ୍ରତିବର୍ଷ ଭାରତ ସରକାରଙ୍କ ବାଣିଜ୍ୟ ଓ ଶିଳ୍ପ ମନ୍ତ୍ରାଳୟ ଅନ୍ତର୍ଗତ ଭାରତ ବାଣିଜ୍ୟ ଉନ୍ନୟନ ସଂସ୍ଥା (India Trade Promotion Organization)ଙ୍କ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇ ଆସୁଛି । ଭାରତ ସରକାରଙ୍କ ପକ୍ଷରୁ ଏହି ସଂସ୍ଥା ମେଳାର ଆୟୋଜିତ ସକାଶେ ସମୁଦାୟ ଦାୟିତ୍ୱ ବହନ କରିଆସୁଛି । ସେହିପରି ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗର ମଧ୍ୟସ୍ଥତାରେ ବିଭିନ୍ନ ବାଣିଜ୍ୟିକ ଓ ଶୈଳ୍ପିକ କାରବାର କରୁଥିବା ବିଭାଗ ବା ଏହାର ପ୍ରତ୍ୟକ୍ଷ ବା ପରୋକ୍ଷ ଅଧୀନରେ ଥିବା ଶିଳ୍ପ ସଂସ୍ଥାଗୁଡିକ ଏହି ମେଳାରେ ସାମିଲ ହୋଇଥାନ୍ତି । ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ, ଶିଳ୍ପ ବିଭାଗ ପ୍ରଭୃତିର ଅଧିକାଂଶ ଶିଳ୍ପୋଦ୍ୟୋଗୀ ଏଥିରେ ସାମିଲ ହୋଇଥିବା ଦେଖାଯାଇଥାଏ । ଖଦୀ ବୋର୍ଡ, ହସ୍ତତନ୍ତ, ବୟନ ଓ ହସ୍ତଶିଳ୍ପ ବିଭାଗ ଓ ପର୍ଯ୍ୟଟନ ବିଭାଗ ମଧ୍ୟ ଏହି ମେଳାରେ ସାମିଲ ହୋଇଥାଏ । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ପରାମର୍ଶକ୍ରମେ ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗର ମନ୍ତ୍ରୀ ଶ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ ନେତୃତ୍ୱରେ ବିଭାଗୀୟ ଶାସନ ସଚିବ ଶ୍ରୀ ମନୋରଞ୍ଜନ ପାଣିଗ୍ରାହୀ ଓ ନିର୍ଦ୍ଦେଶକ ଶ୍ରୀ ସୁଶୀଲ୍ କୁମାର ଦାସ, ଯୁଗ୍ମ ସଚିବ ଶ୍ରୀ ନିରଞ୍ଜନ ସେଠୀ ଓ ଅନ୍ୟାନ୍ୟ ଅଧିକାରୀ ଓ କର୍ମଚାରୀମାନେ ଏହି ବାଣିଜ୍ୟ ମେଳାରେ ନିର୍ମିତ ହେବାକୁ ଥିବା ଓଡ଼ିଶା ମଣ୍ଡପ ଓ ଅନ୍ୟାନ୍ୟ ଷ୍ଟଲ୍‌ଗୁଡିକର ସଫଳତା ଲାଗି ତତ୍ପରତା ପ୍ରକାଶ କରି ଆସିଛନ୍ତି । ଡକ୍ଟର ଲେନିନ୍ ମହାନ୍ତିଙ୍କ ସମ୍ପାଦନାରେ ଉଭୟ 'ଓଡ଼ିଶା ରିଭ୍ୟୁ' ଓ 'ଉତ୍କଳ ପ୍ରସଙ୍ଗ'ର ସ୍ୱତନ୍ତ୍ର ସଂଖ୍ୟା ଏହି ବାଣିଜ୍ୟ ମେଳା ଉପଲକ୍ଷେ ପ୍ରକାଶ ପାଇଥିବା ମଧ୍ୟ ଆନନ୍ଦର ବିଷୟ ।

ଉଭୟ ଦେଶ ଭିତରର ତଥା ବିଦେଶାଗତ ପର୍ଯ୍ୟଟକଙ୍କ ସମେତ ଲକ୍ଷ ଲକ୍ଷ ସାଧାରଣ ଲୋକଙ୍କ ଭିଡ ଯୋଗୁଁ ଏହି ବାଣିଜ୍ୟ ମେଳାଟି ଚଳଚଞ୍ଚଳ ହୋଇଉଠିଥାଏ । ଏହି ମେଳାରେ ସାଧାରଣତଃ ୧୦ ହଜାର ପ୍ରଦର୍ଶନକାରୀ ଅଂଶଗ୍ରହଣ କରିଥାନ୍ତି ଏବଂ ହାରାହାରି ୩୦ ଲକ୍ଷ ଲୋକଙ୍କର ସମାଗମ ହୋଇଥାଏ । ବିଭିନ୍ନ ଶିଳ୍ପୋଦ୍ୟୋଗୀ, ବାଣିଜ୍ୟ କାରବାରରେ ସମ୍ପୃକ୍ତ ବ୍ୟକ୍ତି, ସରକାରୀ ଓ ବେସରକାରୀ ଅଧିକାରୀ ଓ କର୍ମଚାରୀ ତଥା ଦେଖଣାହାରୀଙ୍କ ଗହଣରେ ପ୍ରଗତି ମଇଦାନ ବେଶ୍ ମୁଖରିତ ହୋଇ ଉଠିଥିବା ପରିଲକ୍ଷିତ ହୋଇଥାଏ । ସନ୍ଧ୍ୟା ସମୟରେ ବିଭିନ୍ନ ପ୍ରଦର୍ଶନୀ ମଣ୍ଡପର ଆକର୍ଷଣୀୟ ଆଲୋକ ସଜ୍ଜା, ବିଭିନ୍ନ

ସାମଗ୍ରୀର ବିକ୍ରୀବଟା ଓ ପରିବେଷିତ ସ୍ୱାଦଯୁକ୍ତ ଖାଦ୍ୟ ସାମଗ୍ରୀ ବାସ୍ତବିକ ଉପଭୋଗ୍ୟ ବୋଲି ମନେ ହୋଇଥାଏ ।

ନୂଆଦିଲ୍ଲୀର କେନ୍ଦ୍ର ସ୍ଥଳରେ ଅବସ୍ଥିତ ଏହି ପ୍ରଗତି ମଇଦାନର ପଶ୍ଚିମପଟେ ରହିଛି ମଥୁରା ରୋଡ୍ ଓ ଦକ୍ଷିଣ ପଟେ ରହିଛି ଭାଇରୋନ୍ ରୋଡ୍ । ଏହାର ପୂର୍ବ ଦିଗରେ କେନ୍ଦ୍ରୀୟ ଓ ଦକ୍ଷିଣ ରେଳବାଇ ଯାହାକି ଦିଲ୍ଲୀର ବିରାଟ ରେଳବାଇ ରହିଛି ଓ ସନ୍ନିକଟରେ ଥିବା ମେଟ୍ରୋ ରେଳବାଇର ଉପସ୍ଥିତି ମଧ୍ୟ ପ୍ରଗତି ମଇଦାନକୁ ଯାତାୟାତ କ୍ଷେତ୍ରରେ ଅଧିକ ସୁବିଧାଜନକ ସ୍ଥିତିରେ ରଖିପାରିଛି ।

ଏହି ଅନ୍ତର୍ଜାତୀୟ ବାଣିଜ୍ୟ ମେଳା ସଂକ୍ରାନ୍ତରେ ବିଭିନ୍ନ ଗଣ ଯୋଗାଯୋଗ ମାଧ୍ୟମରେ ଆୟୋଜକମାନେ ମଝିରେ ମଝିରେ ସୂଚନା ପ୍ରଦାନ କରି ଆସୁଛନ୍ତି । ଯାହା ଜଣାଯାଇଛି, ଚଳିତ ନଭେମ୍ବର ୧୪ରୁ ୨୭ ତାରିଖ ପର୍ଯ୍ୟନ୍ତ ୧୪ଦିନ କାଳ ଏହି ବିରାଟ ମେଳାରେ କେବଳ ମାତ୍ର ବ୍ୟବସାୟିକ ଦିବସ ଭାବେ ପାଞ୍ଚଟି ଦିବସ ଅର୍ଥାତ ନଭେମ୍ବର ୧୪ରୁ ୧୮ ତାରିଖ ଯାଏଁ ଧାର୍ଯ୍ୟ କରାଯାଇଛି । ସେହିପରି ସର୍ବସାଧାରଣଙ୍କ ଦିବସ ଭାବେ ନଅଟି ଦିବସ ଅର୍ଥାତ୍ ନଭେମ୍ବର ୧୯ରୁ ୨୭ ତାରିଖ ପର୍ଯ୍ୟନ୍ତ ନିଧାର୍ଯ୍ୟ ହୋଇଛି । ପୁଣି ବ୍ୟବସାୟିକ ପରିଦର୍ଶକମାନଙ୍କ ସକାଶେ ଦିନକ ପାଇଁ ୪୦୦ ଟଙ୍କା ମୂଲ୍ୟରେ ଟିକେଟ୍ ବିକ୍ରୀ ପାଇଁ ବ୍ୟବସ୍ଥା କରାଯାଇଥିବା ବେଳେ ନଭେମ୍ବର ୧୪ରୁ ୨୭ ତାରିଖ ଯାଏଁ ସିଜନାଲ୍ ଟିକେଟ୍ର ମୂଲ୍ୟ ୧୫୦୦ ଟଙ୍କା ରଖାଯାଇଛି । ପ୍ରତିଟି କାର୍ଯ୍ୟ ଦିବସରେ ପ୍ରତ୍ୟେକ ସାଧାରଣ ବ୍ୟକ୍ତି ଜଣଙ୍କର ପ୍ରବେଶ ପାଇଁ ଦିନଟା ଯାକର ଟିକେଟ୍ ମୂଲ୍ୟ ୫୦ ଟଙ୍କା ରଖାଯାଇଥିବା ବେଳେ ପ୍ରତି ଶନିବାର, ରବିବାର ଓ ଛୁଟିଦିନଗୁଡିକ ପାଇଁ ଟିକେଟ୍ର ମୂଲ୍ୟ ୮୦ ଟଙ୍କା ଧାର୍ଯ୍ୟ ହୋଇଛି । ପ୍ରତ୍ୟେକ କାର୍ଯ୍ୟ ଦିବସମାନଙ୍କରେ ୧୨ବର୍ଷ ବୟସରୁ କମ୍ ଶିଶୁଙ୍କ ଲାଗି ପ୍ରତ୍ୟେକ ଟିକେଟ୍ର ମୂଲ୍ୟ ୩୦ ଟଙ୍କା ରଖା ଯାଇଥିବା ବେଳେ ପ୍ରତି ଶନିବାର, ରବିବାର ଓ ଛୁଟିଦିନମାନଙ୍କରେ ସେହି ଟିକେଟ୍ର ମୂଲ୍ୟ ୫୦ ଟଙ୍କା ରଖାଯାଇଛି । କୌଣସି ଅଗ୍ରୀମ ଟିକେଟ୍ର ବିକ୍ରୟ ବ୍ୟବସ୍ଥା ଏହି ବାଣିଜ୍ୟ ମେଳାରେ କରାଯାଇ ନାହିଁ । ଅବଶ୍ୟ ୫୦ ବର୍ଷ ବୟସ ବା ତଦୂର୍ଦ୍ଧ୍ୱ ବୟସର ବ୍ୟକ୍ତି ବା ଭିନ୍ନକ୍ଷମ ବ୍ୟକ୍ତିଙ୍କ ସକାଶେ ଏହି ମେଳାରେ କୌଣସି ଟିକେଟ୍ର ମୂଲ୍ୟ ଦେବାକୁ ପଡିବ ନାହିଁ । ଏଥିପାଇଁ ପ୍ରମାଣପତ୍ର (ଫଟୋସହ) ବାଣିଜ୍ୟ ମେଳାର ପ୍ରବେଶ ପଥରେ ପ୍ରଦର୍ଶନ କରିବାକୁ ପଡିବ । ମିଳିଥିବା ସୂଚନାରୁ ଜଣାଯାଇଛି ଯେ ସର୍ବସାଧାରଣଙ୍କ ପ୍ରବେଶ ପାଇଁ ଏହି ମେଳା ପୂର୍ବାହ୍ନ ୯ଟା ୩୦ରୁ ସନ୍ଧ୍ୟା ୭ଟା ୩୦ ପର୍ଯ୍ୟନ୍ତ ଖୋଲାଯିବାର ବ୍ୟବସ୍ଥା କରାଯାଇଛି । ଗାଡି ରଖିବାକୁ ହେଲେ ଭାଇରନ୍ ରୋଡ୍ ନିକଟରେ ୪୦୦ ଟଙ୍କାର ପ୍ରବେଶିକା ଦେୟ ଏବଂ ହାଲୁକା ଗାଡିଗୁଡିକ ରଖିବା ପାଇଁ ୧୫୦ ଟଙ୍କାର ପ୍ରବେଶିକା ମୂଲ୍ୟ ଦେବାକୁ ପଡିବ । ସେହିପରି ଦୁଇଚକିଆ ଗାଡିଗୁଡିକ ପାଇଁ ୭୫ ଟଙ୍କା ଓ ସାଇକେଲ ପାଇଁ ମାତ୍ର ୫ଟଙ୍କା ଦେୟ ଦବାକୁ ପଡିବ । ପ୍ରତ୍ୟେକ କାର୍ଯ୍ୟ ଦିବସରେ ସକାଳ ୯ଟାରୁ ଅପରାହ୍ନ ୪ଟା ପର୍ଯ୍ୟନ୍ତ ପ୍ରଗତି ମଇଦାନରେ ୧,୨ ଓ ୧୦ ନମ୍ବର କାଉଣ୍ଟରରେ ଟିକେଟ୍ ବିକ୍ରୟର ବ୍ୟବସ୍ଥା କରାଯାଇଥିବା ବେଳେ ପ୍ରତ୍ୟେକ ଛୁଟିଦିନମାନଙ୍କରେ ସକାଳ ୯ଟାରୁ ଅପରାହ୍ନ ୨ଟା ପର୍ଯ୍ୟନ୍ତ ଟିକେଟ୍ କାଉଣ୍ଟରଗୁଡିକ ଖୋଲା ରହିବାର ବ୍ୟବସ୍ଥା ହୋଇଛି ।

ଆଇ.ଆଇ.ଟି.ଏଫ୍– ୨୦୧୫ର ବିଷୟବସ୍ତୁ ଏଥର 'Make in India' ବା 'ଭାରତରେ ତିଆରି' ରଖାଯାଇଛି । ଗତ ବର୍ଷ ୨୦୧୪ରେ ଏହି ବାଣିଜ୍ୟ ମେଳାର ବିଷୟବସ୍ତୁ ଥିଲା 'ମହିଳା ଶିଳ୍ପୋଦ୍ୟୋଗୀ' । ଗତବର୍ଷ ୨୦୧୪ ସେପ୍ଟେମ୍ବର ୨୫ରେ ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦି ଯେଉଁ 'ମେକ୍ ଇନ୍ ଇଣ୍ଡିଆ' ବା 'ଭାରତରେ ତିଆରି' କାର୍ଯ୍ୟକ୍ରମର ଶୁଭାରମ୍ଭ କରିଥିଲେ, ତାଙ୍କ ବିଦେଶ ଗସ୍ତ କାଳରେ ଏହି କାର୍ଯ୍ୟକ୍ରମକୁ ମଧ୍ୟ ମୁଖ୍ୟ କାର୍ଯ୍ୟକ୍ରମ ଭାବେ ଗ୍ରହଣ କରିଥିଲେ । ସେହି କାର୍ଯ୍ୟକ୍ରମ ଆଧାରରେ ଏଥର ଆଇ.ଆଇ.ଟି.ଏଫ୍ର ବିଷୟବସ୍ତୁ ନିର୍ଣ୍ଣିତ ହୋଇଛି । ଏହି ବାଣିଜ୍ୟ ମେଳାରେ ଭାରତୀୟ ବିଭିନ୍ନ କମ୍ପାନୀଗୁଡିକ ସମେତ ବହୁ ରାଷ୍ଟ୍ରୀୟ କମ୍ପାନୀଗୁଡିକ ମଧ୍ୟ ଭାରତରେ ସେମାନଙ୍କ ଉତ୍ପାଦନକୁ ଜାରି ରଖିବେ ଏବଂ ପ୍ରତ୍ୟକ୍ଷ ବିଦେଶୀ ପୁଞ୍ଜି ବିନିଯୋଗ ଜରିଆରେ ଚାଇନା ଓ ଯୁକ୍ତରାଷ୍ଟ୍ର ଆମେରିକାକୁ ଅତିକ୍ରମ କରିବା ଲକ୍ଷ୍ୟରେ ଭାରତରେ ତିଆରି ବା ଭାରତରେ ଉତ୍ପାଦନ କାର୍ଯ୍ୟକ୍ରମକୁ ବଜାୟ ରଖିବାର ବ୍ୟବସ୍ଥା ଯାହା ହେଉଛି, ସେସବୁର ପ୍ରତିଫଳନ ଏହି ବାଣିଜ୍ୟ ମେଳାରେ ପ୍ରଦର୍ଶିତ ହେଉଛି ।

ଗତ ବର୍ଷର ବାଣିଜ୍ୟ ମେଳାରେ ଭାରତର ସମସ୍ତ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳଗୁଡିକ ସମେତ ୨୫ଗୋଟି ରାଷ୍ଟ୍ରର ୨୯୯ ଗୋଟି ବିଦେଶୀ କମ୍ପାନୀ ଅଂଶଗ୍ରହଣ କରିଥିଲେ । ପ୍ରାୟ ଏକ ନିୟୁତ ଦର୍ଶକଙ୍କ ସମାଗମ ହୋଇଥିଲା । ଏଥର ଦର୍ଶକଙ୍କ ସଂଖ୍ୟା ଅନୁକୂଳ ପାଗ କାରଣରୁ ବୃଦ୍ଧି ପାଇବ ବୋଲି ଆଶା କରାଯାଉଛି ।

କ୍ୱାର୍ଟର ନଂ ଭିଏ, ୨୯/୩, ୟୁନିଟ୍–୨
ଭୁବନେଶ୍ୱର–୭୫୧୦୦୯

# କାର୍ତ୍ତିକ ପୂର୍ଣ୍ଣିମା, ବୋଇତ ବନ୍ଦାଣ ଓ ଉତ୍କଳୀୟ ନୌବାଣିଜ୍ୟ

ଅଧ୍ୟାପକ ରବୀନ୍ଦ୍ର କୁମାର ବେହୁରିଆ

ଧର୍ମୀୟ ଧାରଣା ଓ ପୌରାଣିକ ପ୍ରାସଂଗିକତା ସହିତ କାର୍ତ୍ତିକ ପୂର୍ଣ୍ଣିମାର ଐତିହାସିକ ତାତ୍ପର୍ଯ୍ୟ ମଧ୍ୟ ଓଡ଼ିଶାର ସାଂସ୍କୃତିକ ଜୀବନ କ୍ଷେତ୍ରରେ ସୁଦୀର୍ଘ କାଳରୁ ଉପଲବ୍ଧ । ଏହି ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା ଆମକୁ ସ୍ମରଣ କରାଇଦିଏ ପ୍ରାଚୀନ ଉତ୍କଳର ସୁସମୃଦ୍ଧ ସାଧବ ସଂସ୍କୃତି ଓ ବର୍ଣ୍ଣାଢ଼୍ୟ ବୋଇତ ବନ୍ଦାଣ ପରମ୍ପରାର ଦୃଢ଼ ଗୌରବଗାଥା ।

କାର୍ତ୍ତିକ ପୂର୍ଣ୍ଣିମା ଓଡ଼ିଆ ଘରର ଏକ ଶ୍ରେଷ୍ଠ ପର୍ବ । ଓଡ଼ିଆ 'ଆ, କା, ମା, ବୈ' ଚାରିମାସକୁ ଧର୍ମମାସ ବୋଲି ମାନେ । 'ଆ, କା, ମା, ବୈ' – ପାନ ଗୁଆ ଥୋଇ– ପାନ ଗୁଆ ତୋ'ର– ମାସକ ଧରମ ମୋ'ର ଶବ୍ଦରେ ମୁଖରିତ ହୋଇଉଠେ ତୁଠବାଟ । ପାନ ଗୁଆ ବଦଳରେ ମାସକ ଯାକର ପୁଣ୍ୟ ଆଶା କରନ୍ତି ସଭିଏଁ । ସମ୍ଭବତଃ ଓଡ଼ିଶା ହେଉଛି ଏକମାତ୍ର ରାଜ୍ୟ ଯେଉଁଠି ଆବାଳବୃଦ୍ଧବନିତା ଧର୍ମ ପାଳନ କଲାଭଳି ନଦୀ ଓ ଜଳାଶୟମାନଙ୍କୁ ବର୍ତ୍ତିକା ସମନ୍ୱିତ ବୋଇତ ବନ୍ଦାଣ ଦ୍ୱାରା ଆଲୋକିତ କରିଥାନ୍ତି । ବିଶ୍ୱର ଲୋକ ସଂସ୍କୃତିରେ ଏହି ଲୋକାଚାରର ତୁଳନା ନାହିଁ ।

ପଞ୍ଚଦଶ ଶତାବ୍ଦୀରେ କବି ସାରଳା ଦାସ ମହାଭାରତର ଆଦି ପର୍ବରେ କୁନ୍ତୀ ଓ ପାଣ୍ଡୁଙ୍କ ବିବାହ ପ୍ରସଙ୍ଗ ଉଲ୍ଲେଖ କରିବାକୁ ଯାଇ କହିଛନ୍ତି –

କାର୍ତ୍ତିକ ମାସ ଶୁକ୍ଳ ପକ୍ଷ ବୁଧବାର ଯେ ପୂର୍ଣ୍ଣମୀ
ଆ କା ମା ବୈ ସ୍ନାହାନ ଦିନ ଗଙ୍ଗାକୁ ଗଲେ –
କୁନ୍ତ ଭୋଜ ସ୍ୱାମୀ ।
ସେହି ଗଙ୍ଗା ସ୍ନାହାନକୁ ଭୀଷ୍ମେ ଯେ ଅଇଲେ
କୁନ୍ତ ଭୋଜ ରାଜା ସଙ୍ଗେ ମଇତ୍ର ହୋଇଲେ ।

ମଧ୍ୟଯୁଗୀୟ କବି ଉପେନ୍ଦ୍ର ଭଞ୍ଜଙ୍କ ପ୍ରସିଦ୍ଧ 'ଲାବଣ୍ୟବତୀ' କାବ୍ୟରେ ଏହି ବୋଇତ ବନ୍ଦାଣର ଉଲ୍ଲେଖ ରହିଛି ।

ବୋଇତ ଲାଗିଲା ଆସି ସିଂହଳ ଦ୍ୱୀପରେ
ସାଧବ ଯୁବତୀମାନେ ଅତି ପ୍ରମୋଦରେ
ଗଲେ ବୋଇତ ବନ୍ଦାଇ
ଅର୍ଘ୍ୟଥାଳି କରେ ସର୍ବେ ହୁଳହୁଳି ଦେଇ ।

ସାରଳା ସାହିତ୍ୟର ରଚନାମାନଙ୍କରେ ସାରଳା ଦାସ ଯେଉଁ ଓଡ଼ିଆ ସଂସ୍କୃତିର ବିବରଣୀମାନ ଦେଇଯାଇଛନ୍ତି ସେଥିରେ ଆ



କା ମା ବୈ କଥା ଉଲ୍ଲେଖ ହୋଇଛି । ଆ କା ମା ବୈ ର ଅର୍ଥ କହିବାକୁ ଯାଇ କେତେକ କହିଛନ୍ତି – ଆଷାଢ଼ଠାରୁ କାର୍ତ୍ତିକ ପର୍ଯ୍ୟନ୍ତ ଯେଉଁ ବର୍ଷା ଓ ସାମୁଦ୍ରିକ ଝଡ଼ ସବୁ ଆସିଥାଏ, ତାହାକୁ ଆମେ ଭ୍ରୂକ୍ଷେପ କରୁନା । ସେ ଯାହା ହେଉ ନା କାହିଁକି କାର୍ତ୍ତିକ ପୂର୍ଣ୍ଣିମାର ଡଙ୍ଗାଭସା ପର୍ବ ଯେ ଉତ୍କଳର ତତ୍‌କାଳୀନ ନୌ–ବାଣିଜ୍ୟର ସଙ୍କେତ ଏଥିରେ ଦ୍ୱିମତ ହେବାର ନାହିଁ ।

◆◆◆

କାର୍ତ୍ତିକ ଯେ ପୁଣ୍ୟ ବ୍ରତର ମାସ ଏଥିରେ ସନ୍ଦେହ ନାହିଁ । ଏହି ମାସର ପ୍ରଧାନ କର୍ମ, ପ୍ରାତଃସ୍ନାନ, ଜପ ଓ ହବିଷ । ଏହି ତ୍ରିକର୍ମର ସମ୍ମିଶ୍ରଣ ହିଁ କାର୍ତ୍ତିକ ବ୍ରତ । ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏହି ପାଞ୍ଚଦିନକୁ ବକ ପଞ୍ଚକ ବୋଲି କୁହାଯାଏ । ଏହି ପାଞ୍ଚଦିନ ଗ୍ରାମମାନଙ୍କରେ ରାସ ପାଳନ କରାଯାଏ । ପୁଷ୍କରିଣୀ ନିକଟରେ ଚଉରା ନିର୍ମିତ ହୋଇ ଲିପାପୋଛା ହୁଏ । ତା' ଉପରେ ପଞ୍ଚ ବର୍ଣ୍ଣର ମୁରୁଜ ପଡ଼େ । ଗ୍ରାମ୍ୟ କିଶୋରୀ ଅରୁଆ ଚାଉଳ, କଦଳୀ ଆଉ ଗୁଡ଼ର ଭୋଗକରି ଚଉରା ନିକଟରେ ଗୀତ ବୋଲେ । ରାମ ସଙ୍ଗେ ସୀତା ଖେଳନ୍ତି ଯୁବା ଚଉଦ ମୁଠି, ତିନି ମୁଠା ଯୁବା ସରିଲା, ରାମ ହୋଇଲେ ଠିଆ ଇତ୍ୟାଦି ତାଳହୀନ ଘଣ୍ଟାବାଦ୍ୟ ସହ ଗୀତ ସରେ । ଭୋଗ ବାଣ୍ଟି ଓଷେଇତି ଘରକୁ ଫେରେ । ସ୍ଥାନେ ସ୍ଥାନେ ଏହି ପାଞ୍ଚ ଦିନ କୌଣସି ସ୍ଥାନରେ ସମଗ୍ର ମାସଟି ଚଉରା ପାଖରେ ଆକାଶ ଦୀପ ବସେ । ସନ୍ଧ୍ୟାବେଳେ ବ୍ରାହ୍ମଣ ଭୋଗ କରନ୍ତି । ଛିଦ୍ରଯୁକ୍ତ ଠେକିରେ ଥିବା ଦୀପକୁ ଲଗାଇ ବାଉଁଶରେ ବନ୍ଧାଯାଇଥିବା ଦଉଡ଼ି ସହାୟତାରେ ଠେକିକୁ ଉପରକୁ ଉଠାନ୍ତି । ଉକ୍ତ ଦୀପାଲୋକ ମୁଖ୍ୟତଃ ପିତୃ ପୁରୁଷଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ । କାରଣ ଦୀପାବଳି ଅମାବାସ୍ୟା ଦିନ କାଉଁରିଆ କାଠି ଜାଳି ଉପରକୁ ଉଠାଇ ସେମାନେ ଗାଇଥାନ୍ତି – ବଡ଼ ବଡ଼ିଆ ହୋ ଅନ୍ଧାରେ ଆସ, ଆଲୁଅରେ ଯାଅ ।

କାର୍ତ୍ତିକ ମାସର ବିଶିଷ୍ଟ ଆକର୍ଷଣ ହେଲା ଚକୁଳିଆ ପଣ୍ଡାଙ୍କ ଗାଁ ଭ୍ରମଣ । ମୁଣ୍ଡରେ ତାଳ ପତ୍ରର ଛତା । ହାତରେ କୌଣସି ବାସନ ଭିକ୍ଷା ନେବା ଉଦ୍ଦେଶ୍ୟରେ ଧରାଯାଇଥାଏ । ଏମାନେ ଜଣେ ଜଣେ ଆଶୁକବି । ପରିସ୍ଥିତି ତଥା ପରିବେଶକୁ ଲକ୍ଷ୍ୟକରି ଗୀତ ବୋଲିଥାନ୍ତି । ପ୍ରାଚୀନ ପୌରାଣିକ ଘଟଣାର ସୂଚନା ଏହି ଗୀତମାନଙ୍କରେ ଥିବାରୁ ଶ୍ରୋତାର ଜ୍ଞାନର ବିକାଶ ମଧ୍ୟ କେତେକ ପରିମାଣରେ ହୋଇଥାଏ ।

ଦେଲେ ନେବେ, ଡାକିଲେ ଚାହିଁବେ
ନୋହିଲେ କାହାକୁ କିଛି ନ କହି ଫେରିଯିବେ
ଆହେ ଆପଣେ, ଆହେ ଆପଣେ
ଧର୍ମରୁ ରାମଚନ୍ଦ୍ର ଲଙ୍କାକଲେ ଜୟେ
ଅଧର୍ମରୁ ରାବଣର ବଂଶ କ୍ଷୟେ । ଆହେ ଆପଣେ
ଦେଇଥିଲେ ପାଇ ବୁଣିଥିଲେ ଦାଇ
ପଡ଼ିଆ ଭୂମିରେ ଗୋଧନ ଚରାଇ ହେ
ଦାତା ଧନ, ଦେବତା ବ୍ରାହ୍ମଣ
ଅଦାତା ଧନ, ଅଗ୍ନିରେ ଦହନ
ବଳିଦାତା, କର୍ଣ୍ଣଦାତା, ମୋକ୍ଷଦାତା ଜନାର୍ଦ୍ଦନ
ଆହେ ଆପଣେ କାହାରି ଭାଗ୍ୟରେ ଥିବ
ଆଜି ବ୍ରାହ୍ମଣକୁ ଦାନ ଦେବହେ
ଦାତାଘର ଝିଅପୁଅ ଦାଣ୍ଡେ ଯାଚିଦେବ,
ହେଳା ନ କରିବ ଇତ୍ୟାଦି ।

ଓଡ଼ିଶା ଇତିହାସ ପ୍ରାଚୀନ ଓ ଗୌରବମୟ । କଳା, ସାହିତ୍ୟ, ସଂସ୍କୃତି, ଦର୍ଶନ ଓ ବାଣିଜ୍ୟରେ ଏହା ଦିନେ ସମଗ୍ର ପୃଥିବୀରେ ଶୀର୍ଷ ସ୍ଥାନ ଅଧିକାର କରିଥିଲା । ଏଣୁ ପ୍ରତ୍ୟୁକ୍ତି ଅଛି– ଉତ୍କଳସ୍ୟ ସମଦେଶ ଦେଶନାସ୍ତି ମହୀତଳେ ।

ତତ୍‌କାଳୀନ ଓଡ଼ିଆ ଜାତିର ପ୍ରାଣଥିଲା ବାଣିଜ୍ୟ ବୋଇତ । ଓଡ଼ିଆ ସାଧବ ପୁଅ ଜାଭା, ବୋର୍ଣ୍ଣିଓ, ସୁମାତ୍ରା ଆଦି ଦ୍ୱୀପପୁଞ୍ଜକୁ ବାଣିଜ୍ୟ କରିବାକୁ ଯାଉଥିଲା । ତାରକସି କାମ, ପିତଳ ବାସନ, ହାତୀଦାନ୍ତ ନିର୍ମିତ ପଦାର୍ଥର ଯଥେଷ୍ଟ ଆଦର ଥିଲା । କାର୍ତ୍ତିକ ମାସ ପୂର୍ଣ୍ଣିମାରେ ସାଧବ ପୁଅମାନେ ବୋଇତରେ ନାନାବିଧ ସାମଗ୍ରୀ ବୋଝେଇ କରି ଯାତ୍ରା ଆରମ୍ଭ କରୁଥିଲେ, ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ବୈତରଣୀ, ବ୍ରାହ୍ମଣୀ, ମହାନଦୀ, ଋଷିକୂଲ୍ୟା ପ୍ରଭୃତି ନଦୀ ମୁହାଣରୁ । ସାଧବପୁଅର ବୋଇତ ଯାତ୍ରାର ସ୍ମରଣ ଉଦ୍ଦେଶ୍ୟରେ ଡଙ୍ଗାଭସା ପର୍ବ । ଶଙ୍ଖ ହୁଳହୁଳି ସହ ବୋଇତ ବନ୍ଦାଇ ବୋଇତରେ ଅଝାଳ ଦଉଡ଼ି ସାଧବ ପୁଅମାନଙ୍କ ହାତରେ ଧରାଇଦେଇ ଆନନ୍ଦ ଚିତ୍ତରେ ବିଦାୟ ନେଉଥିଲେ ସାଧବ ବୋହୂମାନେ ।

ଅତୀତର ଉତ୍କଳ ଏକ ବନ୍ଦର ରାଜ୍ୟ ଥିଲା । ବିଶିଷ୍ଟ ପରିବ୍ରାଜକ ଫାୟିଆନ୍ ତାମ୍ରଲିପି ବନ୍ଦରର ପ୍ରସିଦ୍ଧି ସଂପର୍କରେ ବିଶଦ୍ ବିବରଣୀ ପ୍ରଦାନ କରିଛନ୍ତି । ଗ୍ରୀକ୍ ଐତିହାସିକମାନଙ୍କ ମତରେ ପ୍ରଥମ ଦ୍ୱିତୀୟ ଶତାବ୍ଦୀରେ ଭାରତର ନଅଗୋଟି ବନ୍ଦର ମଧ୍ୟରୁ କେବଳ କଳିଙ୍ଗ ଉପକୂଳରେ ପାଞ୍ଚୋଟି ବନ୍ଦର ବିଶେଷ ଉଲ୍ଲେଖଯୋଗ୍ୟ ଥିଲା । ଏହି ବନ୍ଦରମାନଙ୍କରୁ ସୁଦୂର ଜାଭା, ବୋର୍ଣ୍ଣିଓ, ବାଲି, ମାଳୟ, ସିଙ୍ଗାପୁର, ଶ୍ୟାମ, କମ୍ବୋଡ଼ିଆ ପ୍ରଭୃତି ଦେଶ ସହିତ ବାଣିଜ୍ୟ ଚାଲୁଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଟୋଲେମୀଙ୍କ ଭୂଗୋଳରେ ଓଡ଼ିଶା ଉପକୂଳରେ ଯେଉଁ ବନ୍ଦରମାନଙ୍କ ନାମକରଣ କରାଯାଇଛି, ସେଗୁଡ଼ିକ ହେଲେ– ନବିଗେନ୍ (ପୁରୀ), କଟିମର୍ଦ୍ଦକ (କଟକ), କୋଣଗର (କୋଣାର୍କ), କୋଶମ୍ଭ (ବାଲେଶ୍ୱର) ଓ କଳିଙ୍ଗନଗର । ଐତିହାସିକମାନେ କଳିଙ୍ଗର ବିଭିନ୍ନ ବନ୍ଦର ବିଷୟରେ ଆଲୋଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରୁ କୋଣଗର, କଟିମର୍ଦ୍ଦକ, ପାଲୁର,

ଅଫେଟେରିୟାନ, ତାମ୍ରଲିପି, ସୁବର୍ଣ୍ଣରେଖା, ନରେଖା, ମଦନ, ସାରଗୋ, ଛନୁୟ, ବାଲେଶ୍ୱର, କୋଇଛନପୁର, ଚୁଡ଼ାମନ, ଧାମରା ପ୍ରଭୃତି ଉଲ୍ଲେଖଯୋଗ୍ୟ । ସପ୍ତାଦଶ ଶତାବ୍ଦୀ ପରେ ହରିହରପୁର, ହରିଶପୁର, ହକିଟୋଲା, ବତୀଘର, ଚାନ୍ଦବାଲି, ପୁରୀ, ଚିଲିକା ପ୍ରଭୃତି ବନ୍ଦରର ବର୍ଣ୍ଣନା ରହିଛି ।

ଉତ୍କଳୀୟ ନୌ-ବାଣିଜ୍ୟ ସଂପର୍କରେ ଅତୀତର ବହୁ ପ୍ରସିଦ୍ଧ ପରିବ୍ରାଜକ ଏବଂ ସୁଧୀ ପ୍ରାଜ୍ଞ-ପଣ୍ଡିତମାନଙ୍କ ବିବରଣୀ ଆଜି ବି ଚମତ୍କୃତ କରେ ଓଡ଼ିଆ ଜାତିକୁ । ଉତ୍କଳୀୟ ନୌ-ବାଣିଜ୍ୟର ମହାନ୍ ପରମ୍ପରା ଓ ସଂସ୍କୃତିକୁ ଉଜ୍ଜୀବିତ କରି ରଖିଥିବା ସ୍ଥାନମାନଙ୍କ ମଧ୍ୟରୁ ଚାନ୍ଦବାଲି ଓ ଚିଲିକା ଅନ୍ୟତମ । ବ୍ରାହ୍ମଣ ପୁରାଣ ମତରେ ଉତ୍କଳର ଚିଲିକା ଏକ ପ୍ରସିଦ୍ଧ ବନ୍ଦର ଥିଲା । ଚିଲିକା ହ୍ରଦରୁ ଚୀନ୍, ସିଂହଳ, ମାଳୟ ଆଦି ଦେଶକୁ ଯାତାୟାତ କରୁଥିବାର ପ୍ରମାଣ ପୁରାଣରୁ ମିଳେ । ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' ରେ ନୌକାର ବିଭିନ୍ନ ନାମ ଏକ ତାଳପତ୍ର ପୋଥିରେ ବୋଇତର ଆକାର ପ୍ରକାର, ଗମନ କୁଶଳତା ବିଷୟରେ ବିଶଦ ବିବରଣୀ ଦିଆଯାଇଛି । ଏହି ପୋଥିରେ ମଧ୍ୟ ଚିଲିକା ହ୍ରଦରେ ବୋଇତ ଚାଳନା, ଜାଭା, ମାଳୟ, ସିଂହଳ ଦ୍ୱୀପ ପ୍ରଭୃତି ସହ କଳିଙ୍ଗର ବାଣିଜ୍ୟ ସଂପର୍କରେ ଲିପିବଦ୍ଧ ହୋଇଛି ।

ପ୍ରଥମ ଶତାବ୍ଦୀରେ ଲିଖିତ ପ୍ଲିନିଙ୍କ ପୁସ୍ତକରେ ଥିବା 'ଚେ – ଲି – ତା – ଲୋ' ଆଜିର ଚାନ୍ଦବାଲି ବୋଲି ଅନୁମେୟ । ଐତିହାସିକ ହଣ୍ଟର ସାହେବଙ୍କ ଓଡ଼ିଶା (୧୮୭୨) ପୁସ୍ତକରୁ ତତ୍‌କାଳୀନ ଓଡ଼ିଶାରେ ସୁବର୍ଣ୍ଣରେଖା, ଛନୁଆ, ବାଲେଶ୍ୱର, ଲଇଛଣପୁର, ଚୂଡ଼ାମଣି ଧାମରା, ଫଲ୍‌ସ ଫଏଣ୍ଟ, ପୁରୀ ଓ ଗୋପାଳପୁର ପ୍ରଭୃତି ନଅଗୋଟି ବନ୍ଦରର ବର୍ଣ୍ଣନା ମିଳେ । ଏସ୍.ଏଲ୍.ମେଡ଼େକ୍କୁ ତାଙ୍କ ଓଡ଼ିଶା ପ୍ରଦେଶ ଅନୁଧ୍ୟାନ ଏବଂ ବନ୍ଦୋବସ୍ତ (୧୮୯୦-୧୯୦୦) ବିବରଣୀରେ ଚାନ୍ଦବାଲି ବନ୍ଦରର ଅବସ୍ଥିତି ଓ ପ୍ରାଧାନ୍ୟ ସଂପର୍କରେ ବିଶଦ ବ୍ୟାଖ୍ୟା କରିଯାଇଛନ୍ତି । କମିଶନର ରେଭେନ୍‌ସାଙ୍କ ୧୮୭୭ ମସିହା ପରିଦର୍ଶନ ବିବରଣୀରୁ ଜଣାଯାଏ ଯେ ବାଣିଜ୍ୟ କାରବାରରେ ଚାନ୍ଦବାଲି ବନ୍ଦର ବିଶେଷ ପ୍ରସାର ଲାଭ କରିଥିଲା । ଏହା ଏକ ପ୍ରାକୃତିକ ନଦୀ ବନ୍ଦର ରୂପେ ଖ୍ୟାତି ଅର୍ଜନ କରିଥିଲା ।

ସ୍ୱାଧୀନୋତ୍ତର ଭାରତବର୍ଷରେ କଳିଙ୍ଗ ନବ ରୂପାନ୍ତର ଓଡ଼ିଶାରେ ପୂର୍ବଭଳି ଅଧିକ ବନ୍ଦର ନାହିଁ । ବର୍ତ୍ତମାନ ଓଡ଼ିଶା ଉପକୂଳରେ ବନ୍ଦର କହିଲେ ପ୍ରଥମେ ପାରାଦୀପ ଓ ଦ୍ୱିତୀୟରେ ଗୋପାଳପୁରକୁ ଗ୍ରହଣ କରାଯାଇଛି ।

ସୂଚନାଯୋଗ୍ୟ ଯେ, ଧାମରା ବନ୍ଦର ନିର୍ମାଣ ପାଇଁ ୧୯୯୭ ମସିହା ଏପ୍ରିଲ ୨ ତାରିଖରେ ଓଡ଼ିଶା ସରକାର ଓ ସିଂହାପୁରସ୍ଥିତ ଆନ୍ତର୍ଜାତିକ ସିଂପୋର୍ଟ ସଂସ୍ଥା ମଧ୍ୟରେ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଥିଲା । ସେହି ଅନୁଯାୟୀ ୧୯୯୮ ମସିହା ଏପ୍ରିଲ୍ ୨ ତାରିଖ ବନ୍ଦର ନିର୍ମାଣ ପାଇଁ ଅନୁମୋଦନ ପତ୍ର ସ୍ୱାକ୍ଷରିତ ହୋଇଛି । ସିଂହାପୁର ସ୍ଥିତ ଏହି ବହୁ ରାଷ୍ଟ୍ରୀୟ ଆନ୍ତର୍ଜାତିକ କମ୍ପାନୀ ପ୍ରଥମ ପର୍ଯ୍ୟାୟରେ ୧୨୦୦ କୋଟି ଟଙ୍କା ଓ ଦ୍ୱିତୀୟ ପର୍ଯ୍ୟାୟରେ ୧୫୦୦ କୋଟି ଟଙ୍କା ବ୍ୟୟ କରିବାର ଯୋଜନା ପ୍ରସ୍ତୁତ କରିଛି ବୋଲି ଓଡ଼ିଶା ସରକାରଙ୍କଠାରୁ ପ୍ରକାଶ । ଧାମରା ବନ୍ଦରର ଉନ୍ନତି ସହିତ ଏହାକୁ ଅଧିକ ବିସ୍ତୃତ କରିବା ଏବଂ ମାନବୃଦ୍ଧି କରିବା ଏହି ଚୁକ୍ତିର ମୂଳ ଉଦ୍ଦେଶ୍ୟ ଥିଲା । ୧୯୯୯ ମସିହା ମେ ୫ ତାରିଖରେ ଏ କମ୍ପାନୀ ଧାମରା ପୋର୍ଟ କମ୍ପାନୀକୁ ସମସ୍ତ ଦାୟିତ୍ୱ ହସ୍ତାନ୍ତର କରିଛନ୍ତି । ତେଣୁ ଓଡ଼ିଶା ସରକାର ଏ ବନ୍ଦରର ନିର୍ମାଣ କାର୍ଯ୍ୟପାଇଁ ଚାରିବର୍ଷ ସହିତ ସମୁଦାୟ ୩୪ ବର୍ଷ ପାଇଁ ଚୁକ୍ତିନାମା କରିଛନ୍ତି । ଦୀର୍ଘ ଦିନ ଧରି ଏହି ବନ୍ଦର ନିର୍ମାଣ ଦ୍ୱାରା ଜଙ୍ଗଲ ପରିବେଶ କ୍ଷତିଗ୍ରସ୍ତ ହେବ ବୋଲି ଯେଉଁ ନ୍ୟାୟିକ ସମସ୍ୟା ସୃଷ୍ଟି ହୋଇଥିଲା, ତାହା ଏବେ ସମାଧାନ ହୋଇ ଯାଇଛି । ସେ ଯାହା ହେଉନା କାହିଁକି ବନ୍ଦରର ମୁଖ୍ୟ ଯୋଜନା ଅନୁଯାୟୀ ଏହି ବନ୍ଦରରେ ଏକ ସମୟରେ ୧୩ ଗୋଟି ଜାହାଜକୁ ରଖାଯାଇ ବର୍ଥ ନିର୍ମାଣ ସହିତ ବାର୍ଷିକ ଦଶଲକ୍ଷ ମେଟ୍ରିକ୍‌ଟନ୍ ମାଲ୍ ପରିବହନ କରାଯିବାର ଲକ୍ଷ୍ୟ ରଖାଯାଇଛି ।

ବର୍ତ୍ତମାନ ଏହି ମୁଖ୍ୟ ଯୋଜନାର ରୂପରେଖକୁ ଚୂଡ଼ାନ୍ତ କରାଯିବା ପାଇଁ ଯେଉଁ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇଛି ତନ୍ମଧ୍ୟରୁ ଶତକଡ଼ା ୪୦ ଭାଗ କାର୍ଯ୍ୟ ଶେଷ ହୋଇଥିବାର ଜଣାଯାଏ । ଏଥିମଧ୍ୟରୁ ଭଦ୍ରକ ରେଳ ଷ୍ଟେସନଠାରୁ ଧାମରା ବନ୍ଦର ପର୍ଯ୍ୟନ୍ତ ୬୨ କିଲୋମିଟର ରେଳପଥ ନିର୍ମାଣ କାର୍ଯ୍ୟ ଶେଷ ହୋଇଛି । ବାର୍ଷିକ ୧୫.୨୫ ମେଟ୍ରିକ୍‌ଟନ୍ ଚୂନପଥର ଓ କୋଇଲା ସହିତ ୯.୭୫ ମେଟ୍ରିକ୍‌ଟନ୍ ଲୁହା ପଥର ପରିବହନ କରାଯିବାର ବ୍ୟବସ୍ଥା ମଧ୍ୟ କରାଯାଇଛି । ଅବଶ୍ୟ ଧାମରା ପୋର୍ଟ କମ୍ପାନୀ ଲିମିଟେଡ୍ ଓ ଇଣ୍ଟରନ୍ୟାସନାଲ୍ ୟୁନିଅନ୍ ଅଫ୍ କଞ୍ଜରଭେସନ୍ ଅଫ୍ ନେଚର ଆଣ୍ଡ ନ୍ୟାଚରାଲ ରିର୍ସୋସେସ୍ ପୂର୍ବରୁ ସ୍ଥାନୀୟ ଅଧିବାସୀ, ରାଜ୍ୟ ତଥା ଦେଶର ସ୍ୱାର୍ଥପ୍ରତି ଦୃଷ୍ଟିଦେବେ ବୋଲି ଘୋଷଣା କରିସାରିଛନ୍ତି । ଉଲ୍ଲେଖଯୋଗ୍ୟ ଯେ, ୨୦୨୦ ମସିହା ସୁଦ୍ଧା ଧାମରା-ବନ୍ଦର କେବଳ ବିଶ୍ୱ ନୌ-ବାଣିଜ୍ୟ କ୍ଷେତ୍ରରେ ନୁହେଁ, ଏସିଆ ମହାଦେଶର ବୃହତ୍ତମ ବନ୍ଦର ହେବାର ସୌଭାଗ୍ୟ ଅର୍ଜନ କରିବ ବୋଲି ଆଶାପୋଷଣ କରାଯାଇଛି ।

ଗ୍ରୀକ୍ ପରିବ୍ରାଜକ ମେଘାସ୍ଥିନିସ୍ କହନ୍ତି ଯେ, ଚୀନ୍ ଦେଶ ସହିତ ପ୍ରାଚୀନ କାଳରୁ ବ୍ୟବସାୟ ଚାଲି ଆସିଥିଲା । ଚୀନ୍ ଲୋକମାନେ ବାଣିଜ୍ୟ କରୁଥିବା ଲୋକମାନଙ୍କୁ କୁନ୍, ଲୁନ୍ ବୋଲି କହୁଥିଲେ । ଏହା କଳିଙ୍ଗ ଶବ୍ଦର ନାମାନ୍ତର ମାତ୍ର । ଡଃ ହିମାଂଶୁ ଭୂଷଣ ସରକାର ତାଙ୍କ ରଚିତ, Cultural Relations between India and South East Asian Countries, 1905 ପୁସ୍ତକରେ ଏହି କୁନ୍, ଲୁନ୍‌ମାନେ କଳିଙ୍ଗର ଅଧିବାସୀ ବୋଲି ସଫଳତାର ସହିତ ପ୍ରମାଣ କରିଛନ୍ତି ।

ଖ୍ରୀ:ପୂ: ତୃତୀୟ ଶତାବ୍ଦୀରେ ତାମ୍ରଲିପି ବନ୍ଦରଠାରୁ ରାଜକୁମାର ମହେନ୍ଦ୍ର, ରାଜକୁମାରୀ ସଂଘମିତ୍ରା, ବୌଧିଶାଖା ସହିତ ସିଂହଳକୁ ଯାଇଥିଲେ । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଚୀନ୍ ପରିବ୍ରାଜକ ଫାହିୟାନ୍ କଳିଙ୍ଗର ତାମ୍ରଲିପି ବନ୍ଦରରୁ ସିଂହଳକୁ ଯାଇ ସେଠାରେ କଳିଙ୍ଗ ଜାହାଜରେ ଜାଭା ବାଟଦେଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ହରପ୍ରସାଦ ଶାସ୍ତ୍ରୀଙ୍କ ମତ ଅନୁସାରେ ସପ୍ତମ / ଅଷ୍ଟମ ଶତାବ୍ଦୀରେ ଜାଭାରେ ଶାସନ କରୁଥିବା ଶୈଳେନ୍ଦ୍ର ରାଜବଂଶ କଳିଙ୍ଗ ବା ଦକ୍ଷିଣ ଭାରତରୁ ଯାଇଥିଲେ । ଏତଦ୍ ବ୍ୟତୀତ ବହୁ ଐତିହାସିକ ଅଭିଲେଖ ଓ ତଥ୍ୟଗୁଡ଼ିକର କଳିଙ୍ଗ ସହ ସାମଞ୍ଜସ୍ୟ ଥିବା ଦକ୍ଷିଣ ପୂର୍ବ ଏସିଆର ଅନେକ ସ୍ଥାନର ନାମ, ନଦୀ, ପର୍ବତ, ବ୍ୟକ୍ତିବିଶେଷ ନାମ, ଉପାଧି ବିଷୟରେ ବର୍ଣ୍ଣିତ ଥିବା ଜଣାପଡ଼େ । କୋଣାର୍କ ମନ୍ଦିରରେ ଖୋଦିତ ଜିରାଫ ଚିତ୍ରରୁ ଅନୁମାନ କରାଯାଏ ଯେ ସମ୍ଭବତଃ ଗଙ୍ଗ ରାଜତ୍ୱ କାଳରେ ଆଫ୍ରିକା ସହ ଉତ୍କଳର ନୌ-ବାଣିଜ୍ୟ ସଂପର୍କ ଥିଲା । ପୁରୀ ଜଗନ୍ନାଥ ମନ୍ଦିରରେ ଖୋଦିତ ଜାହାଜ ଚିତ୍ର ଉତ୍କଳୀୟ ନୌ-ବାଣିଜ୍ୟ ପରମ୍ପରାର ପ୍ରମାଣ ବହନ କରେ ।

ଡକ୍ଟର ହରେକୃଷ୍ଣ ମହତାବ ତାଙ୍କ ଓଡ଼ିଶା ଇତିହାସରେ ପ୍ରାଚୀନ କାଳରେ ଓଡ଼ିଶାର ଅନେକଗୁଡ଼ିଏ ବଡ଼ ବଡ଼ ବନ୍ଦର ଥିବାର ଉଲ୍ଲେଖ କରିଛନ୍ତି । ସେହି ବନ୍ଦରମାନଙ୍କ ମଧ୍ୟରେ ଦନ୍ତପୁର ବନ୍ଦର ସବୁଠାରୁ ପୁରାତନ । ଦନ୍ତପୁର ଋଷିକୂଲ୍ୟା ମୁହାଣରେ ଅବସ୍ଥିତ ଥିଲା । ଦନ୍ତପୁର ଆଜି କାଲିର ଏରଣ୍ଡପଲ୍ଲୀ ନିକଟସ୍ଥ ଦଣ୍ଡଗୁଳ ।

ଉତ୍କଳୀୟ ବାଣିଜ୍ୟ ବୋଇତ ସଂପର୍କରେ ଅନେକ କାହାଣୀ ଦୃଷ୍ଟିକୁ ଆସେ । ଭାଦ୍ରବ ମାସର ଖୁଦୁରୁକୁଣୀ ଓଷା କଥା ସମସ୍ତଙ୍କୁ ଜଣା । ଉତ୍କଳର ପ୍ରତ୍ୟେକ ଘରେ କୁମାରୀମାନେ ଖୁଦୁରୁକୁଣୀ ଓଷା ପାଳନ କରନ୍ତି । ଏହି ଓଷା କଥାରେ ବୋଇତ ବନ୍ଦାଣ କଥା ଉଲ୍ଲିଖିତ । ସାଧବପୁଅମାନେ ବୋଇତରେ ବିଦେଶ ଯାଇଥିଲେ । ଭାଉଜମାନେ ନଣନ୍ଦ ତଅପୋଇକୁ ବହୁତ କଷ୍ଟଦେଇ ଛେଳି ଜଗିବା କାର୍ଯ୍ୟରେ ନିଯୁକ୍ତ କରିଥିଲେ । ଭାଇମାନେ ବୋଇତରେ ବିଦେଶରୁ ଫେରି, ଭଉଣୀର ଦୟନୀୟ ଅବସ୍ଥା ଦେଖି, ବୋଇତ ବନ୍ଦାଇ ଗଲାବେଳେ ଭାଉଜମାନଙ୍କର ନାକ କଟାଇଥିଲେ । ଭାଇମାନଙ୍କର ଅନୁପସ୍ଥିତିରେ ସେମାନଙ୍କର ସୁରକ୍ଷା ଲାଗି ତଅପୋଇ ଜଙ୍ଗଲରେ ମଙ୍ଗଳାଙ୍କୁ ପୂଜା କରିଥିବାରୁ ଖୁଦୁରୁକୁଣୀ ଓଷାର ପ୍ରଚଳନ ହୋଇଥିବା ଅନୁମେୟ । ଲୋକପ୍ରିୟ ଖୁଦୁରୁକୁଣୀ ପ୍ରାଚୀନ ଉତ୍କଳର ନୌ-ବାଣିଜ୍ୟ ସହ ସଂପୃକ୍ତ ଥିବାର ଏହି ପର୍ବ ବିଶେଷତଃ ଉପକୂଳବର୍ତ୍ତୀ ଜିଲ୍ଲା କଟକ, ପୁରୀ, ବାଲେଶ୍ୱର, ଭଦ୍ରକ, କେନ୍ଦ୍ରାପଡ଼ା, ଜଗତସିଂହପୁର ପ୍ରଭୃତି ଅଞ୍ଚଳରେ ବହୁଳ ଭାବରେ ଆଦୃତି ଲାଭ କରିଛି । ଏହି ଓଷାରେ ମଧ୍ୟ ବୋଇତ ବନ୍ଦାଣ ବିଷୟ ଉଲ୍ଲେଖ କରାଯାଇଛି ।

ସୌଭାଗ୍ୟର ବିଷୟ, ପ୍ରାଦେଶିକ ସ୍ତରରେ ଏବଂ ସାଂସ୍କୃତିକ ଅନୁଷ୍ଠାନ ଆନୁକୂଲ୍ୟରେ ବୋଇତ ବନ୍ଦାଣ ଅନୁଷ୍ଠିତ ହେଉଅଛି । ସଂକ୍ଷେପରେ ଉଲ୍ଲେଖ କଲେ, ସମଗ୍ର ଓଡ଼ିଆ ଜାତି ଭାବାତ୍ମକ ଐକ୍ୟର ଗୌରବ ବୋଧରେ ବାଲିଯାତ୍ରା ଓ ବୋଇତ ବନ୍ଦାଣକୁ ଜାତୀୟ ମହୋତ୍ସବର ମର୍ଯ୍ୟାଦା ପ୍ରଦାନ କଲେଣି । ବାଲିଯାତ୍ରାର ଐତିହ୍ୟ, ଉତ୍ପତ୍ତି ଓ ବିକାଶର ଯଥାର୍ଥ ଅଧ୍ୟୟନ ଏ ଅବଧି ଗବେଷଣାତ୍ମକ ପଦ୍ଧତିରେ ହୋଇନାହିଁ । ପ୍ରାଚୀନ ଶାସ୍ତ୍ର, ଅଭିଲେଖ, ଭୌଗଳିକ, ଐତିହାସିକ ଓ ପରିବ୍ରାଜକଙ୍କ ବିବରଣୀରୁ ଜଣାଯାଏ ପ୍ରାଚୀନ କାଳରୁ ସାମୁଦ୍ରିକ ବାଣିଜ୍ୟ କ୍ଷେତ୍ରରେ ଓଡ଼ିଆମାନେ ଥିଲେ ଅଗ୍ରଣୀ ଏବଂ ସେହି ସ୍ୱାଭିମାନରେ ଓଡ଼ିଶାର ସୁଦୀର୍ଘ ସମୁଦ୍ର ଉପକୂଳରେ ଅନେକ ପ୍ରାକୃତିକ ବନ୍ଦର ରହିଥିଲା । ଏହି ବନ୍ଦରଗୁଡ଼ିକ ସୁନାବ୍ୟା ନଦୀ ସମୂହ ଦ୍ୱାରା ଆଭ୍ୟନ୍ତରୀଣ ଅଞ୍ଚଳ ସହିତ ସଂପୃକ୍ତ ଥିଲା । ଫଳରେ ନଦୀ ପଥରେ ବାଣିଜ୍ୟ ସାମଗ୍ରୀ ଅନାୟାସରେ ବନ୍ଦରମାନଙ୍କରେ ପହଞ୍ଚି ପାରୁଥିଲା । ଏହିସବୁ ବନ୍ଦରରୁ ବିଦେଶକୁ ପ୍ରଚୁର ପରିମାଣରେ ହାତୀଦାନ୍ତ ସୂକ୍ଷ୍ମବସ୍ତ୍ର, ପାଟଲୁଗା, ସୌଖୀନ ହସ୍ତଶିଳ୍ପ ସାମଗ୍ରୀ, ମୂଲ୍ୟବାନ ରତ୍ନପଥର, ଚାନ୍ଦୁଆ, ପାନପତ୍ର ପ୍ରଭୃତି ବିଦେଶକୁ ରପ୍ତାନୀ କରାଯାଉଥିଲା ଏବଂ ସୁବର୍ଣ୍ଣ, ମୁକ୍ତା, ରୂପା, ତମ୍ବା, ମୂଲ୍ୟବାନ ମସଲା ପ୍ରଭୃତି ବିଦେଶରୁ ଆମଦାନୀ କରାଯାଉଥିଲା । ଏହି ଦୃଷ୍ଟିରୁ କଟକ ହିଁ ଥିଲା ପ୍ରାଚୀନ ଓଡ଼ିଶାର ପ୍ରମୁଖ ବାଣିଜ୍ୟ କେନ୍ଦ୍ର । ଖ୍ରୀ:ପୂ: କାଳରୁ କଟକ ବାଣିଜ୍ୟ ନଗରୀର ମାନ୍ୟତାଲାଭ କରିଥିଲା । ଓଡ଼ିଶାର ସାଧବ ପୁଅମାନେ ଆଭ୍ୟନ୍ତରୀଣ ଅଞ୍ଚଳରୁ ସୌଖୀନ ଦ୍ରବ୍ୟମାନ ଆଣି କଟକରେ ମହଜୁଦ ରଖୁଥିଲେ ଏବଂ ବର୍ଷାଦିନ ପରେ ସେହି ସବୁ ସାମଗ୍ରୀକୁ ବାଣିଜ୍ୟ ପୋତରେ

କୋଟେଇ କରି ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା ପ୍ରତ୍ୟୁଷରୁ ଦୂରଦୂରାନ୍ତ ଦେଶକୁ ଯିବା ନିମିତ୍ତ କଟକଠାରୁ ଭିନ୍ନ ଭିନ୍ନ ବନ୍ଦରକୁ ଯାତ୍ରା କରୁଥିଲେ । ସେମାନଙ୍କ ବାଣିଜ୍ୟ ତରୀ ମହାନଦୀ ବକ୍ଷରେ ସାଗର ଅଭିମୁଖେ ଯାତ୍ରା କରିବାର ଅବ୍ୟବହିତ ପୂର୍ବରୁ ବୋଇତ ବନ୍ଦାଣ, ଶୁଭ ବିଦାୟ ତଥା ଅନ୍ତର୍ଦେଶୀୟ ତଥା ବହିର୍ଦେଶୀୟ ବାଣିଜ୍ୟ ଉଦ୍ଦେଶ୍ୟରେ ଏକତ୍ରିତ ଜନ ସମାଗମକୁ ସୃଷ୍ଟି କରିଥିଲା । ବାଲିଯାତ୍ରା ସାଂସ୍କୃତିକ ପ୍ରବହମାନ ଧାରାରେ ଏହା ଏକ ବାର୍ଷିକ ମହୋତ୍ସବର ମାନ୍ୟତା ଲାଭ କରି ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଆଙ୍କ ସାମୁଦ୍ରିକ ବାଣିଜ୍ୟ ଲୋପ ହୋଇଯାଇଥିଲେ ହେଁ ପୂର୍ବ ଗୌରବର ମହାନୀୟତା ପରଂପରାରେ ଜାତି ବର୍ଣ୍ଣ ନିର୍ବିଶେଷରେ କାର୍ତ୍ତିକ ପୂର୍ଣ୍ଣିମା ପ୍ରତ୍ୟୁଷରୁ ବିଭିନ୍ନ ନଦୀ, ଉପନଦୀ, ପୁଷ୍କରିଣୀ ଓ ସାଗରମାନଙ୍କରେ ବୋଇତ ବନ୍ଦାଣ ଓ ବାଲିଯାତ୍ରା ଅନୁଷ୍ଠିତ ହୋଇ ଏହାକୁ ଜାତୀୟ ମହୋତ୍ସବର ମାନ୍ୟତା ପ୍ରଦାନ କରାଯାଇଛି ।

କାଳର ପ୍ରବାହରେ ଆଜି ଏହି ସୁମହାନ ପରଂପରା ପ୍ରାୟ ବିଲୁପ୍ତ । ଗାଁ ଦାଣ୍ଡରେ ଆଉ ତାଳପତ୍ର ଛତା ଦିଶୁନି କି ଚକୁଳିଆ ପଣ୍ଡାର ମନ ଚହଟା ଗୀତ ଭାସି ଆସୁନି । ସାଂପ୍ରତିକ ସଭ୍ୟତା କାବୁ କରିଛି ପ୍ରାଚୀନ ସଭ୍ୟତାକୁ । କାର୍ତ୍ତିକ ମାସରେ ଦେବ ମନ୍ଦିର ପ୍ରାଙ୍ଗଣରେ ଭାଗବତ ପାଠ ମଧ୍ୟ ଲୋପ ପାଇବାକୁ ବସିଲାଣି । କାର୍ତ୍ତିକ ପୂର୍ଣ୍ଣିମାର ଐତିହାସିକ ତାତ୍ପର୍ଯ୍ୟ ମଧ୍ୟ ରହିଛି । ଇତିହାସ ବର୍ଣ୍ଣନା ଅନୁଯାୟୀ ଗଙ୍ଗବଂଶୀ ରାଜା ଅନଙ୍ଗଭୀମଦେବ କଟକ ବାରବାଟୀ ଦୁର୍ଗ ସନ୍ନିକଟରେ ପୁରୁଷୋତ୍ତମ ଜଗନ୍ନାଥଙ୍କର ଏକ ଭବ୍ୟ ମନ୍ଦିର ନିର୍ମାଣ କରିଥିଲେ । ଫଳରେ ପୁଣ୍ୟତୋୟା ମହାନଦୀ ଉପକଣ୍ଠ ଏକ ବୈଷ୍ଣବ କ୍ଷେତ୍ରରେ ପରିଣତ ହୋଇଗଲା । ଅଗଣିତ ଭକ୍ତ ଏହି କ୍ଷେତ୍ରରେ କାର୍ତ୍ତିକ ବ୍ରତ ଓ ହବିଷ ପାଳନ ପୂର୍ବକ ବାଲିଯାତ୍ରାର ମହତ୍ତ୍ୱ ବୃଦ୍ଧି କରିଥିଲେ । ସେହି ଦୃଷ୍ଟିକୋଣରୁ କଟକ ନଗରୀ ଉପକଣ୍ଠସ୍ଥ ବାରବାଟୀ ଦୁର୍ଗ ନିକଟବର୍ତ୍ତୀ ଗଡ଼ଗଡ଼ିଆ ଘାଟରେ ବାଲିଯାତ୍ରାର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ଜାତୀୟ ମହୋତ୍ସବର ମାନ୍ୟତା ଲାଭ କରିଛି ।

**ସହାୟକ ଗ୍ରନ୍ଥସୂଚୀ :**


୧) ମିଶ୍ର, ଅନ୍ତର୍ଯ୍ୟାମୀ । ଭାରତୀୟ ଧର୍ମ ଓ ସଂସ୍କୃତି

୨) ଦାସ, ସାରଳା । ମହାଭାରତ । ଆଦିପର୍ବ, ୧୯୭୯

୩) କର, ବିରୁପାକ୍ଷ । ଉତ୍କଳ ନୌ–ବାଣିଜ୍ୟ : ସାହିତ୍ୟ ପ୍ରବେଶ । କଟକ, ମାଧ୍ୟମିକ ଶିକ୍ଷା ବୋର୍ଡ଼, ପୃ. ୧୩୧

୪) ଭଞ୍ଜ, ଉପେନ୍ଦ୍ର । ଲାବଣ୍ୟବତୀ । ୨ୟ ଖଣ୍ଡ ସପ୍ତମ ଛନ୍ଦ

୫) ମିଶ୍ର, ଜ୍ଞାନେନ୍ଦ୍ର ମୋହନ । କାର୍ତ୍ତିକ ପୂର୍ଣ୍ଣିମା ଓ ବୋଇତ ବନ୍ଦାଣ । ପ୍ରଜାତନ୍ତ୍ର, ୧,୧୧,୧୯୯୮ ପୃ . ୬ ।

୬) ନାୟକ, ରବି । କାର୍ତ୍ତିକ ମାସର ମହତ୍ତ୍ୱ : ଉତ୍କଳ ପ୍ରସଂଗ । ଭୁବନେଶ୍ୱର, ନଭେମ୍ବର, ୧୯୯୮,

୭) ରଥ, ଜୟନ୍ତୀ । ଓଡ଼ିଶାର ନୌ–ବାଣିଜ୍ୟ : ଉତ୍କଳ ପ୍ରସଙ୍ଗ । ନଭେମ୍ବର ୧୯୯୮ ।

୮) ସିଂହ, ଜଗବନ୍ଧୁ । ପ୍ରାଚୀନ ଉତ୍କଳ । ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡ଼େମୀ । ୧୯୬୪, ପୃ. ୫୫୪

୯) ମହାନ୍ତି, ଶାନ୍ତନୁ କୁମାର । ଐତିହାସିକ ଚାନ୍ଦବାଲି ବନ୍ଦର : ଉତ୍କଳ ପ୍ରସଙ୍ଗ । ନଭେମ୍ବର ୧୯୯୮ । ପୃ. : ୬

୧୦) ବେହେରା, ନରହରି । ଭଦ୍ରା । ୨୦୧୩ । ପୃ. ୧୦୧–୦୨



ସଭାପତି, ଚାନ୍ଦବାଲି ସାଂସ୍କୃତିକ ପରିଷଦ, ଚାନ୍ଦବାଲି
ଭଦ୍ରକ, ପିନ୍ – ୭୫୬୧୩୩


❖ ❖ ❖

# ଶ୍ରୀଜଗନ୍ନାଥ ଓ ରାଈଦାମୋଦର ବ୍ରତ

**ବିପିନ ବିହାରୀ ମହାନ୍ତି**

ପ୍ରତିବର୍ଷ ଶ୍ରୀମନ୍ଦିରରେ ରାଈ ଦାମୋଦର ଉତ୍ସବ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ଯାଏଁ ପାଳନ କରାଯାଏ । ଏତକ ଦିନ ଶ୍ରୀଜଗନ୍ନାଥ ରାଈ ଦାମୋଦର ବେଶରେ ସଜ୍ଜିତ ହୁଅନ୍ତି ।

ଏହି ବେଶରେ ଶ୍ରୀବିଗ୍ରହ ତ୍ରିକଚ୍ଛ ପରିଧାନ କରନ୍ତି । ହସ୍ତରେ ଲାଗିହୁଏ ସୁବର୍ଣ୍ଣ ନଳୀଭୁଜ, ବାଉଁଶପାତିଆ ଓ କନାରେ ନିର୍ମିତ ଚୂଳ ତ୍ରିମୁଣ୍ଡି ଉପରେ ରହିଥିଶ ଏବଂ ଚୂଳରେ ଅଗ୍ରଭାଗରେ ଚନ୍ଦ୍ରିକା ଶୋଭାପାଏ । କର୍ଣ୍ଣଦେଶରେ କୁଣ୍ଡଳ, କଟିଦେଶରେ ଶୋଭାବିସ୍ତାର କରେ ଓଡିଆଣି ଓ ପାଗଡାମାଳୀ, ମସ୍ତକରେ ତଡଗୀ ଚକ୍ର, ସୂର୍ଯ୍ୟ ଏବଂ ଚିତା ଇତ୍ୟାଦି ସ୍ୱର୍ଣ୍ଣ ଅଳଙ୍କାରରେ ଭୂଷିତ ହୋଇଥାନ୍ତି । ଏତଦ୍‌ଭିନ୍ନ ବିଭିନ୍ନ ପୁଷ୍ପ ଅଳଙ୍କାର , ପାଟଶାଢୀ, ଶ୍ରୀକପଡା, ପହରଣ, ବଳା, ଅଧରବାଳା ଓ ଉତ୍ତରୀୟ ବସ୍ତ୍ର ପରିଧାନ କରିଥାନ୍ତି । ଏହି ମନୋରମ ବେଶ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ ଧରି କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଚାଲେ । ଶ୍ରୀମନ୍ଦିରରେ ଏହି ବେଶ ଖ୍ରୀଷ୍ଟିୟ ତ୍ରୟୋଦଶ ଶତାବ୍ଦୀରୁ ଅର୍ଥାତ୍ ଶ୍ରୀ ନିମ୍ବାକାଚାର୍ଯ୍ୟଙ୍କ ଆଗମନ ସମୟରୁ ପ୍ରଚଳନ ହେବାର ଅନୁମାନ କରାଯାଏ । ତାଙ୍କ ମତରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ମିଳିତ ତନୁ ହେଉଛନ୍ତି ଶ୍ରୀଜଗନ୍ନାଥ । ଏଣୁ ରାଧା ଦାମୋଦର ବେଶରେ ଏହି ଭାବ ହିଁ ପ୍ରକଟିତ ହୋଇଥାଏ ।

ମନ୍ଦିରର ସ୍ୱତ୍ୱଲିପିରେ ଦ୍ୱାଦଶ ଯାତ୍ରା ଓ ଅନ୍ୟାନ୍ୟ ପର୍ବପର୍ବାଣି ତାଲିକାରେ ବର୍ଣ୍ଣିତ ଅଛି ଯେ ଶ୍ରୀମନ୍ଦିରରେ ଶୁକ୍ଳ ଏକାଦଶୀ ଦିନଠାରୁ କାର୍ତ୍ତିକ ମାସ ନୀତି, ବେଶ, ଭୋଗ ଓ ବ୍ରତ ଆରମ୍ଭ ହୁଏ । ରାତ୍ର ଦୁଇଘଡି ଥାଉଣୁ ଆଳତି ଅବକାଶ ବଢି (ଶେଷ ପରେ) ରାଧାଦାମୋଦର ବେଶ ହୋଇ ଗୋପାଳବଲ୍ଲଭ ଉଠିବ । ସକାଳ ଧୂପ ସରିବା ପରେ ପାଣିପଡି ବାଳଧୂପ ଛେକ ଆସିଲା ପରେ ମୁଦିରସ୍ତ ଶ୍ରୀଅଂଗରେ ପ୍ରସାଦ ଲାଗି କରିବେ । ବାଳଧୂପ ସରିଲା ପରେ ତିନିବାଡ ବନ୍ଦାପନା ହେବ ।

ଦଶହରା ପରଦିନ (ଆଶ୍ୱିନ ଶୁକ୍ଳ) ଏକାଦଶୀଠାରୁ ହେଉଥିବା ରାଧା ଦାମୋଦର ବେଶ କାର୍ତ୍ତିକ ଶୁକ୍ଳ ଦଶମୀ ଯାଏଁ ଚାଲିବ । ଅମାବାସ୍ୟା ପରଠାରୁ ଦଶମୀ ଯାଏଁ ସୋମବାର ଦିନ ବଡ ବାଡରେ (ବଳଭଦ୍ରଙ୍କ) ହରିହର ବେଶ ହେବ । ଅର୍ଦ୍ଧେକ କଳା ଓ ଅର୍ଦ୍ଧେକ ଧଳା ବସ୍ତ୍ରରେ ଶ୍ରୀବଳଭଦ୍ରଙ୍କୁ ଆବୃତ୍ତ କରାଯାଏ ।

କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନଠାରୁ ଅର୍ଥାତ୍ ଏହିଦିନ ଠାକୁରମାନେ ଲକ୍ଷ୍ମୀନାରାୟଣ ବେଶ ହୁଅନ୍ତି । ଦ୍ୱାଦଶୀ ଦିନ ବାମନ ବା ବାଙ୍କଚୂଡ, ତ୍ରୟୋଦଶୀରେ ତ୍ରିବିକ୍ରମ ଚତୁର୍ଦ୍ଦଶୀରେ ଲକ୍ଷ୍ମୀନୃସିଂହ ଓ ପୂର୍ଣ୍ଣମୀ ଦିନ ରାଜବେଶ ହୁଅନ୍ତି । ବାଳଧୂପ ପୂର୍ଣ୍ଣିମା ଯାଏଁ ହୁଏ ।

ଶ୍ରୀଜଗନ୍ନାଥଙ୍କ ରାଈ ଦାମୋଦର ବା ରାଧା ଦାମୋଦର ରୂପକୁ ନେଇ କାହାଣୀ ଅଛି ।

ପୌରାଣିକ ମତରେ ଅକ୍ରୁର ମଥୁରାକୁ ଯିବାବେଳେ ଯମୁନା ନଦୀରେ ସ୍ନାନ କରୁଥିବା ସମୟରେ ଏହି ରାଧା ଦାମୋଦର ବେଶ ଦର୍ଶନ କରିଥିଲେ । ଏହି ବେଶକୁ ନିମ୍ବାକାଚାର୍ଯ୍ୟଙ୍କ ଆଗମନ ପରେ ଶ୍ରୀଜଗନ୍ନାଥଙ୍କଠାରେ ପ୍ରୟୋଗ କରାଗଲା ! କିନ୍ତୁ କେତେକଙ୍କ ମତରେ ଜୟଦେବଙ୍କ ଗୀତଗୋବିନ୍ଦରେ ରାଧା ନାୟିକା ହେବା ପରେ ଏବଂ ତାଙ୍କରି ପ୍ରେରଣାରେ ଗଜପତିଙ୍କ ଦ୍ୱାରା ଏହି ବେଶ କରାଯାଇଥିବା କଥା ଅଧିକ ଯୁକ୍ତିଯୁକ୍ତ ହୋଇପାରେ ।

ରାଈ ଦାମୋଦର ବ୍ରତର କାହାଣୀକୁ ଆଧାର କରି କୁହାଯାଇଛି ଯେ ଶ୍ରୀଜଗନ୍ନାଥ ଏକଦା ତାଙ୍କ ସେବକ ବଡପଣ୍ଡା ଘରେ ଆତିଥ୍ୟ ନେଇଥିଲେ । ତାଙ୍କ ଆତିଥ୍ୟରେ ପ୍ରୀତ ହୋଇ

ଶ୍ରୀଜଗନ୍ନାଥ ତାଙ୍କୁ ବରଭିକ୍ଷା କରିବାକୁ କହିବାରୁ ବଡପଣ୍ଡା ସପତ୍ନୀକ କହିଲେ ଯେ ସେ ତାଙ୍କ କନ୍ୟା ରାଇଙ୍କୁ ପତ୍ନୀରୂପେ ଗ୍ରହଣ କରନ୍ତୁ । ଶ୍ରୀଜଗନ୍ନାଥ ରାଇଙ୍କୁ ବିବାହ କଲେ ଏବଂ ରାଇଙ୍କୁ କହିଲେ: ବର୍ତ୍ତମାନ ତୁମେ ଘରକୁ ଯାଇପାରିବ ନାହିଁ। ମୋ ଲକ୍ଷ୍ମୀ ବହୁତ ଦୁଷ୍ଟ, ତୁମେ ତାଙ୍କୁ ପ୍ରଥମେ ସେବା, ପୂଜା ଓ ଆରାଧାନାରେ ସନ୍ତୁଷ୍ଟ କର। ସେ ତୁମକୁ ଅଭୟ ଦେବେ। ତୁମର ଏକ ସନ୍ତାନ ମକରଧ୍ୱଜ ନାମରେ ଜନ୍ମ ହେବ। ରାଇ ଶ୍ରୀଜଗନ୍ନାଥଙ୍କ ଆଦେଶ ମତେ ତାହା ହିଁ କଲେ।

ଏଣୁ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ଯାଏଁ ରାଇ ଦାମୋଦର ବ୍ରତ ବା କାର୍ତ୍ତିକ ବ୍ରତ ପାଳନ ହୁଏ।

କାର୍ତ୍ତିକ ମାସରେ ବିଷ୍ଣୁଙ୍କର ପ୍ରଧାନ ଆରାଧନା ଓ ଉପାସନା ହେଉଛି ରାଇ ଦାମୋଦର ବ୍ରତ। କାର୍ତ୍ତିକ ମାସର ଅବଶିଷ୍ଟ ପାଂଚ ଦିନକୁ ପଂଚୁକ କୁହନ୍ତି । ଏହି ପାଂଚଦିନ ନାରାୟଣଙ୍କ ସହିତ ପୂର୍ବପରି ଲକ୍ଷ୍ମୀ (ଶ୍ରୀଦେବୀ) ପୂଜାପାଆନ୍ତି । ରାଇ ଦାମୋଦର ବ୍ରତରେ ସଂକଳ୍ପ ଓ ଅନ୍ୟାନ୍ୟ ବିଧି ନେଇ ନିମ୍ନମତେ ପୁରାଣମାନଙ୍କରେ ଦର୍ଶାଯାଇଛି।

ଆଶ୍ୱିନଶୁକ୍ଳ ଏକାଦଶୀ। କାର୍ତ୍ତିକବ୍ରତ ଉପବାସୀ।।
ବ୍ରତକରିବ ଯେଉଁଦିନ। ସଂକଳ୍ପ ଇଚ୍ଛ ସେହିଦିନ ।।

(ପଦ୍ମ ପୁରାଣ)

ଅର୍ଥାତ୍ ଏହି ବ୍ରତର ସଂକଳ୍ପ ଆଶ୍ୱିନ ଶୁକ୍ଳ ଏକାଦଶୀ ଦିନ କରିବେ । ବ୍ରତ ପୂର୍ବରୁ ସ୍ନାନଶୁଚି ପାଇଁ ମଧ୍ୟ ବିଧି ଅଛି ।

ତୁଳସୀ ଗଛ ମୂଳରେ ପଂଚମୁରୁଜ ଦେଇ ଗୋଟିଏ ନଡିଆ ଓ ପାଂଚଗୋଟି ଗୁଆ ଥୋଇ ବ୍ରତ ସଂକଳ୍ପନ କରିବେ । ପୂଜାରେ କନିଅର ପୁଷ୍ପ ବ୍ୟବହାର କରିବେ । ଏହା ବିଷ୍ଣୁଙ୍କର ଅତିପ୍ରିୟ ପୁଷ୍ପ ଅଟେ । ପୂଜାପରେ ବିଷ୍ଣୁଙ୍କୁ ସମର୍ପଣ ପୂର୍ବକ ହବିଷ୍ୟାନ୍ନ ଭୋଜନ କରିବେ ଓ ସନ୍ଧ୍ୟାରେ ଦୀପଦାନ କରିବ।

କାର୍ତ୍ତିକ ମାସରେ ଦେବାଳୟମାନଙ୍କରେ ଆକାଶ ଦୀପ ଜଳାଯାଏ। ଏହା ଆତ୍ମା ଓ ପରମାତ୍ମା ମଧ୍ୟରେ ଏକ ସମ୍ପର୍କୀକରଣର ପ୍ରତୀକ ହୋଲି କୁହାଯାଏ। ଆଉ କେତେକଙ୍କ ମତରେ ଏହା ପିତୃପୁରୁଷମାନଙ୍କୁ ଆଲୋକପଥର ପ୍ରତୀକ ବୋଲି ଧରାଯାଇଛି। ରାଇ ଦାମୋଦର ବ୍ରତାଚାରୀଙ୍କ ପ୍ରତି କିଛି ଆଚରଣ ବିଧି ଅଛି। ଏତ୍‌ଦଭିନ୍ନ କୋମଳ ଶଯ୍ୟା ନିଷେଧ। ତା ପରିବର୍ତ୍ତେ ତୃଣଶଯ୍ୟା ବ୍ୟବହାର କରାଯାଇପାରେ। ଏଥି ସହିତ ସାରାଦିନ ଜାଗ୍ରତ ଅବସ୍ଥାରେ ରାଇ ଦାମୋଦର ଚିନ୍ତା କରିବ। କାର୍ତ୍ତିକବ୍ରତ ଦେବାଳୟରେ, ତୀର୍ଥସ୍ଥାନରେ, ତୁଳସୀ କିମ୍ବା ଅଁଳା ମୂଳରେ କରିବା ଏବଂ ଶେଷରେ ତୁଳସୀ ମୂଳରେ ହିଁ ଉଦ୍‌ଯାପନ କରିବ ।

ସ୍ନାନ ହବିଷ୍ୟ ଦୀପଦାନେ । ତୁଳସୀ ମୂଳେ ଉଦ୍ୟାପନେ ।।
ତେଣୁ ତୁଳସୀ ମୂଳେ ସିଦ୍ଧି। କାର୍ତ୍ତିକେ ଉଦ୍ୟାପନ ବିଧି ।।

କାର୍ତ୍ତିକ ବ୍ରତର ମାହାତ୍ମ୍ୟ ସମ୍ପର୍କରେ କୁହାଯାଇଛି ଯେ ଯେତେ ଦର୍ଶନ, ଯେତେ ତୀର୍ଥ, ଯେତେ ଯାଗଯଜ୍ଞ ଇତ୍ୟାଦି ଅଛି, ସେସବୁର ଧର୍ମକୁ ଠୁଳକଲେ, କାର୍ତ୍ତିକବ୍ରତ ସହିତ ସମାନ ନୁହେଁ ।

ଏସବୁର ଧର୍ମ ଠୁଳ କରି । କାର୍ତ୍ତିକବ୍ରତ ନୁହେଁ ସରି ।।
ଯାବତ୍ ପୁଣ୍ୟ କରି ଏକ । ସହସ୍ର ଗୁଣରେ କାର୍ତ୍ତିକ ।।
ବିଷ୍ଣୁଙ୍କ ଅତି ପ୍ରିୟ ଯେଣୁ । କାର୍ତ୍ତିକ ମହାପୁଣ୍ୟ ତେଣୁ ।।
ହବିଷାତ ପୁଣ୍ୟ ଜାଣ । ଉଦ୍ୟାପନାର ଲକ୍ଷଗୁଣ ।।
ଯାର ଯୋଗରେ ସ୍ୱର୍ଗ ଭୋଗ । କାର୍ତ୍ତିକେ ବୈକୁଣ୍ଠର ଯୋଗ ।।
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ । ସ୍ତ୍ରୀ ପୁରୁଷ ସେବା ଜନ ।।
ବିନା କାର୍ତ୍ତିକେ ଶୁଦ୍ଧ ନୋହି । ବିଷ୍ଣୁ ଶ୍ରୀମୁଖେ ଛନ୍ତିକହି ।।

(କାର୍ତ୍ତିକ ମାହାତ୍ମ୍ୟ : ପଦ୍ମ ପୁରାଣ)

ଅର୍ଥାତ୍ ଜାତି, ଗୋଷ୍ଠୀ, ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସଭିଏଁ ଏହି ବ୍ରତ ପାଳନ କରିପାରିବେ। ପୁରୁଷୋତ୍ତମ କ୍ଷେତ୍ର ଶ୍ରୀକ୍ଷେତ୍ରରେ ଏହାର ସ୍ୱତନ୍ତ୍ର ପାଳନ ବିଧି ଅଛି।

ରାଇ ଦାମୋଦର ବ୍ରତରେ ବ୍ରତଚାରୀମାନେ ମହୋଦଧି କୂଳରେ ବାଲିରେ ଦାମୋଦର ମୂର୍ତ୍ତି ସ୍ଥାପନ କରି ପୂଜା କରନ୍ତି। ବିଶେଷ କରି ବିଧବାମାନେ ଏ ବ୍ରତ ଅଧିକାଂଶ କରିଥାନ୍ତି। ଏହାପରେ ଶ୍ରୀମନ୍ଦିର ଯାଇ ରାଇ ଦାମୋଦର ବେଶ ଦର୍ଶନ କରି ହବିଷ୍ୟାନ୍ନ ବା ଅବଢା ଖାଇଥାନ୍ତି। ଏହି ବେଶରେ ଥିବାବେଳେ ପ୍ରଭୁଙ୍କର ବାଳଭୋଗ ନୀତି ହୁଏ। ଶ୍ରୀମନ୍ଦିର ଜୟ ବିଜୟ ଦ୍ୱାର ଉଭୟ ପାର୍ଶ୍ୱରେ ଅଖଣ୍ଡ ଦୀପ ଲଗାଯାଏ। ସଂଧ୍ୟା ଆଳତି ପରେ ସାହାଣ ମେଲା ଅନୁଷ୍ଠିତ ହୁଏ।

କାର୍ତ୍ତିକ ମାସ ଏକ ପୁଣ୍ୟ, ପବିତ୍ର ଓ ଧର୍ମମାସ। କାର୍ତ୍ତିକବ୍ରତ ସବୁ ବ୍ରତ ମଧ୍ୟରେ ଶ୍ରେଷ୍ଠ। ଅନ୍ୟପକ୍ଷରେ ପରିବେଶ, ବିଜ୍ଞାନ ଓ ଭୌଗୋଳିକ ଦୃଷ୍ଟିରୁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ମାସ। ଆମେ ଭୁଲିଯିବା ଉଚିତ୍ ନୁହେଁ ଯେ ଧର୍ମ କହିଲେ ବିଜ୍ଞାନ ଏବଂ ବିଜ୍ଞାନର ପ୍ରସୁତି ଫଳ ହିଁ ଧର୍ମ, ଯାହାକୁ ଆମେ ଆଧ୍ୟାତ୍ମିକ ଭିତ୍ତିରେ ରକ୍ଷାକରି ଚାଲିଛୁ।

ବିକାଶନଗର, ସା/ପୋ.- ଜଟଣୀ
ଖୋର୍ଦ୍ଧା-୭୫୨୦୫୦

# ରାଜ୍ ନୀଳଗିରି

ହରିହର ପଣ୍ଡା

ଅବିଶ୍ରାନ୍ତ ଝରଣାର କୁଳୁକୁଳୁ ନାଦ । ତାରି ଫୁଆର ଭିତରେ ଭଗବାନଙ୍କୁ ଖୋଜିବାର ପ୍ରୟାସ । ପ୍ରକୃତିରାଣୀର ଏମିତି କମନୀୟ ସୌନ୍ଦର୍ଯ୍ୟ ପରିବେଷ୍ଟନୀରେ ଯାତ୍ରା କରିବାର ନିଆରା ଅନୁଭୂତି । ଏଥିରେ ପୁଣି ସାମିଲ ରହିଛି ପାଖାପାଖି ଏକ ହଜାର ବର୍ଷ ତଳର ରାଜ ଇତିହାସ । ପାହାଡ଼ କୋଳରେ ମୂକ ହୋଇ ଠିଆ ହୋଇଥିବା ଏ ରାଜ ଉଆସ ଏବେ ତା'ର ସାକ୍ଷୀ ହୋଇ ସେତେବେଳର ଶାସନ ସମ୍ପର୍କରେ ଇଙ୍ଗିତ ଦେଉଛି । ହଁ ଏହା ହେଉଛି ନୀଳଗିରିର କଥା । ସୂର୍ଯ୍ୟଙ୍କ ପ୍ରଥମ କିରଣରେ ଝଲସି ଉଠୁଥିବା ସ୍ୱର୍ଣ୍ଣଚୂଡ଼ ପାହାଡ଼ର ତଳେ ଆସନ୍ତୁ ରାଜ ନୀଳଗିରିର ସେ ସ୍ମୃତି ଆଉ ଇତିହାସକୁ ସାଉଁଟିବା ।

ପନ୍ଦରଶହ ନଅ ମସିହା । ଚଡ଼କ ପଡ଼ିଲା ଓଡ଼ିଶା ଉପରେ । ଗଜପତି ମହାରାଜାମାନଙ୍କ ବୀରତ୍ୱର କାହାଣୀ ସବୁ ଶୁଣି ଯେଉଁ ଯବନମାନେ ଓଡ଼ିଶାର ସୀମା ମାଡ଼ିବାକୁ ସାହସ କରୁ ନଥିଲେ ତାହା ଆଜି ହଠାତ୍ ସେମାନେ ଉଭା ହୋଇଛନ୍ତି । ତାଙ୍କ ହାବଭାବ ଆଉ ଠାଣିରୁ ଯାହା ଜଣାପଡୁଛି ସେମାନେ ଆମ ମନ୍ଦିରଗୁଡ଼ିକୁ ଧ୍ୱଂସ କରିବାକୁ ଯେମିତି ପଣ କରିଛନ୍ତି । ଯାଜପୁର ଆଡୁ ଏ ଖବର କଟକରେ ପହଞ୍ଚିଲା । ପୁଣି ଖବର ଆସିଲା ସେ ପୁରୀଆଡ଼େ ମୁହାଁଇବାକୁ ପ୍ରସ୍ତୁତ ହେଉଛନ୍ତି । ହେଲେ କଟକରେ ତ ମହାରାଜା ନାହାନ୍ତି । ଦାକ୍ଷିଣାତ୍ୟ ସମସ୍ୟାର ସମାଧାନ ପାଇଁ ସୈନ୍ୟ ସାମନ୍ତଙ୍କ ସହ ସେ ଗୋଲକୋଣ୍ଡା ଆଡ଼େ ପ୍ରସ୍ଥାନ କରିଛନ୍ତି । ଏବେ ପୁରୀକୁ ରକ୍ଷା କରିବ କିଏ ?

ମାଦଳା ପାଞ୍ଜିର ପୃଷ୍ଠା ଓଲଟାଇ ସେବକମାନେ ଅତୀତକୁ ମନେ ପକାଇଲେ । ଭୌମକର ରାଜା ଶୋଭନ ଦେବଙ୍କ ରାଜତ୍ୱ କାଳରେ ରକ୍ତବାହୁ ଏମିତି ଏକ ଆକ୍ରମଣ କରିଥିଲେ, ଯାହାକୁ ନେଇ ସାରା କଳିଙ୍ଗ ଆତଙ୍କିତ ହୋଇଥିଲା । ଜୀବନ ବଞ୍ଚାଇବାକୁ ଯାଇ ପ୍ରଜାମାନେ କିଏ କୁଆଡ଼େ ଚାଲିଯାଇଥିଲେ ତା'ର ସୂଚନା ନାହିଁ । ହେଲେ ସାଙ୍ଗରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନେଇ ଯାଇଥିଲେ, ଯାହାଙ୍କୁ ସୋନପୁରର ଏକ ବରଗଛ ତଳେ ପାତାଳୀ କରିଦେଇଥିଲେ । କେତେକଣ ଏହା ଭିତରେ ଘଟିଯାଇଛି । କିଏ ଏହାକୁ ରାଷ୍ଟ୍ରକୂଟ ରାଜାଙ୍କ ଆକ୍ରମଣ କଥା କହନ୍ତି ତ ଆଉ କିଏ ଗ୍ରୀକ୍‌ମାନଙ୍କ ଆକ୍ରମଣ ସମୟ କଥା କହନ୍ତି, ପୁଣି ଏହାକୁ କୁଷାଣମାନଙ୍କ ଆକ୍ରମଣ ଓ ଶ୍ରୀଲଙ୍କାର ବାହୁ ବଂଶର ଆକ୍ରମଣ ବିଷୟରେ ମଧ୍ୟ କୁହାଯାଏ । ହେଲେ ପାଖାପାଖି ୧୪୪ ବର୍ଷ ସେଠାରେ ଠାକୁର ପାତାଳି ହୋଇ ରହିଥିଲେ । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ଆଗମନ ପରେ ଯଯାତି କେଶରୀ ଯାଜପୁରଠାରେ ଦଶାଶ୍ୱମେଧ ଯଜ୍ଞ କରାଇଲେ କେବଳ ଶ୍ରୀଜଗନ୍ନାଥଙ୍କ ସନ୍ଧାନ ପାଇଁ । ବନିକାରୁ ଠାକୁରଙ୍କ ସନ୍ଧାନ କରି ପୁଣିଥରେ ଶଙ୍କରାଚାର୍ଯ୍ୟ ଏଠାରେ ପ୍ରାଣ ପ୍ରତିଷ୍ଠା କଲେ । ଯାହାଫଳରେ ପୁରୁଷୋତ୍ତମ କ୍ଷେତ୍ର ଏଠାରେ ଉଜ୍ଜୀବିତ ହୋଇପାରିଥିଲା । ଅବଶ୍ୟ ରକ୍ତବାହୁ ଆକ୍ରମଣ ପରେ ଅନେକ ବର୍ଷ ଧରି ପୁରୀରେ ଶାନ୍ତି ଆସିଥିଲା । ଗଙ୍ଗବଂଶୀ ରାଜାମାନଙ୍କ ଦ୍ୱାରା ବିଭିନ୍ନ ମନ୍ଦିର ତିଆରି କରାଯାଇ ଏ ସ୍ଥାନର ଗୁରୁତ୍ୱ ବଢ଼ିଥିଲା । କିନ୍ତୁ ଯବନ ଇଲିଆସ ଶାହ ତୃତୀୟ ନରସିଂହଦେବଙ୍କ ସମୟରେ ଆଉ ଦିଲ୍ଲୀ ସୁଲତାନ୍ ଫିରୋଜ ଶାହ ତୁଗଲକ୍ ତୃତୀୟ ଭାନୁଦେବଙ୍କ ସମୟରେ ଯେଉଁଭଳି ଭାବେ ପୁରୀକୁ ଆକ୍ରମଣ କରି ଶ୍ରୀମନ୍ଦିର ସମେତ ରାଜ୍ୟର ଅନ୍ୟ ମନ୍ଦିରଗୁଡ଼ିକୁ ଲୁଟିଛନ୍ତି ତାହା ଯେ ଏଥର ନ ଘଟିବ ତାହା କିଏ କହିବ ? ଏଣୁ ପ୍ରଥମେ ଠାକୁରଙ୍କୁ ବଞ୍ଚାଇବା ଦରକାର, ଯାହା ବଦଳରେ ଏ ଧର୍ମ ରହିବ ଆଉ ଏ ହିନ୍ଦୁ ସମାଜ । ପଣ୍ଡିତମାନେ ଏ କଥା ଚିନ୍ତା କରି ଠାକୁରଙ୍କୁ ସିଂହାସନରୁ ଅପସାରିତ କରିବା ପାଇଁ ନିଷ୍ପତ୍ତି ନେଲେ । ତେଣେ ଗଜପତି ମହାରାଜା ଖବର ପାଇ ଦାକ୍ଷିଣାତ୍ୟରୁ ବିରାଟ ଫୌଜସହ ଫେରିଲେ । ହେଲେ ଏ

ସମୟ ଭିତରେ ବଙ୍ଗ ସୁଲ୍ତାନ୍ ଆଲ୍ଲାଉଦ୍ଦିନ୍ ହୁସେନ୍ ଶାହଙ୍କ କମାଣ୍ଡର ଇସ୍ମାଇଲ ଘାଜି ଯାଜପୁରଠାରେ ମନ୍ଦିରଗୁଡ଼ିକୁ ଧ୍ୱଂସ କରି ଚାଲିଥାଏ। କଟକ ପରେ ପୁରୀରେ ମଧ୍ୟ ସେ ପହଞ୍ଚି ମନ୍ଦିର ଭିତରେ ବିଜେ ପ୍ରତିମାମାନଙ୍କ କ୍ଷତି ପହଞ୍ଚାଉଥାଏ। ପୁରୀ ମନ୍ଦିରରେ ଅତର୍କିତ ଆକ୍ରମଣ କରି ଅନେକ ଦେବ ପ୍ରତିମା ଭାଙ୍ଗି ପକାଇଥିଲା। ଗଜପତି ପ୍ରତାପରୁଦ୍ର ଦେବ ପୁରୀରେ ପହଞ୍ଚି ଯବନମାନଙ୍କୁ ମୁକାବିଲା କଲେ। ନିଜ ରାଜ୍ୟକୁ ସୁରକ୍ଷିତ କରିବାରେ ସମର୍ଥ ହେଲେ। ଏହି ଯୁଦ୍ଧରେ ତାଙ୍କୁ ଅନେକ ସହାୟତା କରିଥିଲେ ନୀଳଗିରିର ମୁଖିଆ। ବିରାଟ ରାଜ୍ୟ ଭାବେ ପରିଚିତ ନୀଳଗିରିରେ ସେତେବେଳେ ଶାସନ କରୁଥିଲେ ନାରାୟଣ ବସନ୍ତ ବିରାଟ ଭୂଜଙ୍ଗ ମାନ୍ଧାତା। ତାଙ୍କ ବୀରତ୍ୱରେ ବେଶ୍ ଖୁସି ହୋଇଗଲେ ଗଜପତି ପ୍ରତାପରୁଦ୍ର ଦେବ। ନିଜ ଭଉଣୀ କର୍ଲା ଦେବୀଙ୍କୁ ନାରାୟଣ ବସନ୍ତଙ୍କ ବିବାହ କରାଇଲେ। ତାଛଡ଼ା ଉତ୍କଳର ଉର ସୀବାର ମୁଖ୍ୟ ସେନାପତି ଭାବେ ଅଧିଷ୍ଠିତ କରାଇଲେ। ଯାହାଦ୍ୱାରା ନୀଳଗିରି ପୁଣିଥରେ ସାରା ଉତ୍କଳରେ ପରିଚିତ ହେଲା। ଆଉ ସେଇଠୁ ନୀଳଗିରିରେ ଏକ ନୂଆ ଯୁଗ ଆରମ୍ଭ ହେଲା।

ନାରାୟଣ ବସନ୍ତ ନୀଳଗିରିର ୧୩ତମ ଶାସକ ରାଜା ଥିଲେ। ତାଙ୍କ ପୂର୍ବର ଇତିହାସ ଖୋଜିଲେ କେବଳ ରାଜ୍ୟ ପ୍ରତିଷ୍ଠା ସମ୍ପର୍କରେ ଯାହା ଲୋକକଥା ସବୁ ଶୁଣିବାକୁ ମିଳେ। ଯେମିତି ଛୋଟନାଗପୁରର ଦୁଇ ଯୋଦ୍ଧା ଭାଇଙ୍କ ନାଁ ଥିଲା ନୀଳ ଏବଂ ଶଙ୍କରା ପାଖାପାଖି ୧୧୨୫ ମସିହାରେ । ଏଠାରେ ଥିବା ଛୋଟ ଛୋଟ ଅଞ୍ଚଳ ମୁଖିଆଙ୍କୁ ସେମାନେ ଯୁଦ୍ଧରେ ପରାସ୍ତ କଲେ । ଆଉ ଧୀରେ ଧୀରେ ନିଜର ରାଜ୍ୟ ବଢ଼ାଇ ଚାଲିଲେ। କିନ୍ତୁ ସେତେବେଳେ କେଉଁଠି ରାଜଧାନୀ ଥିଲା ଆଉ ନୀଳ ଶଙ୍କରାଙ୍କ ପରେ କିଏ ରାଜା ହେଲେ ତା'ର କୌଣସି ସୂଚନା ଦେବାରେ ଏବେ ନୀଳଗିରି ସମର୍ଥ ନୁହେଁ ।

୧୩ତମ ଶାସକଭାବେ ୧୫୨୧ରୁ ୧୫୬୪ଯାଏ ରାଜା ନାରାୟଣ ବସନ୍ତ ବିରାଟ ଭୂଜଙ୍ଗ ମାନ୍ଧାତା ଏଠାରେ ଶାସନ କରିଥିଲେ । ଉତ୍କଳର ଗଜପତିଙ୍କ ଜଣେ ସେନାଧ୍ୟକ୍ଷ ଭାବେ ପରିଚିତ ନାରାୟଣ ବସନ୍ତ । ତାଙ୍କ ସମୟରେ ରାଜଧାନୀ ଥିଲା ଗଡ଼ଡିହ। ଏବେ ଏହା ଗରଡ଼ି ଗାଁ ଭାବେ ପରିଚିତ। ରାଣୀ କର୍ଲା ଦେବୀଙ୍କ ଅନୁରୋଧକ୍ରମେ ଏଠାରେ ପ୍ରତିଷ୍ଠା ହୋଇଥିଲା ଶ୍ରୀଦଧିବାମନ ଜୀଉ ମନ୍ଦିର, ଯାହାକି ଉତ୍କଳୀୟ ଗଡ଼ଜାତର ସୂଚନା ବହନ କରେ। କାଳକ୍ରମେ ଏଠାରେ ଚତୁର୍ଦ୍ଧାମୂର୍ତ୍ତି ପୂଜା ପାଇଲେ । ଏବେ ନୂଆ ମନ୍ଦିରରେ ଏଠାରେ ପୂଜାର୍ଚ୍ଚନା ଜାରି ରହିଛି । ହେଲେ ପୁରୁଣା ମନ୍ଦିରର କୌଣସି ଅଂଶ ବିଶେଷ ଏଠାରେ ଦେଖିବାକୁ ମିଳେ ନାହିଁ ।

ବେଶ ପରାକ୍ରମୀ ଥିଲେ ନାରାୟଣ ବସନ୍ତ । ମୁସଲମାନଙ୍କ ଆକ୍ରମଣକୁ ପ୍ରତିରୋଧ କରିବାକୁ ଯାଇ ସେ ଗଜପତି ମହାରାଜାଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଥିବା ଭୂଦାର ଚଣ୍ଡୀଙ୍କୁ ମନ୍ଦିରକୁ ସୁରକ୍ଷିତ କରିପାରିଥିଲେ। ଏଣୁ ତାଙ୍କୁ ଗଜପତି ହରିଚନ୍ଦନ ଉପାଧି ମଧ୍ୟ ଦେଇଥିଲେ।

ଭୂଦାର ଚଣ୍ଡୀ ନୀଳଗିରିରେ ପ୍ରତ୍ୟକ୍ଷ ଦେବୀ ଭାବେ ପରିଚିତ । ଦୁର୍ଗାପୂଜା ଉତ୍ସବ ଏଠାରେ ବେଶ୍ ନିଷ୍ଠାର ସହ ପାଳନ କରାଯାଏ । ମୁସଲମାନ ଆକ୍ରମଣ ସମୟରେ ଏ ମନ୍ଦିରର ପାଚେରୀ ଓ କିଛି ଅଂଶବିଶେଷ ଭାଙ୍ଗି ଯାଇଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ନୀଳଗିରିର ଶାସକମାନେ ଏହାକୁ ପୁଣିଥରେ ତିଆରି କଲେ । ବଡ଼ ପାଚେରୀର କାନ୍ଥରେ ବିଭିନ୍ନ ଦେବୀଙ୍କ ମୂର୍ତ୍ତି ସ୍ଥାପନ କରାଯାଇଛି । ଏମାନେ ଦୁର୍ଗାଙ୍କ ବିଭିନ୍ନ ଅବତାର ଭାବେ ଜଣାଶୁଣା । ମୁଖ୍ୟ ଦେବୀଙ୍କ ଫଟୋ ଉତ୍ତୋଳନ ଏଠାରେ ବାରଣ କରାଯାଏ । ଏଣୁ ସ୍ଥାନୀୟ ଲୋକଙ୍କ ବିଶ୍ୱାସକୁ ସମ୍ମାନ ଦେଇ ଆମେ ମଧ୍ୟ ଚିତ୍ର ଉତ୍ତୋଳନରୁ ନିଜକୁ ଦୂରେଇ ରଖିଛୁ । ସ୍ଥାନୀୟ ଲୋକଙ୍କ ଭାଗିଦାରୀ ଓ ନୀଳଗିରି ରାଜ୍ୟର ଠାକୁରମାହଲର ପୃଷ୍ଠପୋଷକତାରେ ଆଜି ଏମିତି ସୁରକ୍ଷିତ ରହିଛି ଏ ମନ୍ଦିର ଆଉ ଏହାର ପରମ୍ପରା।

ନାରାୟଣ ବସନ୍ତଙ୍କ ପରେ ୧୪ତମ ରାଜା ଭାବେ ଉଡରେଶ୍ୱରଙ୍କ ନାଁ ଆସେ । ସେ ଆକବରଙ୍କ ସମୟର ଓ୍ୱାଜିର୍ ଓ ମାନ୍ସିଂଙ୍କୁ ସହାୟତା ଦେଇଥିଲେ । ସେଥିପାଇଁ ତାଙ୍କୁ ୧୫୯୬ରେ ଭୂୟାଁ ମହାପତି ଉପାଧି ଦିଆଯାଇଥିଲା । ୧୫୬୪ରୁ ୧୬୧୦ ଯାଏଁ ସେ ଶାସନ କରିଥିଲେ । ତାଙ୍କପରେ ଆସିଲେ କୃଷ୍ଣ ଦାସ । ମୋଗଲମାନଙ୍କୁ ସହାୟତା ଦେଇଥିବାରୁ ତାଙ୍କୁ ସେମାନେ ମର୍ଦ୍ଦରାଜ ଉପାଧି ଦେଲେ । ପରେ କିଏ ରାଜଗାଦି ଆହରଣ କଲେ କିଏ ରାଜା ହେଲେ ସେ ସମ୍ପର୍କରେ କୌଣସି ସୂଚନା ମିଳେ ନାହିଁ। ଏହି ସମୟରେ ମୋଗଲମାନେ ସାରା ଓଡ଼ିଶାର ଶାସନକୁ ନିଜ ଅକ୍ତିଆରକୁ ନେଇଥିଲେ । ଧାର୍ଯ୍ୟ ଦେୟ ଦେଇ ନପାରିବାରୁ ମୋଗଲମାନେ ମଙ୍ଗଳପୁର ପାଟଣା ଓ ତଳମୁଣ୍ଡା ଅଞ୍ଚଳକୁ ସ୍ୱତନ୍ତ୍ର ତହସିଲରେ ପରିଣତ କରି ପ୍ରତ୍ୟକ୍ଷଭାବେ ଶାସନ କଲେ। ଏଣୁ ନୀଳଗିରିର ପରିସୀମା ସଙ୍କୁଚିତ ହୋଇଥିଲା ।

୨୯ତମ ଶାସକ ଭାବେ ଦାସରଥି ମର୍ଦ୍ଦରାଜ ହରିଚନ୍ଦନ ୧୭୮୧ରୁ ୧୭୮୪ଯାଏଁ ଶାସନ କରିଛନ୍ତି । ଏତିକି ବେଳେ

ମାରାଠା ଶାସନର ପ୍ରାଦୁର୍ଭାବ ବଢ଼ିଲା । ମରାଠାମାନେ ଶାସନ ନିଜ ହାତକୁ ନେଲାପରେ ଗୋବର୍ଦ୍ଧନଙ୍କୁ ୩୦ତମ ନୀଳଗିରି ମୁଖ୍ୟଭାବେ ଗାଦିରେ ବସାଇଲେ । ସେ ୧୭୮୪ରୁ ୯୫ ଯାଏଁ ଶାସନ କରିଛନ୍ତି । ତାଙ୍କୁ ଫତେସିଂ ବାହାଦୂର ଉପାଧି ମଧ୍ୟ ମିଳିଥିଲା। ୧୭୯୫ରେ ମରାଠାଙ୍କଦ୍ୱାରା ଗାଦିରେ ବସିଲେ ଗୋପୀନାଥ ମର୍ଦ୍ଦରାଜ ହରିଚନ୍ଦନ । ଏକ ବର୍ଷ ଶାସନ ପରେ ଷଡ଼ଯନ୍ତ୍ର କରି ଦୋଣ୍ଡି ଦାସ ଦାସରଥି ସିଂହାସନ ଆରୋହଣ କଲେ । ତିନିବର୍ଷ ଶାସନ ପରେ ଗୋବର୍ଦ୍ଧନଙ୍କ ବିଧବା ପତ୍ନୀଙ୍କୁ ହତ୍ୟାକଲେ । ସେ ୧୭୯୬ ଯାଏଁ ଶାସନ କରିଛନ୍ତି । ପରେ ପୁଣିଥରେ ଗାଦିରେ ବସିଲେ ଗୋପୀନାଥ ମର୍ଦ୍ଦରାଜ । ମରାଠାଙ୍କ ସମୟରେ ମୁଖରା, ଖେଜୁରୀ, ଅର୍ମାଳା କୁଡ଼ାଇ ବଞ୍ଚାସ ପ୍ରଭୃତି ପ୍ରଗଣାର ଜମିଦାରମାନେ ନୀଳଗିରି ରାଜ୍ୟର ଅନେକ ଗାଁକୁ ନିଜ ଅଧୀନକୁ ନେଇଥିଲେ। ଏହାଛଡ଼ା ପଡ଼ୋଶୀ ମୟୂରଭଞ୍ଜ ରାଜ୍ୟ ମଧ୍ୟ ଉତ୍ତର ପଶ୍ଚିମର ଅନେକ ଅଞ୍ଚଳକୁ ଦଖଲରେ ନେଇଥିଲେ ଫଳରେ ନୀଳଗିରିର ପରିସୀମା ଆହୁରି କମିଯାଇଥିଲା।

ଗୋପୀନାଥଙ୍କ ପରେ ନୀଳଗିରିରେ ନୂଆ ଇତିହାସର ନିଅଁ ପଡ଼ିଲା । ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଶାସନଭାର ନେଇ ରାଜଧାନୀକୁ ପରିବର୍ତ୍ତନ କଲେ । ଉଦ୍ଦେଶ୍ୟ ଥିଲା ମରହଟ୍ଟାଙ୍କ ଦୌରାତ୍ମ୍ୟରୁ ନିଜକୁ ରକ୍ଷା କରିବା। ସଙ୍କୁଚିତ ହେଉଥିବା ରାଜ୍ୟର ମଧ୍ୟବର୍ତ୍ତୀ ଅଞ୍ଚଳରୁ ଶାସନକରିବା ସୁବିଧାଜନକ ବୋଲି ଭାବି ସେ ଏଠାକୁ ରାଜଧାନୀ ସ୍ଥାନାନ୍ତର କରିଥିଲେ। ପ୍ରତିଷ୍ଠା ହେଲା ରାଜ ନୀଳଗିରି, ଯାହା ନୀଳଗିରିର ନିଜଗଡ଼ ଭାବେ ପରିଚିତ। ଏହା ସେତେବେଳେ ରାଜଧାନୀ ଥିଲା। ଏବେ ସେ ରାଜ ଇତିହାସର ପ୍ରତୀକ ଭାବେ ଠିଆ ହୋଇଛି।

ରାମଚନ୍ଦ୍ର ମର୍ଦ୍ଦରାଜ ଯେଉଁ ପ୍ରାସାଦ ତିଆରି କରିଥିଲେ ତାହା ଏଠାରେ ପୁରୁଣା ପ୍ରାସାଦ ନାଁରେ ପରିଚିତ। ଭାଇ ଭାଗ ବଣ୍ଟା ହୋଇଥିବାରୁ ଏହା ବର୍ତ୍ତମାନ ରାଜ ପରିବାରର କୌଣସି ଏକ ପିଢ଼ି ହାତରେ ରହିଛି, ଯାହାକି ଆଉ ବ୍ୟବହାର ହେଉ ନାହିଁ।

ରାଜ ନଅର ଭିତରକୁ ପ୍ରବେଶ କରିବା ପରେ ଯେଉଁ ପୁରୁଣା ଭଙ୍ଗା ଉଆସଟି ସାମନାକୁ ଆସିବ ତାହା ହେଉଛି ସେଇ ପ୍ରାସାଦ। ସେତେବେଳେ ଏଠାରୁ ରାଜ କାର୍ଯ୍ୟ ପରିଚାଳନା ହେଉଥିଲା। ଅର୍ଥାତ୍ ଏହା ଥିଲା ନୀଳଗିରିର ରାଜ ଦରବାର । ଏହିଠାରେ ନୀଳଗିରିର ତିନୋଟି ପିଢ଼ି ଶାସନ କରିଛନ୍ତି । ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ଏହାକୁ ପରିକଳ୍ପନା କରିଥିବା ବେଳେ ଗୋବିନ୍ଦଚନ୍ଦ୍ର ମର୍ଦ୍ଦରାଜ ଏବଂ ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ଏହାର କଳେବର ବୃଦ୍ଧି କରିଥିଲେ। ୧୭୦୦ ମସିହା ଆରମ୍ଭରେ ଏହି ରାଜ ଉଆସ ତିଆରି ହୋଇଥିଲା । ଭଗ୍ନ ଏ ରାଜ ପ୍ରାସାଦର ଭିତରେ ପଶିଲେ ଆପଣ ସମ୍ପୂର୍ଣ୍ଣ ଉତ୍କଳୀୟ ଶିଳ୍ପୀଙ୍କ କାରୁକାର୍ଯ୍ୟ ଦେଖିବାକୁ ପାଇବେ । ଯାହାକିଛି ବଞ୍ଚିଛି ସେଥିରେ ସେତେବେଳର ରଙ୍ଗ ରହିଛି ଆଉ ସେତେବେଳର କାଛ ଉପରେ ମୂର୍ତ୍ତି ଆଙ୍କିବାର ସଉକ ବି ରହିଛି।

ରାମଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ରାଜ ନଅର ସହ ଏଠାରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ମଧ୍ୟ ସ୍ଥାପନ କରିଥିଲେ । ଏହାସହ ରାଧାକିଶୋର ମନ୍ଦିର, କନକଦୁର୍ଗା ମନ୍ଦିର ମଧ୍ୟ ସେ ସ୍ଥାପନ କରିଥିଲେ। ଏବେବି ଏହି ମନ୍ଦିରଗୁଡ଼ିକ ରାଜ ପ୍ରାସାଦ ପରିସରରେ ଶୋଭା ପାଉଛନ୍ତି। ଏହାଛଡ଼ା ଏକ ପାବଚ୍ଛ କୂଅ ମଧ୍ୟ ସ୍ଥାପନ କରାଯାଇଥିଲା। ସେତେବେଳେ ରାଣୀ ଏହି ପାବଚ୍ଛ କୂଅରେ ଗୁପ୍ତରେ ସ୍ନାନ କରି ଦେବ ଦେବୀଙ୍କୁ ଦର୍ଶନ ନିମିତ୍ତ ଯିବା ପାଇଁ ଏହି ବ୍ୟବସ୍ଥା ହୋଇଥିଲା, ଯାହାକି ଓଡ଼ିଶାର ଆଉ କୌଣସି ରାଜବାଟୀରେ ଦେଖିବାକୁ ମିଳେ ନାହିଁ।

ଜଗନ୍ନାଥ ମନ୍ଦିର ଏବେ ନୀଳଗିରିର ଏକ ପ୍ରମୁଖ ଆକର୍ଷଣ । ମନ୍ଦିରରେ ଏହାର ସ୍ଥାପନା ସମୟ ବିଷୟରେ ଉଲ୍ଲେଖ କରାଯାଇଛି, ଯାହାକି ପାଖାପାଖି ୧୭୫୦ ମସିହା । ମନ୍ଦିର ବାହାରେ ସୁ-ଉଚ୍ଚ ସ୍ତମ୍ଭରେ ଅରୁଣ ଦେବତା ବିରାଜମାନ । ମୁଖଶାଳା ପରେ ନାଟ ମଣ୍ଡପ, ଭୋଗ ମଣ୍ଡପ ଏବଂ ଗର୍ଭ ଗୃହ ସବୁକିଛି ଉତ୍କଳୀୟ ପରମ୍ପରାରେ ତିଆରି ହୋଇଛି । ମୁଖ୍ୟ ମନ୍ଦିରକୁ ପ୍ରବେଶ କଲାପୂର୍ବରୁ ବାମପଟେ ଶିବ ମନ୍ଦିର ଏବଂ ଡାହାଣପଟେ ରହିଛି ସ୍ନାନ ବେଦୀ । ବେଶ୍ ସୁନ୍ଦର କାରୁକାର୍ଯ୍ୟ ଏ ସମ୍ପନ୍ନ ମନ୍ଦିର । ଭିତରେ ଠାକୁରବି ଖୁବ୍ ସୁନ୍ଦର ।

ଥରେ ଶ୍ରୀଜୀଉଙ୍କୁ ଦର୍ଶନ ସାରି ବେଢ଼ା ବୁଲି ଆସନ୍ତୁ । ବେଢ଼ାରେ ବିମଳାଙ୍କ ମନ୍ଦିର ଆଉ ପ୍ରସିଦ୍ଧ କ୍ଷୀରା ଭୋଗ । ୧୦ରୁ ଆରମ୍ଭ କରି ୧୦୦ ଟଙ୍କା ଯାଏ ଏଠାରେ ମାଟି କଙ୍ଗୋରୀରେ କ୍ଷୀରା ଭୋଗ ମିଳୁଛି । ତାର ସ୍ୱାଦରେ ଥିବା ନିଆରାପଣକୁ ମଧ୍ୟ ଆପଣ ବାରି ପାରିବେ ।

ମନ୍ଦିର ପରିସରରୁ ସ୍ୱର୍ଣ୍ଣଚୂଡ଼ ପାହାଡ଼ ତଳେ ଥିବା ରାଜପ୍ରାସାଦ ବେଶ୍ ସୁନ୍ଦର ଦିଶେ । ପ୍ରବେଶ ଦ୍ୱାର ଉଚ୍ଚା ଟାୱାରଟି ଦେଖୁଛନ୍ତି ଏହା ସେତେବେଳେ ଘଡ଼ିଘର ଭାବେ ପରିଚିତ ଥିଲା । ୪ଟି ଘଡ଼ି ଚାରି ଦିଗରେ ସମୟର ଗତି ସମ୍ପର୍କରେ ସୂଚନା ଦେଉଥିଲା । ଓଡ଼ିଶାର ଅନ୍ୟ କୌଣସି ଗଡ଼ଜାତରେ ଦେଖିବାକୁ

ମିଳେ ନାହିଁ । ରାଜା ଶ୍ୟାମଚନ୍ଦ୍ର ମର୍ଦ୍ଦରାଜଙ୍କ ସମୟରେ ଏହି ଘଡ଼ିଘର ତିଆରି ହୋଇଥିଲା ୧୯ଶ ମସିହା ପ୍ରାରମ୍ଭରେ । ଏହି ସମୟରେ ନୂଆ ରାଜ ଉଆସ ମଧ୍ୟ ତିଆରି କରାଯାଇଥିଲା । ଏ ସବୁଥିରେ ବଙ୍ଗୀୟ କାରିଗରିର ଛାପ ଦେଖିବାକୁ ମିଳେ । ପରବର୍ତ୍ତୀ ସମୟରେ ଟାୱାରର ସୁରକ୍ଷା ଦୃଷ୍ଟିରୁ ଓଜନିଆ ଘଡ଼ିଗୁଡ଼ିକୁ କାଢ଼ି ଦିଆଗଲା । ଆଉ ଏହାର ରକ୍ଷଣାବେକ୍ଷଣ ପାଇଁ ରାଜାଙ୍କ ବ୍ୟକ୍ତି ସମ୍ପତ୍ତି ତାଲିକାରୁ ଏହାକୁ ବାଦ୍ ଦିଆଯାଇ ଏକ ଟ୍ରଷ୍ଟ ପରିସରଭୁକ୍ତ କରାଗଲା । ଏବେ ଏହାର ରକ୍ଷଣାବେକ୍ଷଣ ପାଇଁ ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥା ଦାୟିତ୍ୱ ନେଇଛି ।

ଘଡ଼ିଘର ତଳେ ହେଉଛି ପ୍ରାସାଦ ଭିତରକୁ ଯିବାର ପ୍ରବେଶ ଦ୍ୱାର, ଯାହାର ଦୁଇ କଡ଼ରେ ଦୁଇଟି ସିଂହମୂର୍ତ୍ତି ସ୍ଥାପନା କରାଯାଇଛି । ଯାହାକି ପାରମ୍ପରିକ ଭାବେ ସୁରକ୍ଷାର ପ୍ରତୀକ ଗ୍ରହଣ କରେ। ପ୍ରବେଶ ଦ୍ୱାର ଡାହାଣପଟେ ରହିଛି ଏକ ସୁନ୍ଦର ମଣ୍ଡପ । ପୂର୍ବରୁ ଏହା ଛଉ ମଣ୍ଡପ ଭାବେ ପରିଚିତ ଥିଲା । ରାଜା ଶ୍ୟାମଚନ୍ଦ୍ର ମର୍ଦ୍ଦରାଜଙ୍କ ସମୟରେ ହିଁ ଏହା ତିଆରି ହୋଇଥିଲା । କିନ୍ତୁ ପରେ ରାଜା କିଶୋରଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ଏଥିପାଇଁ ବ୍ୟାପକ ପଦକ୍ଷେପ ନିଆଗଲା । ପାରମ୍ପରିକ ସମରକଳାକୁ ପ୍ରଦର୍ଶନ କରିବା ପାଇଁ ଏଥିରେ ବ୍ୟବସ୍ଥା ହୋଇଥିଲା । ନିଜର ନିଆରାପଣ ପାଇଁ ନୀଳଗିରିର ଛଉ ସାରା ଭାରତରେ ବି ନିଜ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ନେଇଥିବା କୁହାଯାଏ । ଶ୍ୟାମଚନ୍ଦ୍ର ମର୍ଦ୍ଦରାଜ ମୟୂରଭଞ୍ଜ ପରିବାରରୁ ପୋଷ୍ୟପୁତ୍ର ଭାବେ ଆସିଥିବାରୁ ଏଠାରେ ନୂଆ ଚିନ୍ତାଧାରା ଆପଣାଇବାକୁ ଚାହିଁଥିଲେ। ସେତେବେଳେ ସଂସ୍କୃତିର ପରିବାହକ ଛଉ ନୃତ୍ୟକୁ ପରିବେଷଣ କରି ମୟୂରଭଞ୍ଜ ନାଁ କମାଇ ଥିବାରୁ ସେ ମଧ୍ୟ ଏଠାରେ ପରମ୍ପରା ସୃଷ୍ଟି କରିବାକୁ ଚାହିଁଥିଲେ। ଫଳରେ ନୀଳଗିରି ଛଉର ସୃଷ୍ଟି ହୋଇଥିଲା। ଏ ପ୍ରକାର ଛଉରେ କଳାକାରମାନେ ମୁହଁରେ ରଙ୍ଗ ବ୍ୟବହାର କରି ନୃତ୍ୟ ମଣ୍ଡପକୁ ଓହ୍ଲାଉଥିଲେ। ଫଳରେ ଯିଏ ଯେଉଁ ଚରିତ୍ର କରୁଥିଲେ ସେଥିରେ ନିଜର ଅଭିନୟକୁ ଉତ୍ତାରିବାର ମଉକା ପାଉଥିଲେ। କିନ୍ତୁ ପୁରୁଲିଆ କି ଷଢେଇକଳା ଛଉରେ ଏହା ଦେଖିବାକୁ ମିଳେ ନାହିଁ। ଛଉର ଜନକଭାବେ ଷଢ଼େଇକଳାର ଯେଉଁ ପ୍ରାଧାନ୍ୟତା ରହିଛି ସେଠାରେ କାଗଜ ଓ ମାଟିରେ ତିଆରି ମୁଖା ପିନ୍ଧି ନୃତ୍ୟଶିଳ୍ପୀମାନେ ନୃତ୍ୟ ମଣ୍ଡପକୁ ଓହ୍ଲାଇଥାନ୍ତି।

ରାଜା କୃଷ୍ଣଚନ୍ଦ୍ର ମୟୂରଭଞ୍ଜର ରାଜପୁତ୍ରଙ୍କୁ ପୋଷ୍ୟଭାବେ ଗ୍ରହଣ କରିବା ପାଇଁ ପ୍ରଥମେ ରାଜି ନଥିଲେ। ରାଣୀଙ୍କ କୌଣସି ପିଲା ନଥିବାରୁ ସେ ଗୋଟିଏ ଫୁଲବାଈର ପୁଅ ଉମାକାନ୍ତକୁ ପୋଷ୍ୟଭାବେ ଗ୍ରହଣ କରିବା ପାଇଁ ଯୋଜନା କରିଥିଲେ। ହେଲେ ନିଜ ଭାଇ ହରିହର ଭ୍ରମରବର ରାୟ ସେତେବେଳର ଗଡ଼ଜାତ ଆଇନ ଅନୁସାରେ ନିଜର ପୁଅ ନଥିଲେ ଭ୍ରାତୃପୁତ୍ର ରାଜା ହେବାର ବିଧି ଥିଲା। ପୁଣି ହରିହରଙ୍କ ପୁଅ ଜନ୍ମ ହେବା ପରେ ରାଜା କୃଷ୍ଣଚନ୍ଦ୍ର ଏହା ମନସ୍ଥ ମଧ୍ୟ କରିଥିଲେ। କିନ୍ତୁ ପରବର୍ତ୍ତୀ ସମୟରେ ଫୁଲବାଈ ପ୍ରତି ତାଙ୍କର ଦୁର୍ବଳତା ଜାତ ହେଲା। ଆଉ ସେ ଏ ବିଷୟକୁ କାର୍ଯ୍ୟକାରୀ କରିବା ପାଇଁ ଦିୱାନ୍ ଫକୀର ମୋହନ ସେନାପତିଙ୍କୁ କହିଥିଲେ। କିନ୍ତୁ ଫକୀର ମୋହନ ଏଥିପ୍ରତି ଆଇନଗତ ତର୍ଜମା କରି ମନା କରିଥିଲେ। ଏଣୁ ଫକୀର ମୋହନ ଓ ରାଜା କୃଷ୍ଣଚନ୍ଦ୍ରଙ୍କ ଭିତରେ ତିକ୍ତତା ବୃଦ୍ଧି ପାଇଥିଲା ।

ଶ୍ୟାମଚନ୍ଦ୍ର ପୋଷ୍ୟଭାବେ ଆସିବା ପରେ ଛଉ ମଣ୍ଡପ ତିଆରି କରାଇବା ସହ ନୂଆ ରାଜ ପ୍ରାସାଦ ତିଆରି ମଧ୍ୟ କରାଇଥିଲେ, ଯାହା ଛଉ ମଣ୍ଡପର ଡାହାଣ ପାର୍ଶ୍ୱରେ ଅବସ୍ଥିତ। ଦୁଇ ମହଲା ବିଶିଷ୍ଟ। ହାତୀଦାନ୍ତ ରଙ୍ଗରେ ଏହାକୁ ରଙ୍ଗାଯାଇଛି। ନୂଆ ପ୍ରାସାଦର ତଳ ମହଲା ସେତେବେଳେ ଦରବାର ଭାବେ ବ୍ୟବହୃତ ହେଉଥିଲା । ତା' ପାଖରେ ଥିଲା କଚେରୀ ଘର । ଦରବାର ହଲ୍‌ରେ ବାଲ୍‌କୋନୀ ରହିଛି । ଅବଶ୍ୟ ଏହାକୁ ଏବେ ବନ୍ଦ କରିଦିଆଯାଇଛି । ଅନ୍ୟ ରାଜ୍ୟର ଦରବାର ହଲ୍‌ପରି ଏଠାରେ ମହିଳା ସଦସ୍ୟଙ୍କୁ ଦରବାର କାର୍ଯ୍ୟ ଦେଖିବାର ସୁଯୋଗ ଦେବାଲାଗି ଏ ବ୍ୟବସ୍ଥା ହୋଇଥିଲା। ଏହାଛଡ଼ା ସେତେବେଳେ ରାଣୀମାନେ ମହିଳାମାନଙ୍କ ସମସ୍ୟାକୁ ସିଧାସଳଖ ଶୁଣି ରାଜାଙ୍କ ଦୃଷ୍ଟିକୁ ଆଣୁଥିଲେ। ରାଣୀ ମଧ୍ୟ ମନ୍ଦିରଗୁଡ଼ିକର ପରିଚାଳନା ପାଇଁ ସିଧା ସଳଖ ନିଷ୍ପତ୍ତି ନେଉଥିଲେ। ଅର୍ଥାତ୍ ସେତେବେଳର ପ୍ରଶାସନରେ ରାଣୀଙ୍କ ଭୂମିକା ମଧ୍ୟ ଯଥେଷ୍ଟ ରହୁଥିଲା। ଦରବାର ହଲ୍‌ର ଉପର ଛାତରେ ପେପରମାଚିର କାମ । ଏବେବି ଏହା ଦେଖିଲାଭଳି ବାତାବରଣ ସୃଷ୍ଟି କରୁଛି । ତିଆରି ହେବା ପାଖାପାଖି ୭୦ ବର୍ଷ ବିତିଥିଲେ ମଧ୍ୟ ଏହା ଏବେ ଧ୍ୟାନ ଆକର୍ଷଣ କରିବାରେ ସମର୍ଥ । ଦୁଆର ଝରକାଗୁଡ଼ିକ ବେଶ୍ ପ୍ରଶସ୍ତ । ବାହାର ଆଲୁଅ ଆସିବା ପାଇଁ ଝରକା ଓ ଦୁଆର ଉପରେ ରଙ୍ଗୀନ କାଚ ଲଗାଯାଇଥିଲା, ଯାହା ବିଦେଶରୁ ଆମଦାନୀ ହୋଇଥିଲା ।

ତଳ ମହଲାରୁ ଉପରକୁ ଯିବା ପାଇଁ ଏକ କାଠ ତିଆରି ସିଡ଼ିର ବ୍ୟବସ୍ଥା ରହିଛି। ସେତେବେଳର କାରିଗରୀର ପାଦଚିହ୍ନ ଏହା ବହନ କରେ। ଏହାକୁ ଅନୁସରଣ କରି ସିଡ଼ିରେ ଧୀରେ

ଧୀରେ ଉପରକୁ ମୁଁ ଉଠିଲି । ଯେତିକି ପାହାଚ ଚଢ଼ୁଥିଲି ସେତିକି ନୀଳଗିରି ବିଷୟରେ କୌତୁହଳ ଉପୁଜୁଥିଲା । ଚଉଡ଼ା ଚଉଡ଼ା ପାହାଚ ସାଙ୍ଗକୁ ଶକ୍ତ ଆଡ଼ି । ଏ ଅଂଶବିଶେଷଗୁଡ଼ିକ ଭିତରେ ଏବେ ବଞ୍ଚି ରହିଛି ସେଥିରେ ବାରି ହେଉଥିଲା ରାଜା ଶାସନର ବାସ୍ନା । ପ୍ରଥମ ମହଲାକୁ ଏବେ ରାଜା ରୂପରେ ଅଭିଷିକ୍ତ ଜୟନ୍ତ ଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ନିଜର ବ୍ୟକ୍ତିଗତ ଆବାସ ଭାବରେ ବ୍ୟବହାର କରୁଛନ୍ତି । ପୁରୁଣା ସ୍ମୃତିଗୁଡ଼ିକୁ ସଜାଡ଼ି ନିଜ ଡ୍ରଇଂ ରୁମ୍‌ରେ ଅନ୍ୟମାନଙ୍କ ପାଇଁ ନୀଳଗିରିର ଗୌରବକୁ ଚିହ୍ନିବା ପାଇଁ ପରିବେଶ ସୃଷ୍ଟି କରୁଛନ୍ତି । ତାଙ୍କ ଅନୁସାରେ ଏ ପ୍ରାସାଦର ସ୍ମୃତି ବହୁତ, ଯାହାକୁ ଜାଣିବା ପାଇଁ ଅନେକଙ୍କ ଆଗ୍ରହ । ଏଥିପାଇଁ ସେ ତଳ ମହଲାକୁ ସମ୍ପୂର୍ଣ୍ଣଭାବେ ମ୍ୟୁଜିୟମ୍‌ରେ ପରିଣତ କରିବା ପାଇଁ ଚେଷ୍ଟା କରୁଛନ୍ତି ।

ଉପର ମହଲା ବା ରାଜାଙ୍କ ବ୍ୟକ୍ତିଗତ ଆବାସରେ ଅନେକ କିଛି ଜିନିଷର ସଂଗ୍ରହ ରହିଛି । କିଛି ରହିଛି ସୁରଙ୍ଗୀ ରାଜପ୍ରାସାଦର, ଆଉ କିଛି ଡମପଡ଼ା ଓ ଆଠମଲିକର । ଆଉ ନୀଳଗିରିର ଜିନିଷ ରହିବାତ ସ୍ୱାଭାବିକ । ଫଟୋଗୁଡ଼ିକୁ ଦେଖିଲେ ଏହା ସ୍ପଷ୍ଟ ହୋଇଯିବ । ଏହି ଫଟୋଗୁଡ଼ିକୁ ଦେଖିଲା ବେଳେ ମନେ ପଡ଼ିବ ନୀଳଗିରି ସହ ପୁରୀର ସମ୍ପର୍କ । ପୂର୍ବରୁ ତ କହିଛି ପୁରୀର ଜେମା ନୀଳଗିରିର ଶାସକ ନାରାୟଣ ବସନ୍ତ ବିରାଟ ଭୂଜଙ୍ଗ ମାନ୍ଧାତାଙ୍କୁ ବାହା ହେବା କଥା । ଏବେ ଏଇଠୁ ରାଜ ଜେମା ସ୍ନେହଲତା ମରୀ ଦେବୀ ମଧ୍ୟ ପୁରୀ ଗଜପତି ମହାରାଜା ବୀରକିଶୋର ଦେବଙ୍କୁ ବିବାହ କରିଥଲେ । ତାପରେ ସେ ପୁରୀରେ ସୂର୍ଯ୍ୟମଣି ପାଟମହାଦେଈ ଭାବେ ପରିଚିତ ହେଲେ । ସେଇଥିପାଇଁ ପୁରୀ ଗଜପତି ମହାରାଜା ଦିବ୍ୟସିଂହ ଦେବଙ୍କ ଏହା ମାମୁଁଘର ଭାବେ ପରିଚିତ ।

ସେହିପରି ସୁରଙ୍ଗୀର ତତ୍‌କାଳୀନ ଶାସକ ତଥା ଆନ୍ଧ୍ର ପ୍ରଦେଶ ବିଧାନସଭାର ବିଧାୟକ ରାଜା କୀର୍ତ୍ତିଚନ୍ଦ୍ର ଦେଓ ମଧ୍ୟ ଏ ରାଜ୍ୟ ସମୂହ ପ୍ରତ୍ୟକ୍ଷଭାବେ ସମ୍ପର୍କିତ । ବର୍ତ୍ତମାନର ନୀଳଗିରି ରାଜା ଜୟନ୍ତଚନ୍ଦ୍ରଙ୍କ ସେ ଶ୍ୱଶୁର । କୀର୍ତ୍ତିଚନ୍ଦ୍ରଙ୍କ ମୃତ୍ୟୁପରେ ପାଟସାମନ୍ତ ମନୋଜ ମରୀ ଦେବୀ ହେଉଛନ୍ତି ଏହାଙ୍କ ଉତ୍ତରାଧିକାରୀ । ଏଣୁ ସେ ରାଜ୍ୟର କିଛି ଫଟୋ ଓ ସ୍ମୃତି ମଧ୍ୟ ଏଠାରେ ରହିଛି ।

ଉପର ମହଲାର ଗୋଟିଏ ଅଂଶରେ ପଡ଼ିଛି ଏକ ସୁନ୍ଦର ଡାଇନିଂ ଟେବୁଲ୍ । ରାଜା ଜୟନ୍ତ ଚନ୍ଦ୍ରଙ୍କ କହିବା ଅନୁସାରେ ଏହା ଆଠମଲ୍ଲିକ୍ ରାଜ୍ୟର ସ୍ମୃତି । ମନୋଜ ମରୀ ଦେବୀଙ୍କ ମାଉସୀ ଘର ହେଉଛି ଆଠମଲ୍ଲିକ । ସେ ତାଙ୍କୁ ପୋଷ୍ୟଭାବେ ଗ୍ରହଣ କରିଛନ୍ତି । ଫଳରେ ପାଟସାମନ୍ତ ମନୋଜ ମରୀ ଆଠମଲ୍ଲିକର ଦାୟାଦ ବି ପାଲଟିଛନ୍ତି । ଏହିକ୍ରମରେ ଅନେକ ସଂଗ୍ରହ ଏଠି ଦେଖିବାକୁ ମିଳେ । ତାଛଡ଼ା ନୀଳଗିରି ରାଜ୍ୟର ଶାସକମାନଙ୍କ ସମ୍ବନ୍ଧରେ ମଧ୍ୟ ଏହା ଅନେକ କିଛି ବଖାଣେ ଯେମିତି ନୀଳଗିରିକୁ ଶାସନ କରୁଥିବା ଶାସକମାନଙ୍କ ଫଟୋ । ଫଟୋରୁ ସେମାନଙ୍କ ବେଶ ପୋଷାକ, ଆଭିଜାତ୍ୟ ଓ ଶାସନର ପରିବର୍ତ୍ତନ ସମ୍ପର୍କରେ ସୂଚନା ମିଳିବା ସହଜ । ରାଜା କୃଷ୍ଣଚନ୍ଦ୍ର ମୁଣ୍ଡରେ ଗୋଲ ଟୋପି ପିନ୍ଧିଥିବା ଦେଖିବାକୁ ମିଳେ । ତାଙ୍କ ପରେ ଶେଷ ହେଲା ରାଜ୍ୟରେ ପାରମ୍ପରିକ ମୋଗଲ ବା ମରହଟ୍ଟା ଟୋପି ପିନ୍ଧାରେ ପରିବର୍ତ୍ତନ ଆସିଲା । ରାଜାମାନେ ପଗଡ଼ି ପିନ୍ଧା ହେଲା ଆଉ ରାଜ ମୁକୁଟରେ ବିଭିନ୍ନ ରଙ୍ଗର ପକ୍ଷୀମାନଙ୍କ ପର ବା ଚୂଳ ଶୋଭା ପାଇଲା । ପ୍ରାସାଦରେ ସଂଗ୍ରହ କରାଯାଇ ରଖାଯାଇଥିବା ଟ୍ରଫିଗୁଡ଼ିକୁ ଦେଖିଲେ ସେତେବେଳେ ରାଜାମାନଙ୍କ ବୀରତ୍ୱ ଓ ସାହସିକତାର ନିଦର୍ଶନ ମିଳେ, ଯାହାକି ପରବର୍ତ୍ତୀ ସମୟରେ ସେମାନଙ୍କ ପାଇଁ ଏକ ସଉକରେ ପରିଣତ ମଧ୍ୟ ହୋଇଥିଲା । ନିକଟସ୍ଥ କୁଳଡିହା ଜଙ୍ଗଲ ମୁଖ୍ୟତଃ ସେତେବେଳେ ପାଲଟିଥିଲା ଶିକାରର ପେଣ୍ଠସ୍ଥଳ, ଯେଉଁଠାରୁ ମହାବଳ ବାଘ ସମେତ ଗୟଳ ଓ ହରିଣ ସବୁକୁ ଶିକାର କରାଯାଇଥିଲା ।

ରାଜା କୃଷ୍ଣଚନ୍ଦ୍ର ନୀଳଗିରିରେ ଆଧୁନିକ ଶାସନର ମୂଳଦୁଆ ପକାଇଥିଲେ । ଜଳସେଚନ ପାଇଁ ପୋଖରୀ ଖୋଳାଇବା, ସ୍କୁଲ ତିଆରି, ମନ୍ଦିର ତିଆରି ରାସ୍ତାଘାଟ ତିଆରି ଆଦିରେ ସେ ଧ୍ୟାନ ଦେଲେ । ତାଛଡ଼ା ପଞ୍ଚ ଲିଙ୍ଗେଶ୍ୱରରେ ପର୍ଯ୍ୟଟନର ବିକାଶ ତାଙ୍କ ସମୟରେ ହିଁ ହୋଇଥିଲା ।

ତାଙ୍କ ସମୟରେ ନୀଳଗିରିର ଦିଓ୍ୱାନ୍ ଭାବେ କାର୍ଯ୍ୟ କରୁଥିଲେ ପ୍ରବାଦ ପୁରୁଷ ଫକୀର ମୋହନ ସେନାପତି, ଯାହାଙ୍କ ପରାମର୍ଶରେ ନୀଳଗିରି ପ୍ରଜାଙ୍କ ପାଇଁ ବିକାଶମୂଳକ ଯୋଜନା ହାତକୁ ନେଇପାରିଥିଲା । ସମସ୍ତ ଦାୟିତ୍ୱ ଫକୀର ମୋହନଙ୍କ ଉପରେ ନ୍ୟସ୍ତ ଥିଲା । ରାଜା ସାହେବ କିଲ୍ଲା ସମ୍ବନ୍ଧରେ କୌଣସି କାର୍ଯ୍ୟ ବୁଝୁ ନଥିଲେ । ଫକୀରମୋହନଙ୍କ କୌଣସି କାର୍ଯ୍ୟ ଅପ୍ରୀତିକର ହେଲେ ମଧ୍ୟ ସେ ମୁହଁ ଫିଟାଇ କିଛି କହୁ ନଥିଲେ । ଫକୀର ମୋହନଙ୍କ ସମ୍ପର୍କରେ ରାଜାଙ୍କ ଚକ୍ଷୁ ଲଜ୍ଜା ଥିଲା ।

ନୀଜଗଡ଼ର ପୂର୍ବ ଦିଗରୁ ଠାରୁ ଟ୍ରଙ୍କରୋଡ଼ ଯାଏଁ ରାସ୍ତା ଯାହାକି ଏବେ ଯୋଗାଯୋଗର ମୁଖ୍ୟ ମାଧ୍ୟମ ତାହା ଫକୀର ମୋହନଙ୍କ ଆଦେଶରେ ତିଆରି ହୋଇଥିଲା । ନୀଳଗିରିରେ

କୌଣସି ହାଟ ବଜାର ନଥିବାରୁ ସେତେବେଳେ ରେମୁଣା ହାଟରୁ ଦୁଇ ତିନିଜଣ ବିଧବା ସପ୍ତାହରେ ଦୁଇ ତିନିଥର ପରିବା ନେଇ ଆସୁଥିଲେ। ଯଦି କେହି ଦୋକାନ ଖୋଲୁଥିଲା ତେବେ ରାଜାଙ୍କ ପାଖ ଲୋକଙ୍କ ଦ୍ୱାରା ପ୍ରତାରିତ ହେଉଥିଲା । ଏଣୁ ଦୋକାନୀ ପୁଞ୍ଜି ପଟା ଛାଡ଼ି ପଳାଉଥିଲା। ଏଣୁ ଗଡ଼ ସମ୍ମୁଖରେ ଥିବା ଶଙ୍କରଖୁଣ୍ଟା ପୋଖରୀ କୂଳରେ ଫକୀର ମୋହନ ଏକ ହାଟ ବସାଇଥିଲେ।

ରାଜା କୃଷ୍ଣଚନ୍ଦ୍ରଙ୍କ ସମୟରେ ରାଜ ଶାସନର ଏକ ପ୍ରତୀକ ତିଆରି କରାଗଲା । ଦୁଇପଟେ ଦୁଇ ସିଂହ ରଖାଯାଇ ମଝିରେ ଲେଖାଯାଇଥିଲା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ୍ ହରିଚନ୍ଦନ । ତଳେ ବଂଶ ପରମ୍ପରା ସ୍ୱରୂପ ନାଗ ସାପର ଚିହ୍ନ ରହିଲା । ଏଥିରୁ ଏହା ପ୍ରମାଣିତ ଯେ ଏମାନେ ନାଗ ବଂଶୀ ଶାସକ । ତାସହ ଏକ କଲରା ଫୁଲ ମଧ୍ୟ ରଖାଯାଇଛି । ଯାହାକି ନାରାୟଣ ବସନ୍ତ ବିରାଟ ଭୂଜଙ୍ଗ ମାନ୍ଧାତାଙ୍କ ପାଟ୍ଟ ସାମନ୍ତ କଲରା ଦେବୀଙ୍କୁ ସୂଚନା ଦେଉଛି । କାରଣ ନାରାୟଣ ବସନ୍ତଙ୍କ ପତ୍ନୀ କଲରା ଦେବୀଙ୍କଠାରୁ ହିଁ ଏହି ବଂଶର ପ୍ରକୃତ ମୂଳଦୂଆ ପଡ଼ିଥିବା ବିଶ୍ୱାସ କରାଯାଏ ।

ମୟୂରଭଞ୍ଜ ରାଜ ବଂଶରୁ ପୁଅ ଭାବେ ପୋଷ୍ୟ ହୋଇ ଆସି ଶ୍ୟାମଚନ୍ଦ୍ର ମର୍ଦ୍ଦରାଜ ନୀଳଗିରିରେ ୧୮୯୩ରୁ ୧୯୧୩ ଯାଏଁ ୩୬ତମ ରାଜା ଭାବେ ଶାସନ କରିଛନ୍ତି । ତାଙ୍କ ପରେ କିଶୋରଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ୧୯୧୩ ମସିହାରେ ଗାଦି ଆରୋହଣ କଲେ । ୩୭ତମ ଶାସକଭାବେ ସେ ଏପ୍ରିଲ ୧୯୨୦ରେ ଶାସକର କ୍ଷମତା ପାଇଲେ । ୧୯୪୭ ରେ ରାଜ୍ୟ ମିଶ୍ରଣ ହେବାଯାଏଁ ସେ ହିଁ ଥିଲେ ରାଜ୍ୟର ମୁଖ୍ୟ । ତାଙ୍କ ପରଠୁ ରାଜାଶାସନର ଲୋପ ପାଇଲା । ଆଳଙ୍କରିକ ଭାବେ ରାଜବଂଶକୁ ଆଗକୁ ନେଇ ଚାଲିଛନ୍ତି ଏହାର ବଂଶଜ । କିଶୋର ଚନ୍ଦ୍ରଙ୍କ ପରେ ରାଜେନ୍ଦ୍ରଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ୧୯୬୦ ଯାଏ ଭାରତ ସରକାରଙ୍କ ଦ୍ୱାରା ନୀଳଗିରି ରାଜା ଏବଂ ଶାସକ ଭାବେ ପରିଚିତ ଥିଲେ । ସେ ୧୯୬୧, ୭୪, ୭୭ ମସିହାରେ ଓଡ଼ିଶା ବିଧାନସଭାକୁ ମଧ୍ୟ ପ୍ରତିନିଧିତ୍ୱ କରିଥିଲେ । ତାଙ୍କପରେ ଜୟନ୍ତଚନ୍ଦ୍ର ନୀଳଗରିରି ପୂର୍ବ ଇତିହାସକୁ ସାଇତିବା ପାଇଁ ଚେଷ୍ଟା ଚଳାଇଛନ୍ତି ।

ଗୋଟିଏ ରାଜ୍ୟ ଶାସନରେ ଯାହା ରହିବା କଥା ନୀଳଗିରିରେ ଥିଲା । ନିଜସ୍ୱ କୋର୍ଟ, କଚେରୀ, ପୋଲିସ ବ୍ୟବସ୍ଥା, ଜେଲ୍, ପିଇବା ପାଣି, ଡାକ୍ତରଖାନା, ସ୍କୁଲ ବ୍ୟବସ୍ଥା ସବୁ କିଛି । ନୀଳଗିରି ସହର ବୁଲିବା ବେଳେ ଏସବୁ ସାମନାକୁ ଆସିଯାଏ ।

ହାଇସ୍କୁଲ ନଥିଲେ ମଧ୍ୟ ମଧ୍ୟଇଂରାଜୀ, ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ସ୍କୁଲରେ ସେତେବେଳେ ପିଲାସଂଖ୍ୟା ଥିଲା ୧୯୮୭ । ରାଜ୍ୟ ଶାସନ ଏଥିପାଇଁ ବର୍ଷକୁ ୧୧ହଜାର ୬୯୨ଟଙ୍କା ଖର୍ଚ୍ଚ କରୁଥିଲେ । ଝିଅ ପିଲାଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଗ୍ରହଣ କରାଯିବା ସହ ସାନ୍ତାଳ ପିଲାଙ୍କ ପାଇଁ ଅଲଗା ସ୍କୁଲ ତିଆରି କରାଯାଇଥିଲା । ସେହିପରି ହସ୍‌ପିଟାଲର ଦକ୍ଷତା ବୃଦ୍ଧି ପାଇଁ ଜଣେ ଆସିଷ୍ଟାଣ୍ଟ ସର୍ଜନ୍‌ଙ୍କୁ ମେଡିକାଲ ଅଫିସରଭାବେ ନିଯୁକ୍ତ କରାଯାଇଥିଲା । ତାଙ୍କ ସହ ଜଣେ ସିଭିଲ୍ ହସ୍‌ପିଟାଲ ଆସିଷ୍ଟାଣ୍ଟ, ଜଣେ ମହିଳା ସିଭିଲ୍ ହସ୍‌ପିଟାଲ ଆସିଷ୍ଟାଣ୍ଟ ନିଯୁକ୍ତ ଥିଲେ । ରୋଗ ପ୍ରତିଷେଧକ ଟୀକାର ବ୍ୟବସ୍ଥା ଥିଲା, ଯେଉଁଥିରେ ହଇଜାକୁ ରୋକିବା ପାଇଁ ପ୍ରାଧାନ୍ୟତା ଦିଆଯାଇଥିଲା ।

ଧର୍ମୀୟ ଭାବନାକୁ ସୁରକ୍ଷା ଦେବା ପାଇଁ ରାଜାମାନେ ବେଶ୍ ଗୁରୁତ୍ୱ ଦେଉଥିଲେ । ଫକୀର ମୋହନଙ୍କ ଦେୱାନୀ ସମୟରେ ରାଜାଙ୍କୁ ମନ୍ଦିର ପରିଚାଳନାଠୁ ଅଲଗା କରିବା ପାଇଁ ପରାମର୍ଶ ଦିଆଗଲା । ଏଥିନେଇ ଗଢ଼ାହେଲା ଠାକୁର ମାହାଲ । ରାଜମହଲର ବାହାରେ ଏଥିପାଇଁ ସ୍ୱତନ୍ତ୍ର ଅଫିସ ରହିଲା । ନୀଳଗିରିର ବିଭିନ୍ନ ସ୍ଥାନରେ ଥିବା ୨୩ଟି ମନ୍ଦିରର ପରିଚାଳନା ପାଇଁ ଏହି ଠାକୁର ମାହାଲ କାର୍ଯ୍ୟକଲା । ଯେଉଁଥିରେ ସାଧାରଣ ଲୋକ ପରିଚାଳନା ପାଇଁ ନିୟୋଜିତ ଥିଲେ । ଠାକୁରମାହାଲ ଟ୍ରଷ୍ଟର ଅଧ୍ୟକ୍ଷଭାବେ ସେତେବେଳେ ପାଟ୍ଟସାମନ୍ତ ବା ମହାରାଣୀଙ୍କୁ ଦାୟିତ୍ୱ ଦିଆଯାଇଥିଲା, ଯାହା ଆଜି ଯାଏଁ ଚଳିଆସୁଛି । ବୋଧହୁଏ ଏହି କାରଣରୁ ଆଜି ମନ୍ଦିରଗୁଡ଼ିକ ବେଶ୍ ଭଲଭାବେ ପରିଚାଳିତ ହୋଇ ଆସୁଛି ।

ରାଜବାଟୀ ବାହରେ ନୀଳଗିରିରେ ଥିବା ଶ୍ରୀରାମ ମନ୍ଦିର ଏବଂ ମଙ୍ଗଳା ମନ୍ଦିର ଏହି ସୁପରିଚାଳନାର ଗୋଟିଏ ଗୋଟିଏ ଉଦାହରଣ । ବଙ୍ଗୀୟ ସ୍ଥାପତ୍ୟରେ ଗଢ଼ା ହୋଇଛି ଶ୍ରୀରାମ ମନ୍ଦିର । ବାହାରୁ ଦେଖିଲେ ଜଣାପଡ଼ିବ ଯେମିତି ଏହା ଅନେକ ମନ୍ଦିରର ସମାହାର । କିନ୍ତୁ ତାହା ନୁହେଁ । ୯ଟି ଶିଖର ଏଥିରେ ରହିଛି । ରଥଯାତ୍ରା ସମୟରେ ଶ୍ରୀଜଗନ୍ନାଥ ଏଠାରେ ଅବସ୍ଥାନ କରନ୍ତି । ଏଣୁ ଗୋଟିଏ ଭାଗ ଏହାର ଗୁଣ୍ଡିଚା ମନ୍ଦିର ଭାବେ ପରିଚିତ ।

କୃଷ୍ଣଚନ୍ଦ୍ରଙ୍କ ପାଟ୍ଟସାମନ୍ତ ଆନନ୍ଦକୁମାରୀ ବୃଦ୍ଧାବସ୍ଥାରେ ଏଇଠିକୁ ଆସି ଖରାବେଳେ ଆରାମ କରୁଥିଲେ । ଆଉ ସନ୍ଧ୍ୟାରେ ଫେରିଯାଉଥିଲେ । ସେଥିପାଇଁ ଉପର ମହଲା ବ୍ୟବହୃତ ହେଉଥିଲା । ଏବେ ମଧ୍ୟ ସେ ମହଲାକୁ ଯାଇ ହେଉଛି।

ମନ୍ଦିରର ନିକଟରେ ରହିଛି ରାଜ ଶାସନର ଆଉ ଏକ ପ୍ରତୀକ । ଅତିଥିଭବନ ଭାବେ ଏହାକୁ ବ୍ୟବହାର କରାଯାଉଥିଲା ।

କିନ୍ତୁ ରାଜା ଶ୍ୟାମଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ଯେତେବେଳେ ଦ୍ୱିତୀୟ ବିବାହ କଲେ ସେତେବେଳେ ପାଟସାମନ୍ତ ଚନ୍ଦ୍ରାବତୀ ଦେବୀ ଏଇଠି ରହୁଥିଲେ । କାରୁକାର୍ଯ୍ୟସମ୍ପନ୍ନ ଖମ୍ବ ସବୁ ଏଠାରେ ଦେଖିବାକୁ ମିଳେ । ତାଛଡ଼ା ମୁଗୁନି ପଥରର ସ୍ଥାପତ୍ୟ । ବେଶ୍ ଆକର୍ଷଣୀୟ । କୃଷ୍ଣଚନ୍ଦ୍ରଙ୍କ ପତ୍ନୀ ଏଠାରେ ପରିଣତ ବୟସରେ ରହୁଥିଲେ ।

ନୀଳଗିରିର ଏଇ ଇତିହାସରେ ସାମିଲ ହୋଇ ଆଗକୁ ମାଡ଼ିଲା ବେଳକୁ ସାମନାକୁ ଆସିଲା ନୀଳଗିରି ପାରମ୍ପରିକ କଳା କୌଶଳ । କଳା ମୁଗୁନି ପଥରରେ ଶିଳ୍ପୀଙ୍କ ସୃଜନଶୀଳତାର ଛାପ । ତା' ଭିତରେ ସେମାନଙ୍କ ଜୀବନଜୀବିକା ଖୋଜିବାର ପ୍ରୟାସ । ଏଥିରେ ଯେ, ରାଜଶାସନର ପୃଷ୍ଠପୋଷକତା ନଥିଲା ତା' ନୁହେଁ । ରାଜାମାନେ କଳା ଓ ଭାସ୍କର୍ଯ୍ୟକୁ ପ୍ରୋତ୍ସାହିତ କରୁଥିଲେ । ସେତେବେଳେ ଏହା ଏକ ପ୍ରମୁଖ ବ୍ୟବସାୟିକ ପେଣ୍ଠସ୍ଥଳୀ ଥିଲା । ଦିନେ ଏଇ ପଥର ବ୍ୟବସାୟ ନୀଳଗିରିରେ ପ୍ରଥମ ପ୍ରଜାମେଳିର ସୂତ୍ରପାତ କରିଥିଲା । ପରବର୍ତ୍ତୀ ସମୟରେ ଇଂରେଜ ସୁପରିନ୍‌ଟେଣ୍ଡେଣ୍ଟ ରାଭେନ୍ସା ଏହାକୁ ଦମନ କରିବା ପାଇଁ ନୀଳଗିରି ଗସ୍ତରେ ଆସିଥିଲେ । ଦିୱାନ୍ ଫକୀର ମୋହନ ଏ ମେଳିକୁ ରୋକିବାରେ ଅସମର୍ଥ ଥିବାରୁ ତିରସ୍କାର ମଧ୍ୟ କରିଥିଲେ ।

ସେତେବେଳେ ସିନା ପ୍ରଜାମେଳିକୁ ଦମନ କରାଯାଇପାରିଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ଯେତେବେଳେ ପ୍ରଶାସନରେ ପ୍ରଜାମାନଙ୍କ ଭାଗିଦାରୀକୁ ନେଇ ଚର୍ଚ୍ଚା ଆରମ୍ଭ ହୋଇଥିଲା ସେଥିରୁ ମଧ୍ୟ ବାଦ୍ ପଡ଼ି ନଥିଲା ନୀଳଗିରି । ଅବଶ୍ୟ ସ୍ୱାଧୀନ ଚେତାରେ ଅନୁପ୍ରାଣିତ ହୋଇ ସେତେବେଳେ ସାରା ଭାରତରେ ପ୍ରଜାମେଳି ହେଉଥିଲା । ଗଡ଼ଜାତ ରାଜାମାନଙ୍କଠାରୁ ଶାସନ ପ୍ରଜାଙ୍କ ହାତକୁ ଆଣିବାକୁ ଚାହିଁଥିଲେ ସାଧାରଣ ଲୋକ । କିନ୍ତୁ ଏଠି ଏହା ଅଧିକ ଗୁରୁତ୍ୱ ବହନ କରିଥିଲା କାରଣ ନୀଳଗିରିରେ ପ୍ରଜା ସବୁଠାରୁ ଅଧିକ କର ଦେଉଥିଲେ । ବିଭିନ୍ନ ନାଁରେ ଏହି କର ଆଦାୟ କରାଯାଉଥିଲା । ଯଦି ବ୍ରିଟିଶ୍ ସମୟରେ ଲିଖିତ ନଥିକୁ ଅନୁଧ୍ୟାନ କରାଯାଏ ତେବେ ନୀଳଗିରି ଥିଲା ଦ୍ୱିତୀୟ ରାଜ୍ୟ ଯେଉଁଠାରେ ଅଧିକ କର ଆଦାୟ କରାଯାଉଥିଲା । କଳାହାଣ୍ଡିରେ ଏକର ପିଛା ୬ଟଙ୍କା ୧୧ପଇସା କର ଆଦାୟ କରାଯାଉଥିବା ବେଳେ ନୀଳଗିରିରେ ଏହାଥିଲା ୫ଟଙ୍କା । ପୁଣି ରାଜ୍ୟ ବଜେଟର ୫୦ ପ୍ରତିଶତରୁ ଅଧିକ ଟଙ୍କା ଖର୍ଚ୍ଚ ହେଉଥିଲା ରାଜବାଟୀ ଓ ରାଜାଙ୍କ ସୌଖୀନ ଦ୍ରବ୍ୟର ସାଜସଜ୍ଜାରେ । ଏହି କର ଆଦାୟ ବ୍ୟବସ୍ଥା ସେତେବେଳେ ପ୍ରଜାମାନଙ୍କୁ ଏକାଠି କରିବାରେ ସମର୍ଥ ହୋଇଥିଲା । ୧୯୩୮ ମସିହାରେ ଏହା ଅଧିକ ତ୍ୱରାନ୍ୱିତ ହେଲା । ଏହାକୁ ନେଇ ବ୍ରିଟିଶ୍ ଶାସନର ଧ୍ୟାନ ଆକର୍ଷିତ ହେଲା । ୧୯୩୯ରେ ଏଥିନେଇ ଏକ ତଦନ୍ତ କମିଟି ମଧ୍ୟ ବସିଥିଲା ।

ଧୀରେ ଧୀରେ ପଡ଼ୋଶୀ ରାଜ୍ୟରେ ସୃଷ୍ଟି ହୋଇଥିବା କ୍ଷମତା ହସ୍ତାନ୍ତର ପ୍ରକ୍ରିୟା ଏଠା ଶାସନକୁ ପ୍ରଭାବିତ କଲା । ରାଜା କିଶୋରଚନ୍ଦ୍ର ମର୍ଦ୍ଦରାଜ ମଧ୍ୟ ନିଷ୍ପତ୍ତି ନେଇଥିଲେ ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଉଥିବା କୈଳାସ ଚନ୍ଦ୍ର ମହାନ୍ତିଙ୍କୁ ପ୍ରିମିୟର କରିବେ । ରାଜ୍ୟ ଶାସନକୁ ମୟୂରଭଞ୍ଜ ଭଳି ପରିଚାଳିତ କରିବେ । ଏଥିପାଇଁ ମଧ୍ୟ ପ୍ରଜା ମଣ୍ଡଳର ନେତାମାନଙ୍କ ସହ ଆଲୋଚନା ସରିଥିଲା । କିନ୍ତୁ ଏହା ପୂର୍ବରୁ ବାଲେଶ୍ୱର ଜିଲାପାଳଙ୍କୁ ବ୍ରିଟିଶ୍ ହାଇକମାଣ୍ଡଙ୍କ ଆଦେଶ ଆସିଲା ଆଇନଶୃଂଖଳା ପରିସ୍ଥିତିକୁ ନିଜ ଆୟତ୍ତକୁ ନେବା ପାଇଁ । ପରେ ଆରମ୍ଭ ହେଲା ଦେଶୀୟ ରାଜ୍ୟଗୁଡ଼ିକର ସମ୍ମିଶ୍ରଣ ପ୍ରକ୍ରିୟା । ଆଉ ଅନ୍ୟ ରାଜ୍ୟଗୁଡ଼ିକ ପରି ନୀଳଗିରି ଓଡ଼ିଶା ପ୍ରଦେଶ ସହ ମିଶିଲା । ରାଜ ଶାସନର ଅନ୍ତ ହେଲା ।

ଏମ୍‌ଆଇଜି-୫୧, ଅନନ୍ତ ବିହାର
ପୋଖରୀପୁଟ,
ଭୁବନେଶ୍ୱର-୨୦

❖ ❖ ❖

# ସପ୍ରସଙ୍ଗ ଓଡ଼ିଶା



## ମରୁଡ଼ି ଭଳି ସ୍ଥିତିର ପ୍ରଶମନ ପାଇଁ ଆବଶ୍ୟକୀୟ ପଦକ୍ଷେପ ନେବାକୁ ବ୍ୟାଙ୍କ୍‌ମାନଙ୍କୁ ପରାମର୍ଶ

ମରୁଡ଼ିଭଳି ସ୍ଥିତିଯୋଗୁଁ କ୍ଷତିଗ୍ରସ୍ତ କୃଷକମାନଙ୍କ ପାଇଁ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଘୋଷିତ ପ୍ୟାକେଜ୍ ଅନୁସାରେ ଆବଶ୍ୟକୀୟ ପଦକ୍ଷେପ ନେବା ଲାଗି ବ୍ୟାଙ୍କ୍‌ମାନଙ୍କୁ ପରାମର୍ଶ ଦିଆଯାଇଛି । ଏଥିନିମନ୍ତେ ଆଜି ସଚିବାଳୟଠାରେ ମୁଖ୍ୟ ଶାସନ ସଚିବ ଶ୍ରୀ ଗୋକୁଳ ଚନ୍ଦ୍ର ପତିଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ବ୍ୟାଙ୍କ୍ ସମନ୍ୱୟ ବୈଠକ ଅନୁଷ୍ଠିତ ହୋଇଥିଲା । ଉନ୍ନୟନ କମିଶନର ଶ୍ରୀ ଉପେନ୍ଦ୍ରନାଥ ବେହେରା ଏବଂ ଅତିରିକ୍ତ ଶାସନ ସଚିବ ଅର୍ଥ ବିଭାଗ ଶ୍ରୀ ଆର.ବାଲ୍‌କ୍ରିଷ୍ଣନ୍‌ଙ୍କ ସମେତ ନାବାର୍ଡ଼, ରିଜର୍ଭ ବ୍ୟାଙ୍କ୍, ରାଜ୍ୟସ୍ତରୀୟ ବ୍ୟାଙ୍କ୍ ସମନ୍ୱୟ କମିଟି ଏବଂ ସମବାୟ ବ୍ୟାଙ୍କ୍‌ର ଉଚ୍ଚ କର୍ତ୍ତୃପକ୍ଷମାନେ ବୈଠକରେ ଯୋଗ ଦେଇଥିଲେ । ମରୁଡ଼ି ପ୍ରଭାବିତ ଅଂଚଳରେ ଖରିଫ ଋଣ ଆଦାୟ–ସୂଚୀ ପରିବର୍ତ୍ତନ, ଆଗାମୀ ରବିଚାଷ ପାଇଁ ଋଣ ପ୍ରଦାନ ଏବଂ ସ୍ଥିତିର ଉପଶମ ନିମନ୍ତେ ସରକାର ନେଇଥିବା ବିଭିନ୍ନ ପଦକ୍ଷେପ ବିଷୟରେ ବୈଠକରେ ସବିଶେଷ ଆଲୋଚନା ହୋଇଥିଲା । ଖରିଫ ଚାଷ ପାଇଁ ଦିଆଯାଇଥିବା ଋଣ ଆଦାୟ ନିମନ୍ତେ ବର୍ତ୍ତମାନ ସମବାୟ ବ୍ୟାଙ୍କ୍ ବା ବ୍ୟବସାୟିକ ବ୍ୟାଙ୍କ୍‌ମାନେ ଚାଷୀଙ୍କ ଉପରେ ଚାପ ପ୍ରୟୋଗ କରିବେ ନାହିଁ ବୋଲି ବୈଠକରେ ନିଷ୍ପତ୍ତି ହୋଇଛି । ଖରିଫ ଋଣ ସୁଝିବା ଉପରେ ଗୁରୁତ୍ୱ ନଦେଇ ଚାଷୀମାନଙ୍କୁ ରବି ଋଣ ଯୋଗାଇ ଦିଆଯିବ । ଜିଲ୍ଲାସ୍ତରୀୟ ବୈଷୟିକ କମିଟିର ବୈଠକ ତୁରନ୍ତ ଡକାଇ ବିଭିନ୍ନ ପ୍ରକାର ରବି ଫସଲ ନିମନ୍ତେ ବାସ୍ତବବାଦୀ ରବିଋଣ ପରିମାଣ ଧାର୍ଯ୍ୟ କରିବାକୁ ମୁଖ୍ୟ ଶାସନ ସଚିବ ଶ୍ରୀ ପତି ନିର୍ଦ୍ଦେଶ ଦେଇଛନ୍ତି । ଏଥିନିମନ୍ତେ ଜିଲ୍ଲାପାଳ ତଥା ସମବାୟ ବ୍ୟାଙ୍କ୍‌ମାନଙ୍କୁ ଆବଶ୍ୟକୀୟ ନିର୍ଦ୍ଦେଶାବଳୀ ଦେବା ପାଇଁ ବୈଠକରେ ଉପସ୍ଥିତ ସମବାୟ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ମନୋଜ ଆହୁଜାଙ୍କୁ ପରାମର୍ଶ ଦିଆଯାଇଛି । ଜିଲ୍ଲା ସ୍ତରରେ ବ୍ୟାଙ୍କ୍ ସମନ୍ୱୟ ବୈଠକ  ଡାକି କୃଷକମାନଙ୍କୁ ତୁରନ୍ତ ରବି ଋଣ ଯୋଗାଇବା ନିମନ୍ତେ ଲିଡ୍ ବ୍ୟାଙ୍କ୍‌ମାନଙ୍କୁ ଆବଶ୍ୟକୀୟ ନିର୍ଦ୍ଦେଶ ଦେବା ପାଇଁ ମଧ୍ୟ ରାଜ୍ୟସ୍ତରୀୟ ବ୍ୟାଙ୍କ୍ ସମନ୍ୱୟ କମିଟି ଏବଂ ନାବାର୍ଡ଼ଙ୍କୁ ପରାମର୍ଶ ଦିଆଯାଇଛି ।

ଜଳସେଚନ ସୁବିଧା ଥିବା ସ୍ଥାନ ଏବଂ ମାଟିରେ ଥିବା ଆର୍ଦ୍ରତା ଅନୁସାରେ ମିଶ୍ରିତ ରବିଫସଲ, ପନିପରିବା ଏବଂ ଗୋଖାଦ୍ୟ ଘାସ ଆଦି ଚାଷ ନିମନ୍ତେ ଆବଶ୍ୟକୀୟ ପରାମର୍ଶ ଦେବା ପାଇଁ ମଧ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ପତି କୃଷି ବିଭାଗଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଖରିଫ ଋଣ ଆଦାୟ–ସୂଚୀ ଶସ୍ୟକଟା ବିବରଣୀ ମିଳିବା ପରେ ପୁନଃ ନିର୍ଦ୍ଧାରଣ କରାଯିବ ବୋଲି ବୈଠକରେ ନିଷ୍ପତ୍ତି ହୋଇଛି । ଚଳିତ ବର୍ଷ ଶସ୍ୟକଟା ବିବରଣୀ ତିନିଟି ମାନାଙ୍କରେ ପ୍ରସ୍ତୁତ କରାଯିବ । ସେଗୁଡ଼ିକ ହେଲା ଶତକଡା ୩୩ ଭାଗରୁ ଅଧିକ ଶସ୍ୟ ହାନୀ ଘଟିଥିବା ଅଂଚଳ, ଶତକଡା ୫୦ ଭାଗରୁ ଅଧିକ ଶସ୍ୟ ହାନୀ ଅଂଚଳ ଏବଂ ଶତକଡା ୬୬ ଭାଗରୁ ଅଧିକ ଶସ୍ୟହାନୀ ଘଟିଥିବା ଅଂଚଳ । ଏହି ଅନୁସାରେ ଜିଲ୍ଲା ଓ ତହସିଲମାନଙ୍କୁ ଆବଶ୍ୟକୀୟ ଗାଇଡ଼ ଲାଇନ୍ ପଠାଇବା ପାଇଁ ମୁଖ୍ୟ ଶାସନ ସଚିବ ଶ୍ରୀ ପତି ସମବାୟ ବିଭାଗ ଏବଂ ସ୍ୱତନ୍ତ୍ର ରିଲିଫ୍ କମିଶନରଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ଉମାକାନ୍ତ ମହାପାତ୍ର, ସୂଚନା ଅଧିକାରୀ, ମୁଖ୍ୟ ଶାସନ ସଚିବ

## ଯୁବ ଭୂତତ୍ତ୍ୱବିଦ୍‌ଙ୍କୁ ଉଚ୍ଚ ମାନର ତାଲିମ ପ୍ରଦାନ ଉପରେ ମନ୍ତ୍ରୀଙ୍କ ଗୁରୁତ୍ୱ

ଭୁବନେଶ୍ୱରସ୍ଥିତ ହୋଟେଲ ସୂର୍ଯ୍ୟାଂଶଠାରେ ଓଡ଼ିଶା ଭୂତତ୍ତ୍ୱ ସେବା ସଂଘର ରୌପ୍ୟ ଜୟନ୍ତୀ ଅବସରରେ ଇସ୍ପାତ୍ ଓ ଖଣି ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ କୁମାର ମଲ୍ଲିକ ମୁଖ୍ୟ ଅତିଥି ଭାବେ ଯୋଗଦେଇ ଯୁବ ଭୂତତ୍ତ୍ୱବିଦ୍‌ମାନଙ୍କୁ ଉଚ୍ଚ ମାନର ଉପଯୁକ୍ତ ତାଲିମ ପ୍ରଦାନ କରାଯିବା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ପ୍ରତ୍ୟେକ କର୍ମଚାରୀ ନିଜ କଥା ଚିନ୍ତା କଲାବେଳେ ରାଜ୍ୟ କଥା ମଧ୍ୟ ଚିନ୍ତା କଲେ ରାଜ୍ୟର ପ୍ରଗତିରେ ଏହା ସହାୟକ ହୋଇପାରିବ ବୋଲି ସେ କହିଛନ୍ତି । ଏଥି ସହିତ ସୃଜନଶୀଳ କାର୍ଯ୍ୟ କରିଥିବା କର୍ମଚାରୀମାନଙ୍କୁ ପ୍ରୋତ୍ସାହନ ଦିଆଯିବ ଯାହା ଅନ୍ୟମାନଙ୍କୁ ପ୍ରେରଣା ଯୋଗାଇବ ବୋଲି ମନ୍ତ୍ରୀ ଶ୍ରୀ ମଲ୍ଲିକ କହିଥିଲେ । ସଂଘର ଉପସଭାପତି ଶ୍ରୀ ବିକାଶ ଚନ୍ଦ୍ର ସାହୁଙ୍କ ଅଧ୍ୟକ୍ଷତାରେ ଆୟୋଜିତ ଏହି ବୈଠକରେ ସମ୍ମାନିତ ଅତିଥି ବିଭାଗୀୟ ପ୍ରମୁଖ ଶାସନ ସଚିବ ଶ୍ରୀ ଆର୍.କେ. ଶର୍ମା ଆଧୁନିକ ଯନ୍ତ୍ରପାତି ବ୍ୟବହାର କରିବାକୁ ପରାମର୍ଶ ଦେବା ସହ ଆଗକୁ ଭୂତତ୍ତ୍ୱବିଦ୍‌ମାନେ ଅଧିକ ନିଷ୍ଠା ଓ ଦକ୍ଷତାର ସହ କାର୍ଯ୍ୟ କରିବାକୁ ପଡ଼ିବ ବୋଲି କହିଥିଲେ । ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ଆର୍ତ୍ତତ୍ରାଣ ଦାସ ବୈଜ୍ଞାନିକ ଜ୍ଞାନକୌଶଳ ଭୂତତ୍ତ୍ୱବିଦ୍‌ମାନଙ୍କ କାର୍ଯ୍ୟଧାରାକୁ ସହଜ କରିଦେଇଛି ବୋଲି କହିଥିଲେ । ତେବେ ବର୍ତ୍ତମାନ ସମୟରେ ଏ କ୍ଷେତ୍ରରେ ଅନେକ ଘରୋଇ ସଂସ୍ଥା ପ୍ରବେଶ କରିଥିବା ହେତୁ ସରକାରୀ କର୍ମଚାରୀମାନେ ଏହି ନୂତନ ଚାଲେଞ୍ଜକୁ ଦୃଢତାର ସହ ନିଜର ଦକ୍ଷତା ମାଧ୍ୟମରେ ସାମ୍ନା କରିବାକୁ ସେ ଆହ୍ୱାନ ଦେଇଥିଲେ । ସଂଘର ସଂପାଦକ ତାଙ୍କର ବାର୍ଷିକ ବିବରଣୀରେ ସଂଘର ସମସ୍ୟା ଉପସ୍ଥାପନ କରି କ୍ୟାଡର ଅପ୍‌ଗ୍ରେଡେସନ୍ କରିବା, ଠିକ୍ ସମୟରେ ପଦୋନ୍ନତି ଦେବା ଏବଂ କେତେକ ବୈଷୟିକ ପଦବୀ ସୃଷ୍ଟି କରିବା ପାଇଁ ଦାବି ଜଣାଇଥିଲେ । ଦ୍ୱିତୀୟ ଅଧିବେଶନରେ ସଂଘର କେତେକ ପରଲୋକଗତ ସଦସ୍ୟମାନଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରାଯାଇଥିଲା । ଏଥି ସହିତ କେତେକ ପୂର୍ବତନ ସଦସ୍ୟମାନଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା । ପରେ ସଂଘର ବିଭିନ୍ନ ସମସ୍ୟା ଉପରେ ଆଲୋଚନା କରାଯାଇଥିଲା । ଏହି ସାଧାରଣ ବୈଠକରେ ସଂଘର ବହୁ ପୁରାତନ ସଦସ୍ୟ ଯୋଗ ଦେଇଥିଲେ ।

## ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗରେ ୨୮୧ଜଣଙ୍କୁ ନିଯୁକ୍ତି

ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗରେ ୨୮୧ ଜଣଙ୍କୁ ଥଇଥାନ ଯୋଜନାରେ ବିଭିନ୍ନ ପୌର ପରିଷଦ କାର୍ଯ୍ୟାଳୟ ଅଧୀନରେ ନିଯୁକ୍ତି ଦେବାକୁ ବିଭାଗ ସ୍ୱୀକୃତି ପ୍ରଦାନ କରିଛନ୍ତି । ଏଠାରେ ପ୍ରକାଶଯୋଗ୍ୟ ଯେ ସେପ୍ଟେମ୍ବର ଶେଷ ସୁଦ୍ଧା ବିଭାଗ ନିକଟରେ ଥଇଥାନ ନିଯୁକ୍ତି ପାଇଁ ସର୍ବମୋଟ ୨୮୧ଟି ଦରଖାସ୍ତ ପହଞ୍ଚିଥିଲା । ଏଗୁଡିକୁ ଯାଞ୍ଚ କରାଯାଇ ସେଥିରୁ ୨୩୬ ଜଣଙ୍କୁ ୬୯ଟି ସ୍ୱାୟତ୍ତ ଶାସନ ସଂସ୍ଥାରେ ଗ୍ରୁପ୍–ଡି ପଦରେ ନିଯୁକ୍ତି ଦେବାକୁ ନିର୍ଦ୍ଦେଶ ଦିଆଯାଇଛି । ଏଗୁଡିକ ମଧ୍ୟରେ କର୍ପୋରେସନ୍, ମ୍ୟୁନିସିପାଲିଟି ଏବଂ ବିଜ୍ଞାପିତ ଅଞ୍ଚଳ ପରିଷଦ ଅନ୍ତର୍ଭୁକ୍ତ । ସଂପୃକ୍ତ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡିକ ନିଯୁକ୍ତିଦାତା ହୋଇଥିବା ହେତୁ ତୁରନ୍ତ ସେମାନଙ୍କୁ ନିଯୁକ୍ତି ଦେବା ପାଇଁ କୁହାଯାଇଛି । ଖୁବ୍ ଶୀଘ୍ର ବାକି ୪୫ ଜଣଙ୍କୁ ଯୋଗ୍ୟତାଭିତ୍ତିରେ ନିଯୁକ୍ତି ଦିଆଯିବ ବୋଲି ଜଣାପଡିଛି । ବହୁଦିନ ଧରି ନିଯୁକ୍ତି ପାଇଁ ପ୍ରତୀକ୍ଷା କରିଥିବା ଅଶାୟୀମାନେ ଏହି ନିଯୁକ୍ତି ଫଳରେ ଉପକୃତ ହୋଇପାରିବେ ବୋଲି ଗୃହ ନିର୍ମାଣ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ପୁଷ୍ପେନ୍ଦ୍ର ସିଂହଦେଓ ପ୍ରକାଶ କରିଛନ୍ତି ।

ସୁବାଷ ନିଆଲ, ସୂଚନା ଅଧିକାରୀ

## ବାଜ୍ୟାପ୍ତ ସଂପତ୍ତିର ନିଲାମ ଓ ଜମାକାରୀ ଚିହ୍ନଟ ନିୟମାବଳୀ ଜାରି

ଓଡ଼ିଶା ଜମାକାରୀ ସୁରକ୍ଷା ଆଇନ, ୨୦୧୧(ଓପିଆଇଡି ଆକ୍ଟ) ଅନୁଯାୟୀ ଅସାଧୁ ଆର୍ଥିକ ସଂସ୍ଥା ଦ୍ୱାରା କ୍ଷତିଗ୍ରସ୍ତ ହୋଇଥିବା ଜମାକାରୀମାନଙ୍କ ଜମାରାଶି ଫେରସ୍ତ ପାଇଁ ରାଜ୍ୟ ସରକାର ଦୁଇଟି ନିୟମାବଳୀ ଜାରି କରିଛନ୍ତି । ବାଜ୍ୟାପ୍ତ ସଂପତ୍ତିର ନିଲାମ ନିମନ୍ତେ ଜାରି ନିୟମାବଳୀ ଅନୁସାରେ କଟକ, ବାଲେଶ୍ୱର, ସମ୍ବଲପୁର ଓ ବ୍ରହ୍ମପୁରର କ୍ଷମତାପନ୍ନ ଅଧିକାରୀ(ଏଡିଏମ୍)ମାନେ ସଂପୃକ୍ତ ଜିଲ୍ଲାର ଜିଲ୍ଲାପାଳଙ୍କୁ ସଂପତ୍ତିର ସର୍ବନିମ୍ନ ମୂଲ୍ୟ ଧାର୍ଯ୍ୟ ନିମନ୍ତେ ପତ୍ର ଲେଖିବେ । ସଂପତ୍ତିର ମୂଲ୍ୟାୟନ ସଂପୃକ୍ତ ଜିଲ୍ଲାର ଉପଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଗଠିତ କମିଟି ଦ୍ୱାରା ସ୍ଥିରୀକୃତ ହେବ । ଏହାପରେ କ୍ଷମତାପନ୍ନ ଅଧିକାରୀ ଏହି ସଂପତ୍ତିର ବିବରଣୀ ଏମ୍.ଏସ୍.ଟି.ସି

(ମେଟାଲ ଆଣ୍ଡ ସ୍କ୍ରାପ୍ ଟ୍ରେଡିଂ କର୍ପୋରେସନ୍ ଅଫ୍ ଇଣ୍ଡିଆ) ଜରିଆରେ ଇ-ନିଲାମ କରିବେ, ଯାହାକି ସଂପୂର୍ଣ୍ଣ ସ୍ୱଚ୍ଛ ଭାବରେ କରାଯିବ । ନିଲାମରୁ ସଂଗୃହୀତ ରାଶି କ୍ଷମତାପନ୍ନ ଅଧିକାରୀଙ୍କ ବ୍ୟାଙ୍କ ଖାତାରେ ଜମା ହେବ ଏବଂ ଡେଜିଗ୍ନେଟେଡ୍ କୋର୍ଟଙ୍କ ନିର୍ଦ୍ଦେଶ ଅନୁସାରେ ଜମାକାରୀଙ୍କ ମଧ୍ୟରେ ଆବଣ୍ଟନ କରାଯିବ । ଜମାକାରୀଙ୍କ ଚିହ୍ନଟ ପ୍ରକ୍ରିୟା ସଂକ୍ରାନ୍ତରେ ଜାରି ନିୟମାବଳୀ ଅନୁସାରେ ଯେଉଁ ଆର୍ଥିକ ସଂସ୍ଥାର ବାଜ୍ୟାପ୍ତ ସଂପତ୍ତି ଆବଣ୍ଟନ ପାଇଁ ଡେଜିଗ୍ନେଟେଡ୍ କୋର୍ଟ ନିର୍ଦ୍ଦେଶ ଦେଇସାରିଛନ୍ତି, ସେହି ସଂସ୍ଥାର ଜମାକାରୀମାନଙ୍କଠାରୁ କ୍ଷମତାପନ୍ନ ଅଧିକାରୀ ଏକ ନିର୍ଦ୍ଦିଷ୍ଟ ଫର୍ମରେ ଆବେଦନ ଆହ୍ୱାନ କରିବେ । ଆବେଦନଗୁଡିକରେ ଥିବା ତଥ୍ୟର ବର୍ତ୍ତମାନ ଉପଲବ୍ଧ ଡାଟା ବେସ୍ ସହିତ ପ୍ରାଥମିକ ଯାଞ୍ଚ ପରେ, ସଂପୃକ୍ତ ଜିଲ୍ଲାପାଳମାନଙ୍କୁ କ୍ଷେତ୍ରସ୍ତରରେ ସେଗୁଡିକର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ପଠାଯିବ । ଏଥି ନିମନ୍ତେ ଏକ ତିନି ଜଣିଆ ଫିଲ୍ଡ ସ୍କ୍ୱାଡ୍ ଗଠନ କରାଯିବ । ଏଥିରେ ଜଣେ ଏଏସ୍ଆଇ ବା ତଦୂର୍ଦ୍ଧ୍ୱ ର୍‍ୟାଙ୍କର ଥାନା ଅଧିକାରୀ, ଜଣେ ରାଜସ୍ୱ ନିରୀକ୍ଷକ ଓ ଜଣେ ବ୍ଲକ୍ ସଂପ୍ରସାରଣ ଅଧିକାରୀ ରହିବେ । ଫିଲ୍ଡ ସ୍କ୍ୱାଡ୍‌ର ରିପୋର୍ଟ ଉପରେ ସଂପୃକ୍ତ ଜିଲ୍ଲାପାଳ ମଧ୍ୟ ନମୁନା ଯାଞ୍ଚ କରିବେ । ଏହାପରେ ଅନ୍ତିମ(ପ୍ରୋଭିଜନାଲ) ତାଲିକା ସର୍ବସାଧାରଣଙ୍କ ଅବଗତି ନିମନ୍ତେ ଜିଲ୍ଲା ଓ ପଞ୍ଚାୟତସ୍ତରରେ ପ୍ରକାଶିତ କରାଯିବ । ତାଲିକା ସଂପର୍କରେ କୌଣସି ବ୍ୟକ୍ତିଙ୍କର କିଛି ଅଭିଯୋଗ ଥିଲେ, ତାହା ୧୫ ଦିନ ମଧ୍ୟରେ ଜଣାଇ ପାରିବେ । ଏହାପରେ ଜମାକାରୀଙ୍କ ଚୂଡାନ୍ତ ତାଲିକା ପ୍ରକାଶ କରାଯିବ ବୋଲି ନିର୍ଦ୍ଦେଶକ(ବିତ୍ତୀୟ ସଂସ୍ଥା) ଡ. ତପନ୍ କୁମାର ପ୍ରଧାନ ଜଣାଇଛନ୍ତି ।

ସନ୍ତୋଷ କୁମାର ଦାସ, ସୂଚନା ଅଧିକାରୀ

# କେନ୍ଦ୍ରୀୟ ଦକ୍ଷତା ରୂପରେଖ ସହ ସମତୁଲତା ପାଇଁ ରାଜ୍ୟରେ ବିଭାଗୀୟ ତତ୍ପରତା: ପରାମର୍ଶଦାତା ମଣ୍ଡଳୀ ବୈଠକ

ଜାତୀୟ ଦକ୍ଷତା ପ୍ରମାଣନ ରୂପରେଖ (ଏନ୍ଏସ୍କ୍ୟୁଏଫ୍) ସହିତ ସମତୁଲତା ଓ ସମନ୍ୱୟ ସ୍ଥାପନ ନିମନ୍ତେ ଓଡ଼ିଶାରେ ତଦନୁରୂପ ସାଧାରଣ ଶିକ୍ଷା ଓ ଧନ୍ଦାମୂଳକ ଶିକ୍ଷା ମଧ୍ୟରେ ସମନ୍ୱୟ ସ୍ଥାପନ ନିମନ୍ତେ ଦକ୍ଷତା ବିକାଶ ଓ ବୈଷୟିକ ଶିକ୍ଷା ସଚିବ ଲକ୍ଷ୍ମୀ ନାରାୟଣ ଗୁପ୍ତା ଗୁରୁତ୍ୱ ଆରୋପ କରିଛନ୍ତି । ନ୍ୟାସନାଲ ସ୍କିଲ କ୍ୱାଲିଫିକେସନ ଆଧାରରେ ତାଲିମ-ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆସନ୍ତା ବର୍ଷ ଡିସେମ୍ବର ପୂର୍ବରୁ ଶେଷ ନକଲେ ତାଲିମ କାର୍ଯ୍ୟକ୍ରମ/କୋର୍ସ ନିମନ୍ତେ ସରକାରୀ ସହାୟତା ମିଳିବ ନାହିଁ ବୋଲି ସତର୍କ କରାଇବା ସହିତ କୁଶଳୀ କାରିଗରମାନଙ୍କର ପୂର୍ବ ଶିକ୍ଷାର ମୂଲ୍ୟାୟନ ଓ ସ୍ୱୀକୃତି ସଂପର୍କରେ ବିଶେଷ ବ୍ୟବସ୍ଥା କରିବାକୁ ଶ୍ରୀ ଗୁପ୍ତା ଓଡ଼ିଶା ରାଜ୍ୟ ନିଯୁକ୍ତି ମିଶନ ତରଫରୁ ଏକ କୋର ଟିମ୍ ଗଠନ କରିବା ନିମନ୍ତେ ପରାମର୍ଶ ଦେଇଛନ୍ତି । ଦକ୍ଷତା ବିକାଶ ତାଲିମ କାର୍ଯ୍ୟକ୍ରମରେ ସଂପୃକ୍ତ ବିଭାଗମାନଙ୍କୁ ନେଇ ଓଡ଼ିଶା ରାଜ୍ୟ ନିଯୁକ୍ତି ମିଶନ ଆନୁକୂଲ୍ୟରେ ଜାତୀୟ ଦକ୍ଷତା ବିକାଶ ସଂସ୍ଥା ସହଯୋଗରେ ଆୟୋଜିତ ଏକ ପରାମର୍ଶଦାତା ମଣ୍ଡଳୀ କର୍ମଶାଳାରେ ଉପରୋକ୍ତ ମର୍ମରେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ଓଡ଼ିଶା ରାଜ୍ୟ ନିଯୁକ୍ତି ମିଶନ ଜାତୀୟ ଦକ୍ଷତା ବିକାଶ ସଂସ୍ଥାର ବୈଷୟିକ ସହାୟତା ପାଇଁ ବ୍ୟବସ୍ଥା କରିଛି । ଜାତୀୟ ଦକ୍ଷତା ବିକାଶ ସଂସ୍ଥାର ଏକ ପ୍ରତିନିଧି ଦଳ ଶ୍ରୀମତୀ ପାଙ୍ଗ ଖୁରୀ ବର୍ଗୋହେଁଙ୍କ ନେତୃତ୍ୱରେ ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କରେ ବିଶେଷ ବିବରଣୀ ପ୍ରଦାନ କରିଥିଲେ । କାର୍ଯ୍ୟକ୍ରମରେ ବାସବ ବାନାର୍ଜୀ, ସ୍ନେହା ଯୋଶେଫ୍, ଅନୁରାଗ ଗୁପ୍ତା ପ୍ରମୁଖ ସହଯୋଗ କରିଥିଲେ । ନ୍ୟାସନାଲ ସ୍କିଲ କ୍ୱାଲିଫିକେସନ୍ ଫ୍ରେମ୍‌ୱାର୍କ ଦକ୍ଷତାର ସ୍ତର ଓ ମାନ ନିର୍ଦ୍ଧାରଣ ପାଇଁ ଏକ ଗୁଣାତ୍ମକ ମାନକ ଭାରତ ସରକାରଙ୍କ ଦ୍ୱାରା ୨୦୧୩ ଡିସେମ୍ବର ମାସରୁ ସ୍ୱୀକୃତ ହୋଇଛି । ଏଥିରେ କେନ୍ଦ୍ର ଓ ରାଜ୍ୟ ସରକାର ଏହି ଆଧାରରେ ତାଲିମ ଓ ସଂପୃକ୍ତ ପାଠ୍ୟକ୍ରମକୁ ପରିଚାଳିତ କରିବାକୁ କୁହାଯାଇଛି । ବର୍ତ୍ତମାନ ସୁଦ୍ଧା ଏହା ସହିତ ୧୪୬୧ଟି ପ୍ରମାଣନକୁ ସମନ୍ୱିତ କରାଯାଇଛି । ଏଥିରେ କ୍ଷେତ୍ରୀୟ ଦକ୍ଷତା ପରିଷଦର ୧୩୬୫ଟି ଓ ଜାତୀୟ ଧନ୍ଦାମୂଳକ ତାଲିମ ପରିଷଦ(ଏନ୍ସିଭିଟି)ର ୧୧୬ଟି ଅନ୍ତର୍ଭୁକ୍ତ ।

ଏହି କର୍ମଶାଳାରେ ଅଂଶଗ୍ରହଣ କରିଥିବା ପ୍ରତିନିଧିମାନଙ୍କୁ ପ୍ରାକ୍-ତାଲିମ୍ ସ୍ୱୀକୃତି, ନିଯୁକ୍ତିଦାତାଙ୍କ ଅଧିସ୍ୱୀକୃତି ନିୟମାବଳୀ, ନିଶ୍ଚିନ୍ତ ଗୁଣାତ୍ମକତାର ରୂପରେଖ ଓ ଶ୍ରମ ବଜାର ସୂଚନା ସଂପର୍କରେ ଅବଗତ କରାଯାଇ ବିଶଦ ଆଲୋଚନା ହୋଇଥିଲା । ନିଯୁକ୍ତି

ମିଶନ ନିର୍ଦ୍ଦେଶକ ଜି. ରାଜେଶ ପ୍ରାଥମିକ ସ୍ତରରେ ବିଭିନ୍ନ ବିଭାଗର ଯୋଗ୍ୟତାଭିତ୍ତିକ ସୂଚୀଗୁଡ଼ିକ ଉପରେ ଗୁରୁତ୍ୱ ଆରୋପ କରିବା ସହିତ ଚଳିତ ମାସ ଶେଷ ସୁଦ୍ଧା ବିଭିନ୍ନ ବିଭାଗର ତାଲିମ ପାଠ୍ୟକ୍ରମ ସଂପର୍କରେ ସୂଚନା ଦାଖଲ କରିବାକୁ କହିଥିଲେ ।

## ରାଜ୍ୟସ୍ତରୀୟ ପାଲା ଓ ଦାସକାଠିଆ ଉତ୍ସବ ଉଦ୍‌ଘାଟିତ

ପାଲା ଓ ଦାସକାଠିଆ ପାରମ୍ପରିକ ଗଣମାଧ୍ୟମ ଭାବରେ ସ୍ୱୀକୃତ ଓ ଏହାର ମୌଳିକତା ମଧ୍ୟ ଆଦୃତ । ସମାଜ ଓ ବିକାଶର ବାର୍ତ୍ତା ପ୍ରଚାରରେ ଯଥେଷ୍ଟ ଭୂମିକା ଗ୍ରହଣ କରୁଥିବା ଏପରି ଲୋକକଳାକୁ ସବୁସ୍ତରରେ ପ୍ରୋତ୍ସାହନ ଆବଶ୍ୟକ ବୋଲି ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା ମତ ପ୍ରକାଶ କରିଛନ୍ତି । ସ୍ଥାନୀୟ ଭଞ୍ଜକଳା ମଣ୍ଡପଠାରେ ଏହି ତିନିଦିନିଆ ଉତ୍ସବକୁ ମନ୍ତ୍ରୀ ଶ୍ରୀ ପଣ୍ଡା ଉଦ୍‌ଘାଟନ କରିଛନ୍ତି । ସଂସ୍କୃତି ବିଭାଗ ଓ ରାଜ୍ୟ ସଂଗୀତ ନାଟକ ଏକାଡେମୀ ଆନୁକୂଲ୍ୟରେ ଆୟୋଜିତ ଏହି ଉତ୍ସବରେ ଏକାଡେମୀ ସଭାପତି ଶ୍ରୀମତୀ ତୃପ୍ତି ଦାସ ପୌରୋହିତ୍ୟ କରିଥିବା ବେଳେ ଭୁବନେଶ୍ୱର(ମଧ୍ୟ) ବିଧାୟକ ଶ୍ରୀ ବିଜୟ କୁମାର ମହାନ୍ତି, ଭୁବନେଶ୍ୱର(ଉତ୍ତର) ବିଧାୟକ ଶ୍ରୀ ପ୍ରିୟଦର୍ଶୀ ମିଶ୍ର ଅତିଥି ଭାବେ ଯୋଗଦେଇ ବକ୍ତବ୍ୟ ରଖିଥିଲେ । ସଂସ୍କୃତି ତଥା ସୂଚନା ଓ ଲୋକସଂପର୍କ ବିଭାଗ ତଥା କମିଶନର ଶାସନ ସଚିବ ଶ୍ରୀ ମନୋରଞ୍ଜନ ପାଣିଗ୍ରାହୀ ପାଲା ଓ ଦାସକାଠିଆକୁ ସାହିତ୍ୟ, ସଂଗୀତ, ଲୋକକଳା ଓ ନୃତ୍ୟର ଅନୁପମ ସମିଶ୍ରଣ ବୋଲି ଅଭିହିତ କରିଥିଲେ ।

ରାଜ୍ୟ ସଂଗୀତ ନାଟକ ଏକାଡେମୀର ଉପସଭାପତି ଶ୍ରୀ ରାମହରି ଦାସ ଏଥିରେ ଉପସ୍ଥିତ ଥିଲେ । ଏକାଡେମୀର ସଚିବ ଶ୍ରୀ ଧୀରେନ୍ଦ୍ର ନାଥ ମଲ୍ଲିକ ଶେଷରେ ଧନ୍ୟବାଦ ଅର୍ପଣ କରିଥିବା ବେଳେ ମଧୁମିତା ମହାନ୍ତି କାର୍ଯ୍ୟକ୍ରମ ସଂଯୋଜନା କରିଥିଲେ । ଅତିଥିମାନେ ପାଲା ଗାୟକ ବଳରାମ ରାଉତ(ଭଦ୍ରକ), ଅଭୟ କୁମାର ପଣ୍ଡା(ଯାଜପୁର) ଓ ଦାସକାଠିଆ ଗାୟକ ଉପେନ୍ଦ୍ର ପାଣିଗ୍ରାହୀ(ଗଞ୍ଜାମ) ତଥା ତାଙ୍କର ସାଥୀମାନଙ୍କୁ ଫୁଲତୋଡ଼ା ଓ ଅଙ୍ଗବସ୍ତ୍ର ଦେଇ ସମ୍ବର୍ଦ୍ଧିତ କରିଥିଲେ ।

ସୂର୍ଯ୍ୟ ମିଶ୍ର, ସୂଚନା ଅଧିକାରୀ

## ଡ଼ାଲିଦର ନିୟନ୍ତ୍ରଣ ପାଇଁ କେନ୍ଦ୍ର ସରକାରଙ୍କ ହସ୍ତକ୍ଷେପ ନିମନ୍ତେ ଅନୁରୋଧ

ଡ଼ାଲିର ଦରବୃଦ୍ଧି ସମ୍ପର୍କରେ ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ମନ୍ତ୍ରୀ ସଞ୍ଜୟ କୁମାର ଦାସବର୍ମାଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ସମୀକ୍ଷା ବୈଠକ ଅନୁଷ୍ଠିତ ହୋଇ ବହୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରାଯାଇଛି । ଗତ ଖରିଫ ବିପଣନ ବର୍ଷରେ ଅଦିନିଆ ବର୍ଷା ଯୋଗୁଁ ସାରା ଭାରତବର୍ଷରେ ଡ଼ାଲି ଉତ୍ପାଦନ ବାଧାପ୍ରାପ୍ତ ହୋଇଛି ଓ ପ୍ରାୟ ୨୫ ପ୍ରତିଶତ ଉତ୍ପାଦନ ହ୍ରାସ ପାଇଛି । ତେଣୁ ଏବେ ସର୍ବଭାରତୀୟ ସ୍ତରରେ ଡ଼ାଲିର ମୂଲ୍ୟ ବୃଦ୍ଧି ଘଟିଛି ।

ଓଡ଼ିଶା ବାହାର ରାଜ୍ୟ ଉପରେ ନିର୍ଭରଶୀଳ । ବର୍ଷକୁ ପ୍ରାୟ ୪ ଲକ୍ଷ ଟନ୍ ଡ଼ାଲି ବାହାର ରାଜ୍ୟରୁ ଆମଦାନୀ କରାଯାଏ । ନୂତନ ଫସଲ ଆମଦାନୀ ପରେ ଆସନ୍ତା ନଭେମ୍ବର ୧୫ ତାରିଖ ବେଳକୁ ଡ଼ାଲିର ଦରରେ ସୁଧାର ଆସିବ । ରାଜ୍ୟ ସରକାର ମେଟାଲସ୍ ଆଣ୍ଡ ମିନେରାଲ୍ ଟ୍ରେଡ଼ିଂ କର୍ପୋରେସନ୍ ଜରିଆରେ ଡ଼ାଲି ଯୋଗାଇ ଦେବାକୁ କେନ୍ଦ୍ର ଖାଦ୍ୟ ମନ୍ତ୍ରାଳୟକୁ ପତ୍ର ଲେଖୁଛନ୍ତି । ଏଭଳି ସମୟରେ କେନ୍ଦ୍ର ସରକାର ସକାରାତ୍ମକ ପଦକ୍ଷେପ ନେବାକୁ ଅନୁରୋଧ କରାଯାଇଛି । ବିଭିନ୍ନ ବନ୍ଦରଗୁଡ଼ିକରେ ବିଦେଶରୁ ଆମଦାନୀ ହେଉଥିବା ଡ଼ାଲିର ବାସ୍ତବ ସ୍ଥିତି ଆଧାରରେ ମୂଲ୍ୟ ନିର୍ଦ୍ଧାରଣ କରି ସର୍ବସାଧାରଣରେ ପ୍ରକାଶ କରିବା ପାଇଁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯାଉଛି । ଏହା ଫଳରେ କଳାବଜାର, ମୁନାଫାଖୋରକୁ ରୋକି ହେବ । ତା'ଛଡ଼ା ମୂଲ୍ୟ ସ୍ଥିରୀକରଣ ପାଣ୍ଠିରୁ ରାଜ୍ୟ ପଠାଇଥିବା ପ୍ରସ୍ତାବ ଅନୁଯାୟୀ ତୁରନ୍ତ ୫୦ କୋଟି ଟଙ୍କା ରିଭଲଭିଙ୍ଗ୍ ଫଣ୍ଡ ଭାବେ ଦେବା ପାଇଁ ଅନୁରୋଧ କରାଯାଇଛି । ଏଥିସହିତ ଜିଲ୍ଲାପାଳମାନେ ବ୍ୟବସାୟୀଙ୍କ ସହ ନିୟମିତ ମିଟିଙ୍ଗ୍ କରି ଡ଼ାଲି ଦରର ଯଥାର୍ଥତାକୁ ତର୍ଜମା କରିବାକୁ ନିର୍ଦ୍ଦେଶ ଦିଆଯାଇଛି ଏବଂ ଜିଲ୍ଲାପାଳଙ୍କୁ ଏନ୍‌ଫୋର୍ସମେଣ୍ଟକୁ କଡ଼ାକଡ଼ି କରିବାକୁ ନିର୍ଦ୍ଦେଶ ଦିଆଯାଇଛି ।

ରକ୍ଷକ ନାୟକ, ସୂଚନା ଅଧିକାରୀ

# ମା' ଓ ନବଜାତକଙ୍କ ସେବାରେ ସମର୍ପିତ ୧୦୪ ସ୍ୱାସ୍ଥ୍ୟ ହେଲ୍ପଲାଇନ୍ ଉଦ୍‌ଘାଟିତ

ମା' ଓ ନବଜାତକଙ୍କ ସେବାରେ ସମର୍ପିତ ୧୦୪ ସ୍ୱାସ୍ଥ୍ୟ ହେଲ୍ପଲାଇନ୍ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ତଥା ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ ଶ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଯାଇଛି । ଏହି ଅବସରରେ ଉଦ୍‌ବୋଧନ ଦେଇ ମନ୍ତ୍ରୀ ଶ୍ରୀ ନାୟକ କହିଛନ୍ତି ଯେ ମାତୃ ଓ ଶିଶୁ ସ୍ୱାସ୍ଥ୍ୟ ସରକାରଙ୍କ ସର୍ବୋଚ୍ଚ ପ୍ରାଧାନ୍ୟ । ସେମାନଙ୍କ ସ୍ୱାସ୍ଥ୍ୟସେବା ବ୍ୟବସ୍ଥାରେ ଉନ୍ନତି ଆଣି ମୃତ୍ୟୁହାର ହ୍ରାସ ନିମନ୍ତେ ବହୁବିଧ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇଛି । ସେଥିରେ ଆଉ ଏକ ନୂତନ ବ୍ୟବସ୍ଥା ୧୦୪ ସ୍ୱାସ୍ଥ୍ୟ ହେଲ୍ପଲାଇନ୍ ଯୋଡି ହୋଇଛି । ଏହି ବ୍ୟବସ୍ଥା ଜରିଆରେ ରାଜ୍ୟର ପ୍ରାୟ ୮ ଲକ୍ଷ ଗର୍ଭବତୀ ମହିଳା, ୭ ଲକ୍ଷ ମା, ୪୫ ହଜାର ଆଶାକର୍ମୀ ଏବଂ ୭୦୦୦ ଏ.ଏନ୍.ଏମ୍‌ଙ୍କ ସହ ଯୋଗାଯୋଗ ରକ୍ଷା କରାଯାଇ ଗର୍ଭବତୀ ମହିଳା, ପ୍ରସୂତୀ ଏବଂ ନବଜାତଙ୍କ ସ୍ୱାସ୍ଥ୍ୟର ସୁରକ୍ଷା ଦିଗରେ ଉଦ୍ୟମ କରାଯିବ । ରାଜ୍ୟରେ ମାତୃ ଓ ଶିଶୁ ମୃତ୍ୟୁହାର ହ୍ରାସ କରିବା ଦିଗରେ ଜନନୀ ଶିଶୁ ସୁରକ୍ଷାଠାରୁ ଆରମ୍ଭ କରି ଅନେକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ବର୍ତ୍ତମାନ ଆରମ୍ଭ କରାଯାଇଥିବା ବ୍ୟବସ୍ଥା ମାଧ୍ୟମରେ ସେମାନଙ୍କ ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ ପରାମର୍ଶଠାରୁ ଆରମ୍ଭ କରି କେତେବେଳେ କେଉଁ ପ୍ରକାର ପଦକ୍ଷେପ ଗ୍ରହଣ କରିବା ବା ଡାକ୍ତରଖାନାକୁ ଯିବା, ପିଲାମାନଙ୍କୁ ଠିକ୍ ସମୟରେ ଟୀକା ଆଦି ଦେବା ନିମନ୍ତେ ସୂଚନା ପ୍ରଦାନ କରାଯିବ । ଫଳରେ ମାତୃ ଓ ଶିଶୁମୃତ୍ୟୁହାର ହ୍ରାସ ଦିଗରେ ମଧ୍ୟ ଯଥେଷ୍ଟ ସହାୟକ ହୋଇପାରିବ ବୋଲି ମନ୍ତ୍ରୀ ଶ୍ରୀ ନାୟକ କହିଛନ୍ତି । ଆସନ୍ତା ୫ ବର୍ଷ ମଧ୍ୟରେ ରାଜ୍ୟରେ ମାତୃ ଓ ଶିଶୁ ମୃତ୍ୟୁହାରକୁ ଜାତୀୟ ସ୍ତର ସହିତ ସମାନ ସ୍ତରକୁ ଆଣିବା ନିମନ୍ତେ ରାଜ୍ୟ ସରକାର ନିର୍ଦ୍ଦିଷ୍ଟ ଯୋଜନା ପ୍ରସ୍ତୁତ କରୁଛନ୍ତି । ଚଳିତ ବର୍ଷ ଏଥି ପାଇଁ ୫୦ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି ବୋଲି ସେ ସୂଚନା ଦେଇଥିଲେ । ଜାତୀୟ ସ୍ୱାସ୍ଥ୍ୟ ମିଶନ ତରଫରୁ ଚିକିତ୍ସା ହେଲ୍‌ଥ କେୟାର ମାଧ୍ୟମରେ କାର୍ଯ୍ୟକାରୀ କରାଯାଉଥିବା ଏହି ୧୦୪ ହେଲ୍‌ଥ ହେଲ୍ପଲାଇନ କଲସେଂଟର ସପ୍ତାହର ୭ ଦିନ ଯାକ ସକାଳ ୯ ଘଟିକାରୁ ଅପରାହ୍ଣ ୫ ଘଟିକା ପର୍ଯ୍ୟନ୍ତ କାର୍ଯ୍ୟକରିବ । ନିର୍ଦ୍ଦିଷ୍ଟ ଦିନମାନଙ୍କରେ ଏହି ସମୟ ମଧ୍ୟରେ ସ୍ତ୍ରୀ ଓ ପ୍ରସୂତୀ ଏବଂ ଶିଶୁରୋଗ ବିଶେଷଜ୍ଞମାନଙ୍କ ଦ୍ୱାର ପରାମର୍ଶ ବ୍ୟବସ୍ଥା କରାଯିବ ।

ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ପ୍ରମୁଖ ସଚିବ ଆରତୀ ଆହୁଜା ତାଙ୍କ ଭାଷଣରେ ରାଜ୍ୟର ସ୍ୱାସ୍ଥ୍ୟ ସେବା ବିଶେଷ କରି ମାତୃ ଓ ଶିଶୁ ସ୍ୱାସ୍ଥ୍ୟ ବ୍ୟବସ୍ଥାର ବିକାଶ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଜାତୀୟ ସ୍ୱାସ୍ଥ୍ୟମିଶନ ନିର୍ଦ୍ଦେଶିକା ରୂପା ମିଶ୍ର ରାଜ୍ୟରେ ମାତୃ ଓ ଶିଶୁ ସ୍ୱାସ୍ଥ୍ୟର ବିକାଶ ସହ ମୃତ୍ୟୁହାର ହ୍ରାସ ନିମନ୍ତେ ଗ୍ରହଣ କରାଯାଇଥିବା କାର୍ଯ୍ୟକ୍ରମ ସଂପର୍କରେ ଆଲୋଚନା କରି ଆଗାମୀ ଦିନମାନଙ୍କରେ ଏହିସବୁ କାର୍ଯ୍ୟକ୍ରମଗୁଡିକୁ ଅଧିକ ସୁଦୃଢ ତଥା ତ୍ୱରାନ୍ୱିତ କରିବା ପାଇଁ ଗ୍ରହଣ କରାଯିବାକୁ ଥିବା କାର୍ଯ୍ୟକ୍ରମ ସଂପର୍କରେ ଆଲୋକପାତ କରିଥିଲେ । ଚିକିତ୍ସା ହେଲ୍‌ଥ କେୟାର ପରିଚାଳନା ନିର୍ଦ୍ଦେଶକ ନରେଶ ଜୈନ ତାଙ୍କ ସଂସ୍ଥା ତରଫରୁ ୧୦୪ ହେଲ୍‌ଥ ହେଲ୍ପଲାଇନ୍ ଦାୟିତ୍ୱପୂର୍ଣ୍ଣ ଭାବେ କାର୍ଯ୍ୟକାରୀ କରାଯିବ ବୋଲି କହିଥିଲେ ।

ପ୍ରଭାକର ସାହୁ

# ଡିସେମ୍ବର ପହିଲାରୁ ୫ ଦିନ ବ୍ୟାପୀ ଚନ୍ଦ୍ରଭାଗାରେ ଆନ୍ତର୍ଜାତିକ ବାଲୁକାକଳା ମହୋତ୍ସବ

ଆସନ୍ତା ଡିସେମ୍ବର ପହିଲାରୁ ୫ ଦିନ ବ୍ୟାପି କୋଣାର୍କ ନିକଟ ଚନ୍ଦ୍ରଭାଗା ବେଳାଭୂମିରେ ଆନ୍ତର୍ଜାତିକ ବାଲୁକାକଳା ମହୋତ୍ସବ ଆୟୋଜନ କରାଯିବ । ଏଥିରେ ଆନ୍ତର୍ଜାତିକ, ଜାତୀୟ ଓ ସ୍ଥାନୀୟ ଶିଳ୍ପୀମାନେ ଅଂଶଗ୍ରହଣ କରିବେ । ଏପରି ଆୟୋଜନ ଦ୍ୱାରା ରାଜ୍ୟର ବାଲୁକା ଶିଳ୍ପୀମାନେ ପ୍ରୋତ୍ସାହିତ ହେବା ସହିତ ଆନ୍ତର୍ଜାତିକ ସ୍ତରରେ ବାଲୁକାକଳାର ପ୍ରଚାର ପ୍ରସାର ବଢିବ ଏବଂ ଦେଶ– ବିଦେଶର ପର୍ଯ୍ୟଟକମାନଙ୍କୁ ଓଡ଼ିଶା ପ୍ରତି ଆକୃଷ୍ଟ କରିହେବ ବୋଲି ଆଶା କରାଯାଇଛି ।

ପର୍ଯ୍ୟଟନ ବିଭାଗ ପ୍ରମୁଖ ଶାସନ ସଚିବ ଲକ୍ଷ୍ମୀନାରାୟଣ ଗୁପ୍ତାଙ୍କ ଅଧ୍ୟକ୍ଷତାରେ ଆର୍ନ୍ତଜାତିକ ବାଲୁକାକଳା ମହୋତ୍ସବ ସଂପର୍କିତ ବୈଠକ ଅନୁଷ୍ଠିତ ହୋଇ ପ୍ରସ୍ତୁତି ତ୍ୱରାନ୍ୱିତ କରିବାକୁ ନିଷ୍ପତ୍ତି ନିଆଯାଇଛି । ମହୋତ୍ସବରେ ଅନ୍ୟୂନ ୧୦ ଜଣ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଶିଳ୍ପୀଙ୍କ ସମେତ ୨୫ରୁ ଅଧିକ ଜାତୀୟ ଖ୍ୟାତିସଂପନ୍ନ ବାଲୁକାଶିଳ୍ପୀଙ୍କୁ ସାମିଲ କରାଯିବ । ଏହା ବ୍ୟତୀତ ପୂର୍ବବର୍ଷ ଅନୁଷ୍ଠିତ ମହୋତ୍ସବରେ

ପୁରସ୍କୃତ ଶିଳ୍ପୀମାନଙ୍କୁ ମଧ୍ୟ ଅଂଶଗ୍ରହଣ କରିବାକୁ ସୁଯୋଗ ଦିଆଯିବ । ଓଡ଼ିଶା ରାଜ୍ୟ ପର୍ଯ୍ୟଟନ ବିକାଶ ନିଗମ ଏହି ମହୋତ୍ସବର ଆୟୋଜକ ସଂସ୍ଥା ଭାବରେ କାର୍ଯ୍ୟ କରିବେ । ଏଥିନିମନ୍ତେ ଆସନ୍ତା ନଭେମ୍ବର ୩୦ ପୂର୍ବରୁ ପ୍ରାୟ ୩୫ଟି ଷ୍ଟଲ୍ ଚନ୍ଦ୍ରଭାଗା କୂଳରେ ନିର୍ମାଣ କରାଯିବ ବୋଲି ସ୍ଥିର କରାଯାଇଛି । ବାଲୁକାକଳାରେ ଗୁଣବତ୍ତା ଓ ଉତ୍କର୍ଷ ଆଣିବା ସହିତ ଶିଳ୍ପୀମାନଙ୍କୁ ପ୍ରୋତ୍ସାହନ ପାଇଁ ପ୍ରତିଯୋଗିତା ଆୟୋଜନ କରାଯାଇଛି ଏବଂ ଚଳିତ ବର୍ଷ ପ୍ରଥମ ଥର ପାଇଁ ମହିଳା ଶିଳ୍ପୀମାନଙ୍କୁ ଏଥିରେ ସାମିଲ କରାଯିବ ବୋଲି ପ୍ରମୁଖ ଶାସନ ସଚିବ ଶ୍ରୀ ଗୁପ୍ତା ପ୍ରକାଶ କରିଛନ୍ତି । ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବାଲୁକାଶିଳ୍ପୀ ପଦ୍ମଶ୍ରୀ ସୁଦର୍ଶନ ପଟ୍ଟନାୟକ ଏହି ମହୋତ୍ସବର ସଂଯୋଜକ ଭାବରେ କାର୍ଯ୍ୟକରିବେ ବୋଲି ବୈଠକରେ ସ୍ଥିର କରାଯାଇଛି ।

ସୂର୍ଯ୍ୟ ମିଶ୍ର, ସୂଚନା ଅଧିକାରୀ

## ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ମାନବୃଦ୍ଧି ନିମନ୍ତେ କର୍ମଶାଳା ଓ ସମାବେଶ

ରାଜ୍ୟରେ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ମାନବୃଦ୍ଧି ଓ ଏଥିରେ ଶିକ୍ଷା ସହାୟକମାନଙ୍କ ଭୂମିକା ଶୀର୍ଷକ ଏକ କର୍ମଶାଳା ଓ ସମାବେଶ ଭୁବନେଶ୍ୱରଠାରେ ନଭେମ୍ବର ମାସ ପ୍ରଥମ ସପ୍ତାହ ମଧ୍ୟରେ ଅନୁଷ୍ଠିତ ହେବ । ଓଡ଼ିଶା ଶିକ୍ଷା ସହାୟକ ସଂଘ ତରଫରୁ ଆୟୋଜିତ ଏହି କର୍ମଶାଳା ଓ କାର୍ଯ୍ୟକ୍ରମରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଯୋଗଦେବା ପାଇଁ ଆମନ୍ତ୍ରଣ କରାଯାଇଛି । ଏହି ପରିପ୍ରେକ୍ଷୀରେ ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ରଙ୍କ କାର୍ଯ୍ୟାଳୟ ପ୍ରକୋଷ୍ଠରେ ଓଡ଼ିଶା ଶିକ୍ଷା ସହାୟକ ସଂଘର କର୍ମକର୍ତ୍ତାଙ୍କ ସହ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ବୈଠକରେ ଶକ୍ତିମନ୍ତ୍ରୀ ଶ୍ରୀ ପ୍ରଣବ ପ୍ରକାଶ ଦାସ ମଧ୍ୟ ଉପସ୍ଥିତ ଥିଲେ । ଓଡ଼ିଶାରେ ସରକାରୀ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷାର ଗୁଣାତ୍ମକ ମାନବୃଦ୍ଧି ନିମନ୍ତେ ରାଜ୍ୟ ସରକାର ପଦକ୍ଷେପ ନେଉଥିବା ପରିପ୍ରେକ୍ଷୀରେ ଶିକ୍ଷାର ମାନବୃଦ୍ଧି କରିବା ନିମନ୍ତେ ଶିକ୍ଷକମାନେ ଆଗେଇ ଆସିବା ନିମନ୍ତେ ମନ୍ତ୍ରୀ କହିଥିଲେ । ଏହି ଆଲୋଚନା ସମୟରେ ସଂଘର ସଭାପତି ସୁନୀଲ କୁମାର ପ୍ରଧାନ, ସାଧାରଣ ସଂପାଦକ ଯୁଧିଷ୍ଠିର ସାହୁ, କାର୍ଯ୍ୟକାରୀ ସଭାପତି ଜ୍ୟୋର୍ତିମୟ ଅଗସ୍ତି, ୩୧୪ ବ୍ଲକ୍ର ମୁଖ୍ୟ ପରିଚାଳକ ଜ୍ୟୋତିରଞ୍ଜନ ଦାସଙ୍କ ସମେତ ଜ୍ୟୋତିପ୍ରକାଶ ସାହୁ, ମନୋରଞ୍ଜନ ଧଳ, ପ୍ରମୋଦ କୁମାର ସେଠୀ, ସୌଭାଗ୍ୟ ମିଶ୍ର, ସମୀର କୁମାର ଜେନା ପ୍ରମୁଖ ଉପସ୍ଥିତ ଥିଲେ ।

ତାପସ କୁମାର ସାହା, ସୂଚନା ଅଧିକାରୀ

## ରାଜ୍ୟବ୍ୟାପୀ ପେନ୍‌ଟାଭାଲେଂଟ୍ ଟୀକାର ଶୁଭାରମ୍ଭ

ରାଜ୍ୟବ୍ୟାପୀ ପେନ୍‌ଟାଭାଲେଂଟ୍ ଟୀକାର ଶୁଭାରମ୍ଭ ହୋଇଛି । ୨ୟ ପର୍ଯ୍ୟାୟରେ ୧୩ ଟି ଜିଲ୍ଲାରେ ମିଶନ ଇନ୍ଦ୍ରଧନୁଷ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଓଡିଶାରେ ୫ ବର୍ଷରୁ କମ୍ ବୟସର ଶିଶୁଙ୍କ ମୃତ୍ୟୁହାର ହ୍ରାସ ଏବଂ ନିୟମିତ ଟୀକାକରଣ ଓ ପ୍ରତିଷେଧକ କାର୍ଯ୍ୟକ୍ରମକୁ ଅଧିକ ସୁଦୃଢ କରିବା ନିମନ୍ତେ ଏହି ନୂତନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଉଛି ।

ଶିଶୁଙ୍କୁ ଦିଆଯାଉଥିବା ଟୀକା ତାଲିକାରେ ପେନ୍‌ଟାଭାଲେଂଟ୍ ସାମିଲ ହୋଇଛି। ଏହା ସହିତ ରାଜ୍ୟର ୧୩ ଜିଲ୍ଲାରେ ମିଶନ ଇନ୍ଦ୍ରଧନୁଷ୍ ମଧ୍ୟ ଆରମ୍ଭ ହୋଇଛି। ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଶ୍ରୀ ମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକ ଦୁଇ ଯୋଜନାର ଶୁଭାରମ୍ଭ କରିଛନ୍ତି। ସ୍ଥାନୀୟ ଆଇଏମ୍‌ଏ ହାଉସଠାରେ ଆୟୋଜିତ କାର୍ଯ୍ୟକ୍ରମରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ମନ୍ତ୍ରୀ ଶ୍ରୀ ନାୟକ କହିଲେ, ମା ଓ ଶିଶୁ ଉଭୟଙ୍କ ସ୍ୱାସ୍ଥ୍ୟସେବା ଯୋଗାଇବାକୁ ସରକାରଙ୍କ ଦାୟିତ୍ୱ। ଅର୍ନ୍ତଜାତୀୟ ସ୍ତରରେ ମଧ୍ୟ ଏ ନେଇ ଯୋଜନା ପ୍ରସ୍ତୁତ ହେଉଛି। ଆଜି ଆରମ୍ଭ ହୋଇଥିବା ପେନ୍‌ଟାଭାଲେଂଟ୍ ଟୀକା ହେଉଛି ଫାଇଭ୍-ଇନ୍-ଓ୍ୱାନ ଟୀକା । ଏହା ଶିଶୁକୁ ମସ୍ତିଷ୍କ ଜ୍ୱର , ନିମୋନିଆ , ଲହରାକାଶ, ଧନୁଷ୍ଟଙ୍କାର ଓ ହେପାଟାଇଟିସ୍ ବି ରୁ ସୁରକ୍ଷା ଦେବ। ଏହି ଟୀକାର ଦାମ୍ ବଜାରରେ ୧୨ଶହ ଟଙ୍କା ଥିବା ବେଳେ ସରକାର ଏହାକୁ ମାଗଣାରେ ଯୋଗାଉଛନ୍ତି। ଟୀକାକରଣ ମାଧ୍ୟମରେ ହିଁ ମାତୃମୃତ୍ୟୁହାର ଆଉ ଶିଶୁ ମୃତ୍ୟୁହାରକୁ ନିୟନ୍ତ୍ରଣ କରାଯାଇ ପାରିବ। ତେଣୁ ଏହାକୁ ସଫଳ କରିବା ଦିଗରେ ସମସ୍ତ ବିଭାଗୀୟ କର୍ମଚାରୀ ସହଯୋଗ କରିବାକୁ ମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି। ସରକାର ମାତୃମୃତ୍ୟୁ ହାର ଓ ଶିଶୁମୃତ୍ୟୁହାର ନିୟନ୍ତ୍ରଣ ପାଇଁ ସ୍ୱତନ୍ତ୍ର ଚିଠା ପ୍ରସ୍ତୁତ କରିଛନ୍ତି। ଚଳିତ ବଜେଟ୍‌ରେ ମଧ୍ୟ ଏ ବାବଦରେ ୫୦ କୋଟି

ଟଙ୍କାର ବ୍ୟୟବରାଦ ହୋଇଛି। ମିଶନ୍ ଇନ୍ଦ୍ରଧନୁଷ୍ ସମ୍ପର୍କରେ ସୂଚନା ଦେଇ ମନ୍ତ୍ରୀ ଶ୍ରୀ ନାୟକ କହିଲେ ଦ୍ୱିତୀୟ ପର୍ଯ୍ୟାୟରେ ଆରମ୍ଭ ହୋଇଥିବା ମିଶନ୍ ଇନ୍ଦ୍ରଧନୁଷ୍‌ରେ ୧ଲକ୍ଷ ୨୪ ହଜାର ଶିଶୁଙ୍କୁ ଟୀକାକରଣ କରିବାକୁ ଯୋଜନା ରହିଛି। ପ୍ରଥମ ପର୍ଯ୍ୟାୟରେ ୧୦ ଜିଲ୍ଲା ପାଇଁ ଆରମ୍ଭ ହୋଇଥିବା ଇନ୍ଦ୍ରଧନୁଷ୍‌ରେ ୧ଲକ୍ଷ ୩୨ ହଜାର ଶିଶୁଙ୍କୁ ଟୀକାକରଣ ଦେବାକୁ ଯୋଜନା ହୋଇଥିବା ବେଳେ ଲକ୍ଷ୍ୟଠାରୁ ବହୁ ଅଧିକ ଅର୍ଥାତ ୧ଲକ୍ଷ ୫୧ ହଜାରଙ୍କୁ ଏହି ଟୀକା ଦିଆଯାଇଥିଲା। ହେଲେ ଏଥିରେ ଉତ୍ସାହିତ ହେବାର ନାହିଁ। ଲକ୍ଷ୍ୟ ହାସଲ କରିଦେଲେ ଚଳିବନି। ଯେମିତି ମଝିରୁ ଲୋକେ ଟୀକାଦାନରୁ ବଂଚିତ ନହେବେ ଅର୍ଥାତ ଡ୍ରପ୍ ଆଉଟ୍ ନହେବେ ସେଥିଲାଗି ଧ୍ୟାନ ଦିଆଯିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ। ସେହିଭଳି ରାଜ୍ୟରେ ଚାଲିଥିବା ଟୀକାଦାନକୁ ୧୦୦ ପ୍ରତିଶତ କରିବାକୁ ମନ୍ତ୍ରୀ ପରାମର୍ଶ ଦେଇଥିଲେ।

ପ୍ରକାଶ ଥାଉକି କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସହ ମିଶନ୍ ଇନ୍ଦ୍ରଧନୁଷ୍ ସଂପର୍କରେ ଭିଡିଓ କନଫରେନ୍ସ ସମୟରେ ପ୍ରଥମ ପର୍ଯ୍ୟାୟରେ ଓଡିଶାର ୧୦ ଟି ଜିଲ୍ଲାରେ ଏହି କାର୍ଯ୍ୟକ୍ରମର ସଫଳତା ଦେଶର ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ବହୁତ ଭଲ ଏବଂ ଆଗୁଆ ବୋଲି ପ୍ରକାଶ କରି କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଅଭିନନ୍ଦନ ଓ ସାଧୁବାଦ୍ ଜଣାଇଥିଲେ ଏବଂ ଦ୍ୱିତୀୟ ପର୍ଯ୍ୟାୟ ମଧ୍ୟ ସେହିଭଳି ସଫଳତା ହାସଲକରୁ ବୋଲି କାମନା କରିଥିଲେ । ସମ୍ମାନିତ ଅତିଥି ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ପ୍ରମୁଖ ସଚିବ ଆରତୀ ଆହୁଜା କହିଲେ, ଏବେ ଟେକ୍ନୋଲୋଜି ବହୁ ଆଗକୁ ଯାଉଛି। ଆଗରୁ ୫ଟି ରୋଗ ପାଇଁ ଅଲଗା ୫ଟା ଟୀକା ଦିଆଯାଉଥିବା ବେଳେ ଏବେ ଏହି ଗୋଟିଏ ଟୀକାରେ ୫ଟି ରୋଗର ରକ୍ଷା ହୋଇ ପାରିବ। ଆଗାମୀ ଦିନରେ ଶହେ ପ୍ରତିଶତ ଟୀକାଦାନ କରିବା ଉପରେ ସଚିବ ମଧ୍ୟ ଗୁରୁତ୍ୱ ଦେଇଛନ୍ତି। ଜାତୀୟ ସ୍ୱାସ୍ଥ୍ୟ ମିଶନ ନିର୍ଦ୍ଦେଶିକା ରୂପା ମିଶ୍ର କହିଲେ, ପ୍ରତ୍ୟେକ ସେକେଣ୍ଡରେ ୩୦ରୁ ଅଧିକ ଶିଶୁଙ୍କୁ ଟୀକା ଦିଆଯାଉଛି। ଟୀକାଦାନ ଫଳରେ ଅନେକ ମୂଲ୍ୟବାନ ଜୀବନ ରକ୍ଷା କରାଯାଇ ପାରୁଛି। ଟୀକାଦାନ କାର୍ଯ୍ୟକ୍ରମକୁ ସଫଳ କରିବାକୁ ଏଏନଏମ୍ ସ୍ତରରୁ କର୍ମୀଙ୍କୁ ମୁତୟନ କରାଯାଇଛି। ସେମାନଙ୍କୁ ତାଲିମଠୁ ଆରମ୍ଭ କରି ଟୀକାଗୁଡିକ କିଭଳି ଭାବେ ପହଂଚି ପାରିବ, ତାହା ମଧ୍ୟ ଚ୍ୟାଲେଞ୍ଜ ରହୁଛି। ଏ ସବୁ ଚ୍ୟାଲେଞ୍ଜକୁ ବିଭାଗ ଗ୍ରହଣ କରୁଛି। ଏହି ଅବସରରେ ପେଂଟାଭାଲେଂଟ୍ ସଂପର୍କିତ ସୂଚନା ବୁକଲେଟ୍‌କୁ ମନ୍ତ୍ରୀ ଶ୍ରୀ ନାୟକ ଉନ୍ମୋଚିତ କରିଥିଲେ ।

ପ୍ରଭାକର ସାହୁ

## ନୂଆଦିଲ୍ଲୀଠାରେ ରାଜ୍ୟ ବୟନ ଶିଳ୍ପ ମନ୍ତ୍ରୀ ସମ୍ମିଳନୀ ଅନୁଷ୍ଠିତ

ବୟନ, ହସ୍ତତନ୍ତ ଏବଂ ହସ୍ତଶିଳ୍ପ କ୍ଷେତ୍ରରେ ବ୍ୟାପକ ପୁଞ୍ଜି ବିନିଯୋଗ ଏବଂ ନିଯୁକ୍ତି ସୁଯୋଗ ରହିଥିବାରୁ ରାଜ୍ୟ ସରକାର ଏହି କ୍ଷେତ୍ରର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ରାଜ୍ୟ ଶିଳ୍ପନୀତି– ୨୦୧୫ ପ୍ରଣୟନ କରି ଏହି କ୍ଷେତ୍ରକୁ ଅଗ୍ରାଧିକାର ଦେଇଛନ୍ତି । ରେଶମ, ହସ୍ତତନ୍ତ, ବୟନ ଓ ହସ୍ତଶିଳ୍ପ ବୁଣାକାର ଏବଂ କାରିଗରମାନଙ୍କ ନିମନ୍ତେ ମୁଖ୍ୟମନ୍ତ୍ରୀ ଏକ ସ୍ୱତନ୍ତ୍ର ପ୍ୟାକେଜ୍ ପ୍ରଣୟନ କରିଛନ୍ତି । ରୁଗ୍ଣ ସମବାୟ ସମିତିଗୁଡିକର ପୁନରୁଦ୍ଧାର ନିମନ୍ତେ ବିଶେଷ ପଦକ୍ଷେପ ନିଆଯାଇଛି । ଇ-ବାଣିଜ୍ୟ ବ୍ୟବସ୍ଥାର ପ୍ରଚଳନ କରାଯାଇଛି । ଏଥିପାଇଁ ଇ–ବେ, ଇଣ୍ଡିଆ ମାର୍ଟ, ଫ୍ଲିପ୍ କାର୍ଟ, ଗୋ–କୁପ୍, ସ୍ନାପଡିଲ୍ ଏବଂ ଆମାଜନ ଭଳି ଅନ୍‌ଲାଇନ୍ ବିକ୍ରୟ ସଂସ୍ଥାକୁ ଅନୁବନ୍ଧିତ କରାଯାଇଛି । ବୁଣାକାର ଏବଂ କାରିଗରମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଉଭୟ କେନ୍ଦ୍ର ଓ ରାଜ୍ୟ ଯୋଜନାଗୁଡିକୁ ସଫଳତାର ସହ କାର୍ଯ୍ୟକାରୀ କରାଯାଉଛି ବୋଲି ନୂଆଦିଲ୍ଲୀଠାରେ ଅନୁଷ୍ଠିତ ବାର୍ଷିକ ରାଜ୍ୟ ବୟନ ମନ୍ତ୍ରୀ ସମ୍ମିଳନୀରେ ଯୋଗଦେଇ ହସ୍ତତନ୍ତ, ବୟନ ଓ ହସ୍ତଶିଳ୍ପ ମନ୍ତ୍ରୀ ଶ୍ରୀମତୀ ସ୍ନେହାଙ୍ଗିନୀ ଛୁରିଆ ମତବ୍ୟକ୍ତ କରିଛନ୍ତି ।

ନୂଆଦିଲ୍ଲୀସ୍ଥିତ ଇଣ୍ଡିଆ ହାବିଟାଟ୍ ସେଣ୍ଟରଠାରେ କେନ୍ଦ୍ର ବସ୍ତ୍ର ମନ୍ତ୍ରୀ ଶ୍ରୀ ସନ୍ତୋଷ କୁମାର ଗଙ୍ଗୱାରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ସମ୍ମିଳନୀରେ ମନ୍ତ୍ରୀ ଶ୍ରୀମତୀ ଛୁରିଆ ଓଡ଼ିଶାର ହସ୍ତତନ୍ତ ଏବଂ ହସ୍ତଶିଳ୍ପ କ୍ଷେତ୍ରରେ ବ୍ୟାପକ ବିକାଶ ନିମନ୍ତେ ବିଭିନ୍ନ ପ୍ରସଙ୍ଗ ଉପରେ ଆଲୋକପାତ କରିଥିଲେ । ରାଜ୍ୟର ବାଲେଶ୍ୱର, ଭୁବନେଶ୍ୱର ଅବା ପଶ୍ଚିମ ଓଡ଼ିଶାର ଦୁଇଟି ପ୍ରମୁଖ ସ୍ଥାନରେ ଟେକ୍ସଟାଇଲ୍ ପାର୍କ ସ୍ଥାପନ ଏବଂ ଜାତୀୟ ହସ୍ତତନ୍ତ ବିକାଶ ନିଗମ ଜରିଆରେ ସୂତା କିଣାରେ ବୁଣାକାରମାନଙ୍କୁ ବିଶେଷ ସବ୍‌ସିଡି ପ୍ରଦାନ ନିମନ୍ତେ ମନ୍ତ୍ରୀ ବୈଠକରେ ପ୍ରସ୍ତାବ ଆଗତ କରିଥିଲେ । ଭାରତୀୟ ହସ୍ତତନ୍ତ ବୈଷୟିକ ପ୍ରତିଷ୍ଠାନ, ବରଗଡରେ ଡିଗ୍ରୀ ପାଠ୍ୟକ୍ରମ ପ୍ରଚଳନ, ୬୦ ବର୍ଷରୁ

ଉର୍ଦ୍ଧ୍ୱ ବୁଣାକାରମାନଙ୍କ ନିମନ୍ତେ ବାର୍ଦ୍ଧକ୍ୟ ଭତ୍ତା ପ୍ରବର୍ତ୍ତନ, ରାଜ୍ୟରେ ଅଧିକ ସ୍ୱତନ୍ତ୍ର ହସ୍ତତନ୍ତ ପ୍ରଦର୍ଶନୀ ଆୟୋଜନ ନିମନ୍ତେ ଆର୍ଥିକ ଅନୁଦାନ, ପ୍ରାଥମିକ ବୁଣାକାର ସମବାୟ ସମିତିମାନଙ୍କୁ ବିଭିନ୍ନ ବ୍ୟବସାୟିକ କାର୍ଯ୍ୟକ୍ରମ ଆୟୋଜନ ନିମନ୍ତେ ଅନୁମତି ପ୍ରଦାନ, ବୁଣାକାରମାନଙ୍କ ନିମନ୍ତେ ସ୍ୱାସ୍ଥ୍ୟବୀମା ଯୋଜନା ଗାଇଡ୍‌ଲାଇନ୍‌ରେ ପରିବର୍ତ୍ତନ, ଶିକ୍ଷା ସହାୟକ ଯୋଜନା ଅଧୀନରେ ଦିଆଯାଉଥିବା ବାର୍ଷିକ ଛାତ୍ରବୃତ୍ତିକୁ ୧୨୦୦ଟଙ୍କାରୁ ୩ ହଜାର ଟଙ୍କାକୁ ବୃଦ୍ଧି, ହସ୍ତଶିଳ୍ପ ଉନ୍ନୟନ କମିଶନରଙ୍କ ଭୁବନେଶ୍ୱର କାର୍ଯ୍ୟାଳୟର ଉନ୍ନତିକରଣ, ହସ୍ତଶିଳ୍ପ ରପ୍ତାନି ବିକାଶ ପରିଷଦର ଭୁବନେଶ୍ୱରଠାରେ ଏକ ଶାଖା ଖୋଲିବା, ହସ୍ତଶିଳ୍ପ କାରିଗର ଗଣନା ଏବଂ ଡାଟାବେସ୍ ଅପ୍‌ଡେଟ୍ କାର୍ଯ୍ୟ ତ୍ୱରାନ୍ୱିତ, ପିପିଲିଠାରେ ଏକ ସମନ୍ୱିତ ହସ୍ତଶିଳ୍ପ ପାର୍କ ନିର୍ମାଣ, ଦେଶର ପ୍ରମୁଖ ୧୦ଟି ମେଟ୍ରୋ ସହରରେ ହସ୍ତଶିଳ୍ପ ଏମ୍ପୋରିୟମ୍ 'ଉତ୍କଳିକା' ଖୋଲିବା ନିମନ୍ତେ ଅଧିକ କେନ୍ଦ୍ରୀୟ ସହାୟତା ଆଦି ପ୍ରସଙ୍ଗରେ ମନ୍ତ୍ରୀ ଶ୍ରୀମତୀ ଛୁରିଆ କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ସହିତ ଏହାର କାର୍ଯ୍ୟକାରିତା ନିମନ୍ତେ ସହଯୋଗ କାମନା କରିଥିଲେ ।

ସୁଚେତା ପ୍ରିୟଦର୍ଶିନୀ, ସୂଚନା ଅଧିକାରୀ

# ହିଂସା ଦ୍ୱାରା ପୀଡିତା ମହିଳାଙ୍କ ପାଇଁ 'ୱାନ୍ ଷ୍ଟପ୍ ସେଣ୍ଟର(ସଖୀ): ଏକ ଅଭିନବ ପଦକ୍ଷେପ

କ୍ୟାପିଟାଲ ହସ୍‌ପିଟାଲ ପରିସରରେ ହିଂସା ଦ୍ୱାରା ପୀଡିତା ମହିଳାଙ୍କ ପାଇଁ 'ୱାନ୍ ଷ୍ଟପ୍ ସେଣ୍ଟର'(ସଖୀ)କୁ ମହିଳା ଓ ଶିଶୁ ବିକାଶ, ଯୋଜନା ଏବଂ ସମନ୍ୱୟ, ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ ବିଭାଗ ମନ୍ତ୍ରୀ ଶ୍ରୀମତୀ ଉଷା ଦେବୀ ଉଦ୍‌ଘାଟନ କରିଛନ୍ତି । ହିଂସା ଦ୍ୱାରା ପ୍ରଭାବିତ ବାଳିକା ଓ ମହିଳାମାନଙ୍କୁ ସମନ୍ୱିତ ସହାୟତା ପ୍ରଦାନ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ତତ୍‌କ୍ଷଣାତ୍ ଚିକିତ୍ସା, ନ୍ୟାୟିକ, ମନସ୍ତାତ୍ତ୍ୱିକ ସହାୟତା ତଥା ପରାମର୍ଶ ସେବା ପ୍ରଦାନ କରିବା ଏହି 'ୱାନ୍ ଷ୍ଟପ୍ ସେଣ୍ଟର'(ସଖୀ)ର ମୁଖ୍ୟ ଉଦ୍ଦେଶ୍ୟ । ପୀଡିତା, ବାଳିକା ଓ ମହିଳା ନିଜେ କିମ୍ବା ଅନ୍ୟ କୌଣସି ବ୍ୟକ୍ତିଙ୍କ ସହାୟତାରେ, ଡାକ୍ତରଖାନା ଜରିଆରେ କିମ୍ବା ପୁଲିସ ଦ୍ୱାରା ଉଦ୍ଧାର ହୋଇଥିଲେ ଏହି 'ୱାନ୍ ଷ୍ଟପ୍ ସେଣ୍ଟର'(ସଖୀ)କୁ ଆସିପାରିବେ ।

'ୱାନ୍ ଷ୍ଟପ୍ ସେଣ୍ଟର'(ସଖୀ)ରେ ପୀଡିତା ବାଳିକା ଏବଂ ମହିଳାଙ୍କୁ ତାଙ୍କ ପାଇଁ ଉଦ୍ଦିଷ୍ଟ ସମସ୍ତ ସୁବିଧାସୁଯୋଗ ଯଥା ଚିକିତ୍ସାଗତ ସୁବିଧା, ନିକଟସ୍ଥ ଥାନାରେ ଏଫ୍.ଆଇ.ଆର୍ ଦାୟର କରିବାରେ ସହଯୋଗ, ଜିଲ୍ଲା ସୁରକ୍ଷା ଅଧିକାରୀଙ୍କ ସହାୟତାରେ ପାରିବାରିକ ହିଂସା ଆଇନ ଅଧୀନରେ ଡି.ଆଇ.ଆର୍ ଦାୟର କରିବାରେ ସହଯୋଗ, ସାମାଜିକ ଓ ମନସ୍ତାତ୍ତ୍ୱିକ ପରାମର୍ଶ, ଜିଲ୍ଲା ଆଇନ୍ ପ୍ରାଧିକରଣ ଅଧିକାରୀଙ୍କ ଜରିଆରେ ଆଇନଗତ ସୁବିଧା ଏବଂ ଉଜ୍ଜାଲା ଓ ସ୍ୱାଧାର ଗୃହରେ ଆଶ୍ରୟର ବ୍ୟବସ୍ଥା । ପ୍ରତ୍ୟହ ୨୪ ଘଣ୍ଟା ପାଇଁ ଖୋଲା ରହୁଥିବା ଏହି କେନ୍ଦ୍ରଟି ଯୋଗ୍ୟତାପ୍ରାପ୍ତ ତଥା ଦକ୍ଷ କର୍ମଚାରୀଙ୍କ ଦ୍ୱାରା ପରିଚାଳିତ ହେବ । ଡାକ୍ତର, ଓକିଲ, ପୁଲିସ କର୍ମଚାରୀ ଏହି କେନ୍ଦ୍ରରେ ସବୁବେଳେ ସମସ୍ତ ସହାୟତା ଯୋଗାଇ ଦେବେ । ଏହି କେନ୍ଦ୍ରରେ ୪ଗୋଟି ଶଯ୍ୟା, ଶୌଚାଳୟ, ଖାଦ୍ୟ ଓ ଔଷଧ ବ୍ୟବସ୍ଥା ରହିଛି । ମହିଳା ଓ ଶିଶୁ ବିକାଶ ବିଭାଗ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ, କ୍ୟାପିଟାଲ ହସ୍‌ପିଟାଲ, ଭୁବନେଶ୍ୱର-କଟକ ପୁଲିସ କମିଶନରେଟ୍ ଏବଂ ରାଜ୍ୟ/ଜିଲ୍ଲା ଆଇନ୍ ପ୍ରାଧିକରଣ ଅଧିକାରୀଙ୍କ ମିଳିତ ଉଦ୍ୟମରେ ଏହି ସେଣ୍ଟରଟି ପରିଚାଳିତ ହେବ । ମୁଖ୍ୟ ଶାସନ ସଚିବଙ୍କ ତତ୍ତ୍ୱାବଧାନରେ ଥିବା ଟାସ୍କ ଫୋର୍ସ ଫର୍ କେୟାର, ପ୍ରୋଟେକ୍‌ସନ୍ ଆଣ୍ଡ ଡେଭଲପ୍‌ମେଣ୍ଟ ଅଫ୍ ଗାର୍ଲ ଚାଇଲ୍ଡ ପ୍ରତି ୬ ମାସରେ 'ସଖୀ'ର କାର୍ଯ୍ୟକଳାପକୁ ପର୍ଯ୍ୟାଲୋଚନା କରିବେ । 'ୱାନ୍ ଷ୍ଟପ୍ ସେଣ୍ଟର'(ସଖୀ) ସ୍ତରରେ ପରିଚାଳନା କମିଟି ପ୍ରତ୍ୟେକ ୨ ମାସରେ ପର୍ଯ୍ୟବେକ୍ଷଣ କରିବ । ଏହା ଏକ କେନ୍ଦ୍ରୀୟ ଅନୁଦାନପ୍ରାପ୍ତ ଯୋଜନା । ଏହାର କାର୍ଯ୍ୟକାରିତା ନିମନ୍ତେ ଜାତୀୟ ସ୍ୱାସ୍ଥ୍ୟ ମିଶନ, ଓଡ଼ିଶାର ମଧ୍ୟ ସହଯୋଗ ରହିଛି ।

ଡକ୍ଟର ଜ୍ୟୋତିର୍ମତୀ ସାମନ୍ତରାୟ, ସୂଚନା ଅଧିକାରୀ

❖ ❖ ❖